# ଜାତିନିର୍ମାତାଙ୍କ ଜୀବନ-ଆଲେଖ୍ୟ

ଡକ୍ଟର ବିଦ୍ୟାଧର ମିଶ୍ର

# ଜାତି ନିର୍ମାତାଙ୍କ ଜୀବନ-ଆଲେଖ୍ୟ

[ପ୍ରଥମ ଭାଗ]

ଡକ୍ଟର୍ ବିଦ୍ୟାଧର ମିଶ୍ର
ପୂର୍ବତନ କୁଳପତି, ଉତ୍କଳ ବିଶ୍ୱବିଦ୍ୟାଳୟ

ଗ୍ରନ୍ଥମନ୍ଦିର

ପ୍ରକାଶକ : ମନୋଜ କୁମାର ମହାପାତ୍ର
**ଗ୍ରନ୍ଥମନ୍ଦିର,** ବିନୋଦବିହାରୀ, କଟକ-୨

ମୁଦ୍ରକ : ତପନ କୁମାର ମହାପାତ୍ର
**ଅପ୍ରତିମା (ଅଫସେଟ୍) ପ୍ରିଣ୍ଟସ୍,** ସୂତାହାଟ, କଟକ-୧

ପ୍ରଥମ ସଂସ୍କରଣ : ୧ । ୪ । ୧୯୯୭

ମୂଲ୍ୟ : ଟ. ୭୦-୦୦
ସାଦାବନ୍ଧେଇ : ଟ. ୬୦-୦୦

# ମୁଖବନ୍ଧ

ଊନବିଂଶ ଶତାବ୍ଦୀରେ ଓଡ଼ିଶାର ଦୁର୍ଦ୍ଦିନରେ ଯେତେବେଳେ ଓଡ଼ିଆମାନେ ପଡ଼ୋଶୀ ରାଜ୍ୟମାନଙ୍କରେ ଏବଂ ଛବିଶଟି ଗଡ଼ଜାତ ରାଜ୍ୟରେ ବିକ୍ଷିପ୍ତ ହୋଇ ରହିଥିଲେ ଏବଂ ଓଡ଼ିଆ ଭାଷା ଓ ସାହିତ୍ୟ ଲୋପ ପାଇବାକୁ ଯାଉଥିଲା, ସେତେବେଳେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ କେତେକ ମନୀଷୀଙ୍କର ଆବିର୍ଭାବ ହୋଇଥିଲା । ଉତ୍କଳର ସେହି ବରପୁତ୍ରମାନେ ଓଡ଼ିଆଜାତିର ତତ୍‌କାଳୀନ ଦୁର୍ଦ୍ଦଶାର କାରଣ ବୁଝିପାରିଥିଲେ ଏବଂ ତାହାର ନିରାକରଣ ପାଇଁ ଜୀବନସାରା ସଂଗ୍ରାମ କରିଥିଲେ । ପ୍ରଥମ ପିଢ଼ିର ସେହି ବରପୁତ୍ରମାନଙ୍କ ଜନ୍ମ ମୁଖ୍ୟତଃ ୧୮୩୮ ମସିହାଠାରୁ ୧୮୬୨ ମସିହା ମଧ୍ୟରେ ହୋଇଥିଲା । ସେମାନେ ସମସ୍ତେ ଓଡ଼ିଶାର ଦୁର୍ଦ୍ଦିନର ଚରମସୀମା, ୧୮୬୬ ମସିହାର ନ'ଅଙ୍କ ଦୁର୍ଭିକ୍ଷ ପୂର୍ବରୁ ଜନ୍ମ ହୋଇଥିଲେ ଏବଂ ସେମାନଙ୍କର କର୍ମଜୀବନ ବିଂଶଶତାବ୍ଦୀର ଦ୍ୱିତୀୟ ଦଶନ୍ଧି ପର୍ଯ୍ୟନ୍ତ ବିସ୍ତୃତ ହୋଇଥିଲା । ତାହା ପରେ ଦ୍ୱିତୀୟ ପିଢ଼ିର ବରପୁତ୍ରମାନଙ୍କର ଜନ୍ମ ୧୮୬୭ ମସିହା-ଠାରୁ ୧୯୦୦ ମସିହା ମଧ୍ୟରେ ହୋଇଥିଲା । ସେମାନେ ପ୍ରଥମ ପିଢ଼ିର ମନୀଷୀ-ମାନଙ୍କ ସହିତ ଜାତିରକ୍ଷଣ ସଂଗ୍ରାମରେ ଯୋଗଦେଇଥିଲେ ।

ଜାତି ଓ ତାର ଭାଷା ରକ୍ଷା ଏବଂ ଜାତିଗଠନ କେବଳ ଦୁଇ ଚାରି କିମ୍ବା ଦଶ କୋଡ଼ିଏ ବ୍ୟକ୍ତିଙ୍କଦ୍ୱାରା ସମ୍ଭବ ହୁଏନାହିଁ । ଜାତିର ବହୁ ନେତୃସ୍ଥାନୀୟ ବ୍ୟକ୍ତି ଓ ସାଧାରଣ ଲୋକ ସେ କାର୍ଯ୍ୟରେ ଯୋଗଦେଲେ ହିଁ ଜାତିର ଧନ, ମାନ, ଯଶ, ସାହିତ୍ୟ, ସଂସ୍କୃତି, କଳା ଓ କୀର୍ତ୍ତି ବୃଦ୍ଧିପାଏ । ନେତୃସ୍ଥାନୀୟ ବ୍ୟକ୍ତି ଆଲୋକବର୍ତ୍ତିକା ଧରି ଆଗରେ ଚାଲିଲେ, ପଛରେ ତାଙ୍କ ସହିତ ଅଗଣିତ ବ୍ୟକ୍ତି ଯୋଗଦିଅନ୍ତି; ତାହାଦ୍ୱାରା କାର୍ଯ୍ୟ ସିଦ୍ଧି ହୁଏ । ଊନବିଂଶ ଶତାବ୍ଦୀର ପ୍ରଥମ ଓ ଦ୍ୱିତୀୟ ପିଢ଼ିର ସେହି ବିଶିଷ୍ଟ ଅଗ୍ରଣୀମାନଙ୍କର ଜୀବନକାହାଣୀ ବର୍ତ୍ତମାନର ଯୁବ ସମ୍ପ୍ରଦାୟ, ସ୍କୁଲ୍ କଲେଜର ଛାତ୍ରଛାତ୍ରୀ ଓ ସାଧାରଣ ଲୋକଙ୍କ ଅବଗତି ନିମିତ୍ତ ଗୋଟିଏ ପୁସ୍ତକରେ ସଂକ୍ଷେପରେ ବର୍ଣ୍ଣନା କରିବା ଏ ପୁସ୍ତକର ଉଦ୍ଦେଶ୍ୟ । ଏହାଦ୍ୱାରା ଯେ ଓଡ଼ିଶାର ଅନ୍ୟ ବର-ପୁତ୍ରମାନଙ୍କର ଜାତିଗଠନରେ ଅବଦାନକୁ ନ୍ୟୂନ କରାଯାଇଛି, ତାହା ନୁହେଁ । ଏହି କ୍ରମରେ ବିଭିନ୍ନ ସମୟରେ ଓଡ଼ିଶାର ଭାଷା, ସାହିତ୍ୟ, କଳା ଓ ସଂସ୍କୃତି ପ୍ରଭୃତି ସମସ୍ତ କ୍ଷେତ୍ରରେ ଅବଦାନ ଥିବା ସମସ୍ତ ବିଶିଷ୍ଟ ବ୍ୟକ୍ତିଙ୍କ ଜୀବନୀ ଓ କାର୍ଯ୍ୟ ବିଷୟରେ ଲେଖାହେବା ଉଚିତ । ଏ ପୁସ୍ତକରେ କେବଳ ଊନବିଂଶ ଶତାବ୍ଦୀର ମଧ୍ୟଭାଗରୁ

ବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଓଡ଼ିଶାର ଜାତିଗଠନ କାର୍ଯ୍ୟରେ ବିଶେଷ ଅବଦାନ ଥିବା କେତେକ ନେତୃସ୍ଥାନୀୟ ବ୍ୟକ୍ତିଙ୍କ ଜୀବନ କାହାଣୀ ବର୍ଣ୍ଣନା କରାଯାଇଛି ।

ବର୍ତ୍ତମାନ ଏହି ପୁସ୍ତକଟିକୁ ଦୁଇଭାଗରେ ବିଭକ୍ତ କରାଯାଇଛି । ପ୍ରଥମ ଭାଗରେ ଊନବିଂଶ ଶତାବ୍ଦୀର ଯୁଗପ୍ରବର୍ତ୍ତକ ପ୍ରଥମ ପିଢ଼ିର ବ୍ୟକ୍ତି – କର୍ମବୀର ଗୌରୀଶଙ୍କର ରାୟ, ବ୍ୟାସକବି ଫକୀରମୋହନ ସେନାପତି, ଉତ୍କଳଗୌରବ ମଧୁସୂଦନ ଦାସ, କବିବର ରାଧାନାଥ ରାୟ ଏବଂ ସ୍ୱଭାବକବି ଗଙ୍ଗାଧର ମେହେରଙ୍କ ଜୀବନୀ ସଂକ୍ଷେପରେ ବର୍ଣ୍ଣନା କରାଯାଇଛି । ଦ୍ୱିତୀୟ ଭାଗରେ ଦ୍ୱିତୀୟ ପିଢ଼ିର ମନୀଷୀ ଉତ୍କଳମଣି ଗୋପବନ୍ଧୁ ଦାସ, ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ଡକ୍ଟର ପ୍ରାଣକୃଷ୍ଣ ପରିଜା, ପାରଳାଖେମଣ୍ଡିର ମହାରାଜା ଗଜପତି କୃଷ୍ଣଚନ୍ଦ୍ର ନାରାୟଣ ଦେବ ଓ ଡକ୍ଟର ହରେକୃଷ୍ଣ ମହତାବଙ୍କ ଜୀବନୀ ସଂକ୍ଷେପରେ ବର୍ଣ୍ଣନା କରିବାର ପରିକଳ୍ପନା କରାଯାଇଛି । ପରବର୍ତ୍ତୀ ଭାଗ-ମାନଙ୍କରେ ଅନ୍ୟ ବରପୁତ୍ରମାନଙ୍କର ଜୀବନୀ ସଂକ୍ଷେପରେ ବର୍ଣ୍ଣନା କରାଯାଇ-ପାରେ । ପ୍ରଥମ ଓ ଦ୍ୱିତୀୟ ଭାଗରେ ବର୍ଣ୍ଣିତ ଉପରୋକ୍ତ ସମସ୍ତ ମନୀଷୀମାନଙ୍କର ପୂର୍ଣ୍ଣାଙ୍ଗ ଜୀବନୀ ବୃହତ୍ ଆକାରରେ ପ୍ରକାଶିତ ହୋଇଛି । ମାତ୍ର ଏ ପୁସ୍ତକର ଆଭିମୁଖ୍ୟ ଭିନ୍ନ । ପାଠକମାନଙ୍କ ସୁବିଧା ନିମିତ୍ତ ଗୋଟିଏ ପୁସ୍ତକରେ ସଂକ୍ଷେପରେ ଉପରୋକ୍ତ ମନୀଷୀମାନଙ୍କର ଜୀବନୀ ବର୍ଣ୍ଣନା କରିବା ଏହାର ଉଦ୍ଦେଶ୍ୟ ।

ପ୍ରତ୍ୟେକ ବ୍ୟକ୍ତିଙ୍କ ଜୀବନୀ ବର୍ଣ୍ଣନା କରିବା ସମୟରେ ମୁଖ୍ୟତଃ ତିନିଗୋଟି ଦିଗ ପ୍ରତି ଧ୍ୟାନ ଦିଆଯାଇଛି । ତାହା ହେଉଛି – ତାଙ୍କ ସମୟ, ତାଙ୍କ ଜୀବନ ଏବଂ ତାଙ୍କର କାର୍ଯ୍ୟ ଓ ଜାତିଗଠନକୁ ଅବଦାନ । ସମସ୍ତ ସଂକ୍ଷିପ୍ତ ଜୀବନୀକୁ ତ୍ରୁଟିଶୂନ୍ୟ, ତଥ୍ୟସମ୍ବଳିତ ଓ ନିରପେକ୍ଷ କରିବାକୁ ଯଥାଶକ୍ତି ଉଦ୍ୟମ କରାଯାଇଛି । ବିଭିନ୍ନ ବ୍ୟକ୍ତିଙ୍କ ବିଷୟରେ ତଥ୍ୟ ଅନ୍ୟ ଲେଖକମାନଙ୍କ ପୁସ୍ତକରୁ ସଂଗ୍ରହ କରାଯାଇଛି ଏବଂ ସହାୟକ ପୁସ୍ତକମାନଙ୍କର ନାମ ଉଲ୍ଲେଖ କରାଯାଇଛି । ଆଶା କରାଯାଉଛି ଯେ, ଏ ପୁସ୍ତକ ପାଠକମାନଙ୍କୁ ବର୍ଣ୍ଣିତ ମହତ୍ ବ୍ୟକ୍ତିମାନଙ୍କ ଜୀବନୀ ବିଷୟରେ ସମ୍ୟକ୍ ଧାରଣା ଦେବ । ପାଠକମାନେ ଏ ପୁସ୍ତକଦ୍ୱାରା ଉପକୃତ ହେଲେ ମୋର ଶ୍ରମ ସଫଳ ହେବ ।

ପରିଶେଷରେ ଯେଉଁମାନଙ୍କ ପୁସ୍ତକରୁ ତଥ୍ୟ ସଂଗ୍ରହ କରାଯାଇଛି ଏବଂ କଟକ ଗ୍ରନ୍ଥମନ୍ଦିରର ଅଧିକାରୀ ଶ୍ରୀ ଅଭିରାମ ମହାପାତ୍ର ଏ ପୁସ୍ତକଟି ପ୍ରକାଶ କରୁଥିବାରୁ, ମୁଁ ସେମାନଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରୁଛି ।

ଭୁବନେଶ୍ୱର | ବିଦ୍ୟାଧର ମିଶ୍ର

ତା ୩୦ । ୧୦ । ୯୬

ଉତ୍କଳର ଉତ୍ତର-ପୁରୁଷଙ୍କୁ
ପ୍ରେରଣା ପ୍ରଦାନ ଉଦ୍ଦେଶ୍ୟରେ. . .

ଲେଖକ

# ସୂଚିପତ୍ର


| | ବିଷୟ | ପୃଷ୍ଠା |
|---|---|---|
| ପ୍ରଥମ ପରିଚ୍ଛେଦ | ଊନବିଂଶ ଶତାବ୍ଦୀର ଓଡ଼ିଶା | ୧ |
| ଦ୍ୱିତୀୟ ପରିଚ୍ଛେଦ | କର୍ମବୀର ଗୌରୀଶଙ୍କର ରାୟ | ୧୭ |
| ତୃତୀୟ ପରିଚ୍ଛେଦ | ବ୍ୟାସକବି ଫକୀରମୋହନ ସେନାପତି | ୪୫ |
| ଚତୁର୍ଥ ପରିଚ୍ଛେଦ | ଉତ୍କଳଗୌରବ ମଧୁସୂଦନ ଦାସ | ୭୮ |
| ପଞ୍ଚମ ପରିଚ୍ଛେଦ | କବିବର ରାଧାନାଥ ରାୟ | ୧୧୦ |
| ଷଷ୍ଠ ପରିଚ୍ଛେଦ | ସ୍ୱଭାବକବି ଗଙ୍ଗାଧର ମେହେର | ୧୩୯ |


—

# ପ୍ରଥମ ପରିଚ୍ଛେଦ

## ଊନବିଂଶ ଶତାବ୍ଦୀର ଓଡ଼ିଶା

ଊନବିଂଶ ଶତାବ୍ଦୀରେ ଓଡ଼ିଶା ବୋଲି ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ବା ରାଜ୍ୟ ନଥିଲା କିମ୍ବା ସମସ୍ତ ଓଡ଼ିଆ-ଭାଷାଭାଷୀ ଲୋକ ଗୋଟିଏ ଶାସନ ଅଧୀନରେ ନଥିଲେ। ସେମାନେ ବିକ୍ଷିପ୍ତ ଭାବରେ ବିଭିନ୍ନ ପ୍ରଦେଶରେ ଦୁଃସ୍ଥ ଅବସ୍ଥାରେ ବାସ କରୁଥିଲେ। ଓଡ଼ିଶା ବୋଲି ଯେଉଁ ଅଞ୍ଚଳ ଇଂରେଜମାନେ ୧୮୦୩ ମସିହାରେ ମରହଟ୍ଟାମାନଙ୍କଠାରୁ ଅଧିକାର କରିଥିଲେ, ତାହା କେବଳ କଟକ, ପୁରୀ, ବାଲେଶ୍ୱର ଜିଲ୍ଲାକୁ ନେଇ ପୁରାତନ ବିଶାଳ ଓଡ଼ିଶାର ଗୋଟିଏ କ୍ଷୁଦ୍ର ଅଂଶ ଥିଲା। ମରହଟ୍ଟାମାନଙ୍କଠାରୁ ଓଡ଼ିଶା ଡିଭିଜନ୍ ନେଲାପରେ, ଇଂରେଜ-ମାନେ ତାହାକୁ ବଙ୍ଗ ପ୍ରେସିଡେନ୍‌ସି ଅଧୀନରେ ରଖିଥିଲେ।

ଐତିହାସିକମାନେ କହନ୍ତି ଯେ, ପ୍ରାଚୀନ କାଳରେ ଓଡ଼ିଆ-ଭାଷାଭାଷୀ ଲୋକମାନେ ଭାରତବର୍ଷର ଦକ୍ଷିଣ-ପୂର୍ବ ଅଞ୍ଚଳରେ କଳିଙ୍ଗ, ଉତ୍କଳ, ଓଡ୍ର ଏବଂ କୋଶଳ, ଏହି ଚାରି ରାଜ୍ୟରେ ବାସକରୁଥିଲେ। ଏହି ଚାରି ରାଜ୍ୟ ସମେତ ଓଡ଼ିଆ-ଭାଷାଭାଷୀ ଅଞ୍ଚଳ ଏକ ବିରାଟ ଭୂଖଣ୍ଡ ଥିଲା। ଏହି ଚାରି ରାଜ୍ୟର ସୀମା ସଠିକ୍ କେଉଁ ପର୍ଯ୍ୟନ୍ତ ଥିଲା, ତାହା କହିବା କଷ୍ଟକର; କାରଣ ସବୁକାଳରେ ସୀମାନ୍ତବର୍ତ୍ତୀ ଅଞ୍ଚଳମାନଙ୍କରେ ଓଡ଼ିଆ-ଭାଷାଭାଷୀ ଲୋକ-ମାନଙ୍କ ସହିତ ପଡ଼ୋଶୀ ରାଜ୍ୟର ତତ୍ରତ୍ୟ ଭାଷାଭାଷୀ ଲୋକ ବାସକରିବା ସ୍ୱାଭାବିକ। ସମୟେ ସମୟେ ପରାକ୍ରମୀ ଓଡ଼ିଆ ରାଜାମାନେ ଗଙ୍ଗାଠାରୁ ଗୋଦାବରୀ ନଦୀ ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରିଥିଲେ। ଓଡ଼ିଶାର କେତେକ ସୂର୍ଯ୍ୟବଂଶୀ ରାଜା କାବେରୀ ନଦୀ ପର୍ଯ୍ୟନ୍ତ ଯାଇ ଯୁଦ୍ଧରେ ଜୟ କରିଥିଲେ। କିନ୍ତୁ ସେମାନେ ଜୟ କରିଥିବା ସବୁ ଅଞ୍ଚଳ ଓଡ଼ିଆ-ଭାଷାଭାଷୀ ଲୋକଙ୍କଦ୍ୱାରା ଅଧ୍ୟୁଷିତ ନଥିଲା। ସେ ଯାହାହେଉ, ଅଧିକାଂଶ ଐତିହାସିକଙ୍କ ମତରେ କଟକ, ପୁରୀ, ବାଲେଶ୍ୱର ଓ ଗଞ୍ଜାମ ଅଞ୍ଚଳ ଓଡ଼ିଶା ରାଜ୍ୟର କେନ୍ଦ୍ରସ୍ଥଳ ଥିଲା ଏବଂ ଓଡ଼ିଶାର ରାଜାମାନେ ସେହି ଅଞ୍ଚଳରେ ପ୍ରତ୍ୟକ୍ଷଭାବରେ ରାଜତ୍ୱ କରୁଥିଲେ। ଓଡ଼ିଶାର ପଶ୍ଚିମାଞ୍ଚଳ ସଠିକ୍ ଭାବରେ ବର୍ତ୍ତମାନର ମଧ୍ୟପ୍ରଦେଶ ପର୍ଯ୍ୟନ୍ତ ବିସ୍ତୃତ

ଥିଲା। ମାତ୍ର ସେ ସବୁ ଅଞ୍ଚଳ ବିଭିନ୍ନ କରଦ ରାଜ୍ୟରେ ବିଭକ୍ତ ହୋଇଥିଲା। ସେସବୁ ରାଜ୍ୟମାନଙ୍କର ଅଣ-ଆଦିବାସୀ ଲୋକମାନେ ଓଡ଼ିଆ-ଭାଷାଭାଷୀ ଥିଲେ ଏବଂ ସେଗୁଡ଼ିକରେ ବିଭିନ୍ନ ସମୟରେ ବିଭିନ୍ନ ବଂଶର ଓଡ଼ିଆ ରାଜାମାନେ ରାଜତ୍ୱ କରୁଥିଲେ।

ଏ କଥା ମଧ୍ୟ ସତ୍ୟ ଯେ, ପୁରୀର ଠାକୁରରାଜା ଏବଂ ବିଭିନ୍ନ କରଦ ରାଜାମାନଙ୍କ ମଧ୍ୟରେ ବହୁକାଳରୁ ପୋଷ୍ୟପୁତ୍ର ଗ୍ରହଣ ଓ ବୈବାହିକ ପ୍ରଭୃତି ସମ୍ପର୍କ ଥିଲା। ସବୁ ରାଜ୍ୟରେ ଓଡ଼ିଆ-ଭାଷାଭାଷୀ ପ୍ରଜାମାନଙ୍କର ସଂସ୍କୃତି, ଦୈନନ୍ଦିନ ଜୀବନଯାପନ ପ୍ରଣାଳୀ, ଖାଦ୍ୟପେୟ, ପୂନିଅଁ ପରବ, ବିବାହ ବ୍ରତୋପନୟନ ପ୍ରଭୃତି ଉତ୍ସବ ପ୍ରାୟ ସମାନ ପ୍ରକାରର ଥିଲା। ବିଭିନ୍ନ ନିକଟବର୍ତ୍ତୀ ରାଜ୍ୟମାନଙ୍କର ପ୍ରଜାମାନଙ୍କ ମଧ୍ୟରେ ଜାତିଭିତ୍ତିରେ ବୈବାହିକ ସମ୍ବନ୍ଧ ସ୍ଥାପିତ ହେଉଥିଲା। ସାଂସ୍କୃତିକ ଦିଗରୁ ଏ ସମସ୍ତ ରାଜ୍ୟରେ ବାସକରୁଥିବା ଓଡ଼ିଆମାନେ ଏକ ଥିଲେ।

ମାତ୍ର ସାଂସ୍କୃତିକ ଐକ୍ୟ ସତ୍ତ୍ୱେ, ଇଂରେଜଶାସନ ଆରମ୍ଭର ପ୍ରାୟ ତିନିଶହ ବର୍ଷ ପୂର୍ବରୁ ଆଫଗାନ୍, ମୋଗଲ୍ ଏବଂ ମରହଟ୍ଟାମାନଙ୍କ ରାଜତ୍ୱ ସମୟରେ ଓଡ଼ିଶାର ବହୁ ଅଂଶ ଛିନ୍ନଭିନ୍ନ ହୋଇ ଭାରତର ବିଭିନ୍ନ ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା। ବହୁ ଛୋଟ-ବଡ଼ ଗଡ଼ଜାତ ରାଜା ମୋଗଲ୍ ସମ୍ରାଟ୍ ଏବଂ ପରେ ମରହଟ୍ଟାମାନଙ୍କର କରଦ ରାଜାରୂପେ ନିଜ ନିଜ ରାଜ୍ୟରେ ଶାସନ କରୁଥିଲେ।

ଦକ୍ଷିଣ-ଓଡ଼ିଶାର ଗୋଟିଏ ବିସ୍ତୃତ ଅଞ୍ଚଳ ବହୁକାଳ ହାଇଦ୍ରାବାଦ ନିଜାମ୍‌ଙ୍କ ଅଧୀନରେ ଥିଲା। ଓଡ଼ିଶାର ଠାକୁରରାଜାଙ୍କ ପ୍ରତ୍ୟକ୍ଷ ଶାସିତ ଅଞ୍ଚଳ ସୀମିତ ଥିଲା। ସମସ୍ତ ଓଡ଼ିଶା ରାଜ୍ୟ ଏକଖଣ୍ଡ ହିସାବରେ ଏକ ଶାସନ ଅଧୀନରେ ନଥିବାରୁ ଇଂରେଜମାନେ ବିଭିନ୍ନ ସମୟରେ ବିଭିନ୍ନ ଅଞ୍ଚଳ ଅଧିକାର କରି ଶାସନଗତ ସୁବିଧା ନିମିତ୍ତ ସେଗୁଡ଼ିକ ବିଭିନ୍ନ ପ୍ରଦେଶର ଅନ୍ତର୍ଭୁକ୍ତ କରିଥିଲେ। ବିଭିନ୍ନ ଅଞ୍ଚଳକୁ ବିଭିନ୍ନ ପ୍ରଦେଶର ଅନ୍ତର୍ଭୁକ୍ତ କରିବା ସମୟରେ ଲୋକମାନଙ୍କର ଭାଷା ଓ ସଂସ୍କୃତିକୁ ବିଚାର କରିନଥିଲେ।

ଏହି ପ୍ରକ୍ରିୟାରେ ଇଂରେଜମାନେ କଟକ, ପୁରୀ, ବାଲେଶ୍ୱର ଜିଲ୍ଲାମାନଙ୍କୁ ନେଇ ଗଠିତ ଓଡ଼ିଶା ଡିଭିଜନ୍ ୧୮୦୩ ମସିହାରେ ମରହଟ୍ଟାମାନଙ୍କଠାରୁ ଅଧିକାର କରି ବଙ୍ଗ ପ୍ରେସିଡେନ୍‌ସିର ଶାସନ ଅଧୀନରେ ରଖିଥିଲେ। ଓଡ଼ିଶାଡିଭିଜନର ଉତ୍ତରରେ ଥିବା ମେଦିନୀପୁର ଏବଂ ସିଂହଭୂମି ଜିଲ୍ଲାମାନ ଓଡ଼ିଆ ଅଞ୍ଚଳ ଥିଲେ ମଧ୍ୟ ସେଗୁଡ଼ିକ ସେହି ବଙ୍ଗ ପ୍ରେସିଡେନ୍‌ସିରେ ଥିବା ଓଡ଼ିଶା ଡିଭିଜନ୍‌ର ଅନ୍ତର୍ଭୁକ୍ତ ହୋଇନଥିଲା। ମେଦିନୀପୁର ବଙ୍ଗ ପ୍ରେସିଡେନ୍‌ସିର

ଗୋଟିଏ ସ୍ୱତନ୍ତ୍ର ଜିଲ୍ଲା ଥିଲା ଏବଂ ସିଂହଭୂମି ଜିଲ୍ଲା ଛୋଟନାଗପୁର ଡିଭିଜନ୍‌ର ଅନ୍ତର୍ଭୁକ୍ତ ଥିଲା। ଓଡ଼ିଶା ଡିଭିଜନ୍‌ରେ କେବଳ କଟକ, ପୁରୀ, ବାଲେଶ୍ୱର ଜିଲ୍ଲା ଅନ୍ତର୍ଭୁକ୍ତ ଥିଲା।

ଓଡ଼ିଶାର ଗଞ୍ଜାମ ଓ କୋରାପୁଟ ଜିଲ୍ଲା ସହ ଦକ୍ଷିଣାଞ୍ଚଳ ୧୫୭୧ ମସିହାରେ ଗୋଲକୁଣ୍ଡା ରାଜ୍ୟର ସୁଲ୍‌ତାନ୍ ଇବ୍ରାହିମ୍ କୁତବସାହି ଜୟ କରିଥିଲେ। ୧୬୮୭ ମସିହାରେ ଆଉରଙ୍ଗଜେବ ସମସ୍ତ ଗୋଲକୁଣ୍ଡା ରାଜ୍ୟ ଜୟକରି ତାକୁ ମୋଗଲ୍ ସାମ୍ରାଜ୍ୟ ଅଧୀନକୁ ଆଣିଥିଲେ। ୧୭୬୬ ଖ୍ରୀଷ୍ଟାବ୍ଦରେ ହାଇଦ୍ରାବାଦର ନିଜାମ୍ ମୋଗଲ୍ ସମ୍ରାଟ୍‌ଙ୍କ ସମ୍ମତିରେ ଓଡ଼ିଶାର ସେ ଅଞ୍ଚଳ ଇଂରେଜମାନଙ୍କୁ ସମର୍ପଣ କରିଥିଲେ ଏବଂ ଇଂରେଜମାନେ ତାହାକୁ ମାନ୍ଦ୍ରାଜ୍ ପ୍ରେସିଡେନ୍‌ସି ସହିତ ମିଶାଇଦେଇଥିଲେ।

କେନ୍ଦ୍ର ଓ ପଶ୍ଚିମ ଓଡ଼ିଶାର ସବୁ ଅଂଶ କରଦ ରାଜାମାନଙ୍କ ଶାସନାଧୀନ ଥିଲା। ୧୮୪୯ ମସିହାରେ ବଡ଼ଲାଟ୍ ଡାଲହାଉସିଙ୍କ ଅମଳରେ ସମ୍ବଲପୁର ରାଜ୍ୟ ଖାସ୍ ହୋଇ ପ୍ରତ୍ୟକ୍ଷ ବ୍ରିଟିଶ୍ ଶାସନ ଅଧୀନକୁ ଆସିଥିଲା। ଇଂରେଜମାନେ ସେ ରାଜ୍ୟକୁ ଗୋଟିଏ ସ୍ୱତନ୍ତ୍ର ଜିଲ୍ଲାରୂପେ ମଧ୍ୟପ୍ରଦେଶରେ ମିଶାଇଦେଇଥିଲେ। ସେ ଜିଲ୍ଲାର ଲୋକମାନେ ଓଡ଼ିଆ-ଭାଷାଭାଷୀ ଥିବା କଥା ସେମାନେ ବିଚାରକୁ ନେଇନଥିଲେ। କେନ୍ଦ୍ର ଓ ପଶ୍ଚିମ ଓଡ଼ିଶାର ଅନ୍ୟ ଅଞ୍ଚଳମାନ ଛୋଟଛୋଟ ଗଡ଼ଜାତ ରାଜ୍ୟରୂପେ ବିଭିନ୍ନ ଓଡ଼ିଆ ରାଜାଙ୍କ ଶାସନାଧୀନରେ ଥିଲା।

ସୁତରାଂ ଊନବିଂଶ ଶତାବ୍ଦୀର ଆରମ୍ଭରୁ କଟକ, ପୁରୀ, ବାଲେଶ୍ୱର ଜିଲ୍ଲା ସହ ଓଡ଼ିଶା ଡିଭିଜନ୍, ସ୍ୱତନ୍ତ୍ର ଜିଲ୍ଲାରୂପେ ମେଦିନୀପୁର ଜିଲ୍ଲା ଏବଂ ଛୋଟନାଗପୁର ଡିଭିଜନ୍‌ର ଅଙ୍ଗରୂପେ ସିଂହଭୂମି ଜିଲ୍ଲା ବଙ୍ଗ ପ୍ରେସିଡେନ୍ସିର ଅନ୍ତର୍ଭୁକ୍ତ ଥିଲା। ଦକ୍ଷିଣ-ଓଡ଼ିଶାର ଗଞ୍ଜାମ, କୋରାପୁଟ ଜିଲ୍ଲା ପ୍ରଭୃତି ଅଞ୍ଚଳ ମାନ୍ଦ୍ରାଜ୍ ପ୍ରେସିଡେନ୍ସିର ଅନ୍ତର୍ଭୁକ୍ତ ଥିଲା; ପଶ୍ଚିମ-ଓଡ଼ିଶାର ସମ୍ବଲପୁର ଜିଲ୍ଲା ୧୮୪୯ ମସିହାରୁ ମଧ୍ୟପ୍ରଦେଶର ଅନ୍ତର୍ଭୁକ୍ତ ଥିଲା ଏବଂ ପଶ୍ଚିମ ଓ କେନ୍ଦ୍ର ଓଡ଼ିଶାର ଅନ୍ୟ ଅଞ୍ଚଳମାନ ୨୬ଟି ଗଡ଼ଜାତ ରାଜ୍ୟରେ ବିଭକ୍ତ ହୋଇ କରଦ ଓଡ଼ିଆ ରାଜାଙ୍କ ଦ୍ୱାରା ଶାସିତ ହେଉଥିଲା। ଭାରତବର୍ଷର ଇତିହାସରେ ଅନ୍ୟ କୌଣସି ଭାଷାଭାଷୀ ଲୋକ ଏପରି ବିକ୍ଷିପ୍ତ ହୋଇ ବିଭିନ୍ନ ଶାସନ ଅଧୀନରେ ନଥିଲେ। ଓଡ଼ିଆମାନେ ଏପରି ବିକ୍ଷିପ୍ତ ଭାବରେ ରହିବାର ପରିଣାମ ମଧ୍ୟ ଶୋଚନୀୟ ଥିଲା। ସେମାନଙ୍କର ଜାତୀୟତା ଭାବ, ସଂହତି ଓ ସ୍ଥିତି କଷ୍ଟକର ହୋଇଯାଇଥିଲା। ସେମାନଙ୍କର ଭାଷା ଓ ସଂସ୍କୃତି କ୍ଷୁଣ୍ଣ ହୋଇ ପ୍ରଗତିହୀନ ହୋଇଥିଲା ଏବଂ ସେମାନଙ୍କର ଆର୍ଥିକ ଓ ସାମାଜିକ ଅବସ୍ଥାର କ୍ରମାଗତ ଭାବରେ ଅଧୋଗତି ହେଉଥିଲା। ଫଳରେ ସବୁଆଡ଼େ ସାଧାରଣ ଲୋକ ଦରିଦ୍ର, ନିରକ୍ଷର, ସ୍ୱାସ୍ଥ୍ୟହୀନ ଓ

ଅଜ୍ଞ ଭାବରେ କୁସଂସ୍କାର ମଧ୍ୟରେ ବାସକରୁଥିଲେ ।

ଯେଉଁସବୁ ପ୍ରଦେଶରେ ଓଡ଼ିଆମାନେ ବିକ୍ଷିପ୍ତ ହୋଇ ରହିଥିଲେ, ସେସବୁ ପ୍ରଦେଶମାନଙ୍କରେ ସେମାନେ ସଂଖ୍ୟାଲଘୁ ଲୋକ ଥିଲେ । ସେମାନେ ପ୍ରଦେଶର ଶେଷ ଭାଗରେ, ପ୍ରଦେଶ ରାଜଧାନୀରୁ ବହୁଦୂରରେ ରହୁଥିଲେ ଏବଂ ପ୍ରଦେଶର ଶାସନକଳ ଓ ଚାକିରିବାକିରିରେ ସେମାନଙ୍କର କୌଣସି ସ୍ଥାନ ନଥିଲା । ସେମାନଙ୍କ ମଧ୍ୟରେ ଶିକ୍ଷାର ପ୍ରସାର ହେଉ ନଥିଲା ଏବଂ ତାଙ୍କର ଭାଷା ଓ ସଂସ୍କୃତି ଅବହେଳିତ ହେଉଥିଲା । ବସ୍ତୁତଃ ସେମାନେ ସେ ପ୍ରଦେଶମାନଙ୍କରେ ବାହାରର ଲୋକପରି ରହୁଥିଲେ ।

ବଙ୍ଗ ପ୍ରଦେଶରେ ରହିଥିବା ଓଡ଼ିଶା ଡିଭିଜନ୍ ଓଡ଼ିଆମାନଙ୍କର ସର୍ବବୃହତ୍ ଏବଂ ମୁଖ୍ୟ ଅଞ୍ଚଳ ହୋଇଥିଲେ ସୁଦ୍ଧା ସେଥିରେ କଚେରି, ସ୍କୁଲ ଏବଂ ସମସ୍ତ ଶାସନ ବିଭାଗରେ ଥିବା ଚାକିରି ବଙ୍ଗାଳୀମାନେ ପାଉଥିଲେ । ଓଡ଼ିଶା ଡିଭିଜନ୍‌ରେ ସ୍କୁଲ ଶିକ୍ଷକ, କଲେଜ ଅଧ୍ୟାପକ, ଓଭରସିଅର୍, ଇଞ୍ଜିନିଅର୍, ଡାକ ଓ ରେଳ ବିଭାଗର କର୍ମଚାରୀ ପ୍ରଭୃତି ସମସ୍ତ ଚାକିରି ସେମାନେ ଅଧିକାର କରିଥିଲେ । ଓଡ଼ିଆମାନେ ଇଂରାଜୀ ଶିକ୍ଷା ପାଇନଥିବାରୁ କୌଣସି ବିଭାଗର ଚାକିରିରେ ପଶିପାରୁନଥିଲେ । ସେମାନେ ଦରିଦ୍ର ଓ ଅଜ୍ଞ ଥିବାରୁ, ଗ୍ରାମମାନଙ୍କରେ ଚାଷୀ ବା ମୂଲିଆ ଏବଂ ସହରମାନଙ୍କରେ ବାବୁମାନଙ୍କର ଚାକର, ପୂଜାରୀରୂପେ କାର୍ଯ୍ୟ କରି ଦୀନହୀନ ଜୀବନ ଯାପନ କରୁଥିଲେ । ଓଡ଼ିଶାରୁ ହଜାର ହଜାର ସଂଖ୍ୟାରେ ଅଶିକ୍ଷିତ ଓ ଦରିଦ୍ର ଲୋକ କଲିକତାରେ ବିଭିନ୍ନ କଳକାରଖାନାରେ ମଜୁରିଆ କିମ୍ବା ବାବୁମାନଙ୍କ ଘରେ ଚାକର, ପୂଜାରୀ, ମାଳୀ କିମ୍ବା ସହରରେ ସାଧାରଣ ଦିନମଜୁରିଆ ଓ ପାଲିଙ୍କିବାହକରୂପେ କାର୍ଯ୍ୟ କରୁଥିଲେ । କଟକ, ପୁରୀ, ବାଲେଶ୍ୱର, ଏପରିକି ଯାଜପୁର, କେନ୍ଦ୍ରାପଡ଼ା, ଭଦ୍ରକ ପ୍ରଭୃତି ଛୋଟବଡ଼ ସହରମାନଙ୍କରେ ବଙ୍ଗାଳୀବାବୁମାନେ ହାକିମ, ଓକିଲ, ସ୍କୁଲଶିକ୍ଷକ ଏବଂ ବିଭିନ୍ନ ସରକାରୀ ବିଭାଗରେ କର୍ମଚାରୀ, ଛୋଟବଡ଼ କଣ୍ଟ୍ରାକ୍ଟର ଏବଂ ବ୍ୟବସାୟୀ ପ୍ରଭୃତି ହିସାବରେ କାର୍ଯ୍ୟକରି ସେ ସ୍ଥାନମାନଙ୍କରେ କୋଠାବାଡ଼ି କରି ବାସ କରୁଥିଲେ । କଲିକତାର ବଙ୍ଗାଳୀମାନେ ଉପରୋକ୍ତ ଜିଲ୍ଲାମାନଙ୍କରେ ଥିବା ଅଧିକାଂଶ ଜମିଦାରି କିଣିନେଉଥିଲେ । ସେ ଜମିଦାରିମାନଙ୍କରେ ମାନେଜରଠାରୁ ଆରମ୍ଭକରି ତଳସ୍ତରର କର୍ମଚାରୀ କାମ ମଧ୍ୟ ବଙ୍ଗାଳୀମାନେ ପାଉଥିଲେ । ଏସବୁ ଜିଲ୍ଲାମାନଙ୍କରେ ଅନେକ ଗ୍ରାମାଞ୍ଚଳରେ ବହୁ ବଙ୍ଗବାସୀ ଲୋକ ଭୂ-ସମ୍ପତ୍ତି କିଣି ଏବଂ ଘରଦ୍ୱାର କରି ସ୍ୱଚ୍ଛନ୍ଦ ଭାବରେ ରହୁଥିଲେ । ବସ୍ତୁତଃ କଲିକତାରେ ବାସକରୁଥିବା ବଙ୍ଗାଳୀବାବୁମାନଙ୍କର ଶିକ୍ଷିତ ପିଲାମାନଙ୍କ ପାଇଁ ବିଭିନ୍ନ ବୃତ୍ତିରେ କାମ କରି ଧନ ଉପାର୍ଜନ କରିବା ନିମିତ୍ତ ବଙ୍ଗଳା,

ବିହାର, ଓଡ଼ିଶା, ଆସାମ ପ୍ରଭୃତି ଅଞ୍ଚଳରେ ବିସ୍ତୀର୍ଣ୍ଣ କ୍ଷେତ୍ର ଉନ୍ମୁକ୍ତ ଥିଲା। ସେଥିଯୋଗୁଁ ବଙ୍ଗଳା ଭାଷା, ସାହିତ୍ୟ ଓ ସଂସ୍କୃତି ଏସବୁ ଅଞ୍ଚଳମାନଙ୍କରେ ପ୍ରାଧାନ୍ୟ ଲାଭ କଲା। ଏସବୁ ସୁବିଧା ହରାଇବା ବଙ୍ଗବାସୀମାନଙ୍କ ପକ୍ଷରେ ଜୀବନମରଣ ସମସ୍ୟା ଥିଲା। ସେଥିଯୋଗୁଁ ସେମାନେ ଓଡ଼ିଶା, ବିହାର ଓ ଆସାମ ପ୍ରଭୃତି ରାଜ୍ୟରେ ସେମାନଙ୍କର ଆସନ ଦୃଢ଼ୀଭୂତ କରିବାକୁ ସର୍ବଦା ଚେଷ୍ଟା କରୁଥିଲେ ଏବଂ ଓଡ଼ିଆ ଓ ଆସାମୀ ପ୍ରଭୃତି ଭାଷାକୁ ଲୋପ କରିଦେବାକୁ ଉଦ୍ୟମ କରୁଥିଲେ। ୧୮୬୦ ଏବଂ ୧୮୭୦ ମସିହା ମଧରେ ବଙ୍ଗାଳୀମାନେ ଓଡ଼ିଶାର ସ୍କୁଲ ଓ କଚେରିମାନଙ୍କରୁ ଓଡ଼ିଆଭାଷା ଉଠାଇଦେଇ ବଙ୍ଗଳାଭାଷା ପ୍ରଚଳନ କରିବାପାଇଁ ବହୁବାର ଚେଷ୍ଟାକରିଥିଲେ।

କଲିକତା ବଙ୍ଗ ପ୍ରେସିଡେନ୍ସିର ଏବଂ ସମଗ୍ର ଭାରତବର୍ଷର ବହୁକାଳଧରି ରାଜଧାନୀ ଥିବାରୁ ସେଠାରେ ଇଂରେଜୀ ଶିକ୍ଷାଦାନୀ ସ୍କୁଲ, କଲେଜ ଓ ବିଶ୍ୱବିଦ୍ୟାଳୟ ପ୍ରଭୃତି କେନ୍ଦ୍ରୀଭୂତ ହୋଇଥିଲା। ସେଥିରେ ବଙ୍ଗବାସୀ ଯୁବକମାନେ ଶିକ୍ଷା ପାଇ ବଙ୍ଗଳା, ବିହାର, ଓଡ଼ିଶା ଓ ଆସାମ ପ୍ରଭୃତି ଅଞ୍ଚଳରେ ସବୁ ଚାକିରି ଅଧିକାର କରିଥିଲେ। ବଙ୍ଗାଳୀମାନେ ଆଗରୁ ଚାକିରିରେ ଥିବାରୁ ନୂତନ ଚାକିରି ସବୁ ସ୍ୱଜାତୀୟ ପ୍ରାର୍ଥୀଙ୍କୁ ଦେବାକୁ ଚାହୁଁଥିଲେ। ଓଡ଼ିଆମାନଙ୍କ ପକ୍ଷରେ କଲିକତା ଯାଇ ଇଂରାଜୀଶିକ୍ଷା ଲାଭକରିବା କଷ୍ଟକର ଥିଲା।

ଇଂରେଜମାନେ ୧୮୦୩ ମସିହାରେ ଓଡ଼ିଶା ଡିଭିଜନ୍ ଅଧିକାର କରିବାପରେ ପ୍ରାୟ ଷାଠିଏ ବର୍ଷ କାଳ ଏ ଅଞ୍ଚଳରେ ଶିକ୍ଷା, ସଂସ୍କୃତି, ସ୍ୱାସ୍ଥ୍ୟ ଓ ଆର୍ଥିକ ଉନ୍ନତି ପ୍ରତି ଦୃଷ୍ଟି ଦେଇନଥିଲେ। ଏ ଅଞ୍ଚଳରେ ଆଇନ୍-ଶୃଙ୍ଖଳା ପ୍ରତିଷ୍ଠା କରିବା ଏବଂ ନିୟମିତ ଭାବରେ ଭୂରାଜସ୍ୱ ଆଦାୟ କରିବା ସେ ସମୟରେ ସେମାନଙ୍କର ପ୍ରଧାନ ଲକ୍ଷ୍ୟ ଥିଲା। ସେମାନେ ଲୋକମାନଙ୍କର ସାମାଜିକ ଜୀବନରେ ହସ୍ତକ୍ଷେପ କରିବାକୁ ଚାହୁଁନଥିଲେ। ମାତ୍ର ସେମାନଙ୍କର ବ୍ୟାବସାୟିକ ଏବଂ ସାମଗ୍ରିକ ଅର୍ଥନୈତିକ ନୀତି ହେତୁ ଓଡ଼ିଶା ଅଞ୍ଚଳ ଦିନକୁଦିନ ଅଧିକ ଦରିଦ୍ର ହୋଇଯାଉଥିଲା। ସୂତାକଟା, ଲୁଗାବୁଣା ପ୍ରଭୃତି ବ୍ୟାପକଭାବରେ ଚାଲୁଥିବା କୁଟୀରଶିଳ୍ପମାନ ବିଲାତି ଜିନିଷମାନଙ୍କ ସହିତ ତୀବ୍ର ପ୍ରତିଯୋଗିତାର ସମ୍ମୁଖୀନ ହୋଇ ଲୋପ ପାଇବାକୁ ଯାଉଥିଲା। ଲୋକମାନେ କେବଳ ପାରମ୍ପରିକ ରୀତିରେ ହେଉଥିବା ଚାଷ ଉପରେ ନିର୍ଭର କରୁଥିଲେ। ଚାଷ ମୌସୁମୀବାୟୁଜନିତ ବର୍ଷା ଉପରେ ନିର୍ଭର କରୁଥିଲା। ଓଡ଼ିଶା ଡିଭିଜନ୍‌ର ତିନିଗୋଟିଯାକ ଜିଲ୍ଲାରେ ଘନଘନ ବଢ଼ି, ମରୁଡ଼ି, ବାତ୍ୟା ପ୍ରଭୃତି ପ୍ରାକୃତିକ ବିପର୍ଯ୍ୟୟରେ ଫସଲ ନଷ୍ଟ ହୋଇଯାଉଥିଲା। ସମଗ୍ର ଡିଭିଜନ୍‌ରେ ଦାରିଦ୍ର୍ୟ ଏବଂ ବେକାରୀ କ୍ରମାଗତ ଭାବରେ ବୃଦ୍ଧି ପାଉଥିଲା। ପ୍ରତିବର୍ଷ ସବୁ ଅଞ୍ଚଳରେ ହଇଜା, ବସନ୍ତ ପ୍ରଭୃତି ମହାମାରୀ ରୋଗମାନଙ୍କରେ

ବହୁଲୋକ ମରିଯାଉଥିଲେ। ସବୁ ଜିଲ୍ଲାର ଗ୍ରାମାଞ୍ଚଳରେ ରାସ୍ତାଘାଟର ସୁବିଧା ନଥିଲା ଏବଂ ପ୍ରେସିଡେନ୍ସିର ରାଜଧାନୀ କଲିକତା ସହର ସହିତ ଯୋଗାଯୋଗ ନିମିତ୍ତ ଜଗନ୍ନାଥ ସଡ଼କ ଏକମାତ୍ର ରାସ୍ତା ଥିଲା। ସେଥିରେ ନଦୀମାନଙ୍କରେ ପୋଲ ନଥିଲା ଏବଂ ବର୍ଷାଦିନେ ସେ ରାସ୍ତା ଅନେକ ସ୍ଥାନରେ ପାଣିରେ ବୁଡ଼ି ରହୁଥିଲା। ସବୁ ଋତୁରେ ସେ ରାସ୍ତାରେ ଅନେକ ସ୍ଥାନରେ ଚୋର-ଡକାୟତମାନେ ଯାତ୍ରୀମାନଙ୍କଠାରୁ ଜିନିଷପତ୍ର ଲୁଟି ନେଉଥିଲେ। ବଳଦଗାଡ଼ିରେ ବାଲେଶ୍ୱରରୁ କଲିକତା ଯିବାକୁ ଆଠ-ଦଶ ଦିନ ଲାଗିଯାଉଥିଲା। କଟକ କିମ୍ବା ପୁରୀରୁ ସେ ସହରକୁ ଯିବାକୁ ପ୍ରାୟ ମାସେ ସମୟ ଲାଗିଯାଉଥିଲା। ଓଡ଼ିଶାର ପିଲାମାନେ ସେ ସହରକୁ ପାଠପଢ଼ିବାକୁ ଯିବା କିମ୍ବା ସାଧାରଣ ଲୋକ ବାଣିଜ୍ୟ-ବ୍ୟବସାୟ ବା ସରକାରୀ କାର୍ଯ୍ୟରେ ସେଠାକୁ ଯିବା ଅତି କଷ୍ଟକର ଥିଲା। ଶତାବ୍ଦୀ ଶେଷରେ ୧୯୦୦ ମସିହା ବେଳକୁ ଓଡ଼ିଶାର ପୂର୍ବ ଉପକୂଳ ଦେଇ କଲିକତା ଓ ମାନ୍ଦ୍ରାଜ୍ ସହର ମଧ୍ୟରେ ରେଳଗାଡ଼ି ଚାଲିବାକୁ ଆରମ୍ଭ କଲା। ଆଗରୁ ଓଡ଼ିଶାରୁ କଟକ-ଚାନ୍ଦବାଲି ଏବଂ ଚାନ୍ଦବାଲି-କଲିକତା ମଧ୍ୟରେ ସମୁଦ୍ରରେ ଜାହାଜ ଓ ଷ୍ଟିମର୍ ଚଳାଚଳ କରୁଥିଲା। ୧୮୭୦ ମସିହା ପର୍ଯ୍ୟନ୍ତ ବ୍ରିଟିଶ୍ ସରକାର ନଦୀମାନଙ୍କରେ ବନ୍ଧବାଡ଼ ଦେଇ ବନ୍ୟା ପ୍ରତିରୋଧ କରିବା, ଜଳସେଚନ ବ୍ୟବସ୍ଥା କରି ମରୁଡ଼ି ସମୟରେ ଫସଲ ରକ୍ଷା କରିବା, ମହାମାରୀ ରୋଗମାନଙ୍କରୁ ଲୋକମାନଙ୍କୁ ରକ୍ଷାକରିବା ଏବଂ ଲୋକମାନଙ୍କର ଧନଜୀବନ ରକ୍ଷା କରିବାପାଇଁ ବ୍ୟବସ୍ଥା କରିବା ପ୍ରଭୃତି ଲୋକହିତକର କାର୍ଯ୍ୟ ପ୍ରତି କୌଣସି ଦୃଷ୍ଟି ଦେଇ ନଥିଲେ। ବିଭିନ୍ନ ଅଞ୍ଚଳରେ ଘନଘନ ଖାଦ୍ୟାଭାବ ହେବା ଏବଂ ଖଣ୍ଡ-ଦୁର୍ଭିକ୍ଷ ପଡ଼ିବା ସାଧାରଣ କଥା ଥିଲା। ଏହି ଦାରିଦ୍ର୍ୟୀକରଣ ପ୍ରକ୍ରିୟାର ଶେଷ ପରିଣାମରେ ସମଗ୍ର କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାରେ ୧୮୬୬ ମସିହାରେ ଭୟାବହ ନ'ଅଙ୍କ ଦୁର୍ଭିକ୍ଷ ପଡ଼ିଲା। ଓଡ଼ିଶାର ପାଞ୍ଚଶହ ବର୍ଷର ଇତିହାସରେ ସେ ଦୁର୍ଭିକ୍ଷ ଅଧିକ ଭୟାବହ ଥିଲା। ସରକାର ସେ ଦୁର୍ଭିକ୍ଷର ପ୍ରତିରୋଧ କରିବାକୁ ଅସମର୍ଥ ହେଲେ ଏବଂ ଡିଭିଜନ୍‌ର ଲୋକସଂଖ୍ୟାର ଏକ-ତୃତୀୟାଂଶ ପ୍ରାୟ ଦଶଲକ୍ଷ ଲୋକ କ୍ଷୁଧା ଓ ମହାମାରୀରେ ମରିଗଲେ। ବଞ୍ଚିଥିବା ଲୋକମାନଙ୍କର ପାଟିତୁଣ୍ଡ କରିବାର ଉପାୟ ନଥିଲା। ଲୋକେ ଅଶିକ୍ଷିତ ଓ ଅସହାୟ ଥିଲେ। ଓଡ଼ିଶାରେ କୌଣସି ଖବରକାଗଜ ନଥିଲା। ସାପ୍ତାହିକ ଖବରକାଗଜ 'ଉତ୍କଳ ଦୀପିକା' ୧୮୬୫ ମସିହା ଅଗଷ୍ଟ ମାସରେ ପ୍ରକାଶ ପାଇଥିଲା। ଉଚ୍ଚ ସରକାରୀ କର୍ତ୍ତୃପକ୍ଷ ସୁଦୂର କଲିକତା ସହରରେ ଲୋକମାନଙ୍କଠାରୁ ବହୁଦୂରରେ ରହୁଥିଲେ ଏବଂ ଲୋକମାନଙ୍କ ସୁଖ-ଦୁଃଖର ପ୍ରତ୍ୟକ୍ଷ ସମ୍ପର୍କରେ ନଥିଲେ। ତଥାପି ନ'ଅଙ୍କ ଦୁର୍ଭିକ୍ଷର ଗଣମୃତ୍ୟୁ ବ୍ରିଟିଶ୍ ପାର୍ଲିଆମେଣ୍ଟରେ ଆଲୋଡ଼ନ

ସୃଷ୍ଟି କଲା । ସରକାରୀ ଅବହେଳା ହେତୁ ଦଶଲକ୍ଷରୁ ଅଧିକ ଲୋକ କ୍ଷୁଧାରେ ମରିଯିବାଯୋଗୁଁ ବ୍ରିଟିଶ ସରକାର ଅନୁତାପ କଲେ ।

୧୮୭୦ ମସିହା ପରେ ଓଡ଼ିଶାରେ ନଦୀବନ୍ଧ, କେନାଲ୍ ନିର୍ମାଣ, ଦୁର୍ଭିକ୍ଷ ପ୍ରତିଶେଧକ ଯୋଜନାପ୍ରତି ସରକାରଙ୍କ ଦୃଷ୍ଟି ପଡ଼ିଲା । ପୂର୍ବ ଉପକୂଳର ରେଳରାସ୍ତା ପ୍ରକଳ୍ପ ବ୍ୟୟବହୁଳ ଓ ଲାଭଜନକ ନୁହେଁ ବୋଲି ସରକାର ବହୁକାଳ ଏଡ଼ାଇ ଦେଇଥିଲେ । ଓଡ଼ିଶା ଡିଭିଜନ୍‌ରେ ଘନ ଘନ ଦୁର୍ଭିକ୍ଷ ପଡ଼ିବାହେତୁ ୧୮୮୦ ମସିହା ପରେ ସରକାର ସେ ପ୍ରକଳ୍ପ ଆରମ୍ଭ କରିବାକୁ ସମ୍ମତି ଦେଇଥିଲେ । କଟକ-ସମ୍ବଲପୁର, କଟକ-କେନ୍ଦୁଝର, କଟକ-ମାଛଗାଁ ଓ ତାଳଦଣ୍ଡା ପ୍ରଭୃତି ରାସ୍ତା ନିର୍ମାଣ ଆରମ୍ଭ ହୋଇଥିଲା । ନଦୀବନ୍ଧ, କେନାଲ୍, ରେଳପଥ ପ୍ରଭୃତି କାର୍ଯ୍ୟକାରେ କଳାବେଳକୁ ଶତାବ୍ଦୀ ଶେଷ ହୋଇଯାଇଥିଲା ।

ଶିକ୍ଷା କ୍ଷେତ୍ରରେ ୧୮୬୮ ମସିହାରେ ରେଭେନ୍‌ସା କଲେଜିଏଟ୍ ସ୍କୁଲ୍‌ରେ ଏଫ୍.ଏ. କ୍ଲାସ୍ ଆରମ୍ଭ ହୋଇଥିଲା । ସେହି ସମୟରେ କଟକ ନର୍ମାଲ୍ ଟ୍ରେନିଂ ସ୍କୁଲ ଏବଂ କଟକ ମେଡିକାଲ୍ ସ୍କୁଲ ମଧ୍ୟ ଆରମ୍ଭ ହୋଇଥିଲା । ସ୍କୁଲମାନଙ୍କରେ ବିଭିନ୍ନ ବିଷୟ ଓଡ଼ିଆ ଭାଷାରେ ପଢ଼ାହେବା ପାଇଁ ୧୮୭୦ ମସିହାରେ ଶେଷ ନିଷ୍ପତ୍ତି ହୋଇଥିଲା । ୧୮୭୩ ମସିହା ପରେ ଓଡ଼ିଆ ଭାଷାକୁ ହଟାଇ ଦେବାପାଇଁ ଆଉ କୌଣସି ଉଦ୍ୟମ ହୋଇନାହିଁ । ମାତ୍ର ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ସୀମିତ ବିଷୟରେ ଶିକ୍ଷାଦାନ ସୁବିଧା ଥିବା ରେଭେନ୍‌ସା କଲେଜ ଓଡ଼ିଶାର ଏକମାତ୍ର କଲେଜ ଥିଲା ଏବଂ ସମଗ୍ର ଡିଭିଜନ୍‌ରେ ମୁଷ୍ଟିମେୟ ହାଇସ୍କୁଲ ଥିଲା । ସେହି ସବୁ ଶିକ୍ଷାନୁଷ୍ଠାନ କଲିକତା ବିଶ୍ୱବିଦ୍ୟାଳୟ ଅଧୀନରେ ଥିଲା । ଶତାବ୍ଦୀ ଶେଷ ସୁଦ୍ଧା ଓଡ଼ିଶାର ସ୍କୁଲମାନଙ୍କରୁ ୩୦ରୁ ଅଧିକ ଛାତ୍ର ପ୍ରବେଶିକା ପରୀକ୍ଷାରେ ପାସ୍ କରୁନଥିଲେ । ୧୯୦୬ ମସିହାରେ, ଗୋଦାବରୀଶ ମିଶ୍ର ପରୀକ୍ଷା, ଦେବା ବର୍ଷରେ ଗଡ଼ଜାତ ସମେତ ସମଗ୍ର ଓଡ଼ିଶା ଡିଭିଜନ୍‌ରୁ ୩୩ ଜଣ ଛାତ୍ର ପ୍ରବେଶିକା ପରୀକ୍ଷାରେ ପାସ୍ କରିଥିଲେ । ସେମାନଙ୍କ ମଧ୍ୟରେ ଅନେକ ବଙ୍ଗାଳୀ ପିଲା ଥିଲେ । ୧୯୦୩ ମସିହାରେ ରେଭେନ୍‌ସା କଲେଜରୁ ପ୍ରଥମ ଦଶ ଜଣ ପିଲା ବି.ଏ. ପରୀକ୍ଷା ଦେଇଥିଲେ । ମାତ୍ର ସେମାନଙ୍କ ମଧ୍ୟରୁ କେହି ପାସ୍ କରିନଥିଲେ । ପଣ୍ଡିତ ଗୋପବନ୍ଧୁ ଦାସ ସେହି ବ୍ୟାଚ୍‌ରେ ପରୀକ୍ଷା ଦେଇଥିଲେ । ପରବର୍ଷ ୧୯୦୪ ମସିହାରେ ଗୋପବନ୍ଧୁବାବୁଙ୍କ ସମେତ ଦୁଇଜଣ ଛାତ୍ର ରେଭେନ୍‌ସା କଲେଜରୁ ବି.ଏ. ପାସ୍ କରିଥିଲେ । ସେତେବେଳଯାଏ କି କଚେରି, କି ବିଦ୍ୟାଳୟ, କି ଡାକ୍ତରଖାନା ସବୁଠାରେ ଉପରୁ ତଳ ପର୍ଯ୍ୟନ୍ତ ପ୍ରାୟ ବଙ୍ଗାଳୀ କର୍ମଚାରୀ ରହୁଥିଲେ । ଉପରେ ଜଣେ ଗୋରା ଏବଂ ତାଙ୍କ ତଳକୁ କେବଳ ବଙ୍ଗାଳୀ ସର୍ବତ୍ର ଗାଦିମାଡ଼ି ବସିଥିଲେ । ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ବଙ୍ଗ ପ୍ରେସିଡେନ୍ସି ଅଧୀନରେ

ଥିବା ଓଡ଼ିଶା ଡିଭିଜନ୍‌ର ଲୋକମାନଙ୍କର ଅବସ୍ଥା ଏହିପରି ଥିଲା ।

ଦକ୍ଷିଣରେ ଗଞ୍ଜାମ ଓ କୋରାପୁଟ ଅଞ୍ଚଳ ୧୫୭୧ ମସିହାରୁ ଓଡ଼ିଶାଠାରୁ ବିଚ୍ଛିନ୍ନ ହୋଇ ଗୋଲକୁଣ୍ଡା ରାଜ୍ୟରେ ମିଶିଥିଲା । ୧୭୬୬ ମସିହାରେ ହାଇଦ୍ରାବାଦ ନିଜାମ୍ ମୋଗଲ୍ ସମ୍ରାଟ୍‌ଙ୍କ ସମ୍ମତିରେ ତାହାକୁ ଇଂରେଜ ସରକାରଙ୍କୁ ସମର୍ପଣ କରିଥିଲେ ଏବଂ ସେମାନେ ସେ ଅଞ୍ଚଳକୁ ମାନ୍ଦ୍ରାଜ ପ୍ରେସିଡେନ୍ସିରେ ମିଶାଇଦେଇଥିଲେ । ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ସେ ଅଞ୍ଚଳରେ କୌଣସି କଲେଜ ନ ଥିଲା ଏବଂ ହାଇସ୍କୁଲ ଓ ମଧ୍ୟଇଂରାଜୀ ସ୍କୁଲସଂଖ୍ୟା ମୁଷ୍ଟିମେୟ ଥିଲା । ମାନ୍ଦ୍ରାଜ୍ ପ୍ରେସିଡେନ୍ସିରେ ସବୁ ସ୍କୁଲ-କଲେଜରେ ତାମିଲ୍ ଓ ତେଲୁଗୁ ଭାଷା ଶିକ୍ଷା ଦିଆଯାଉଥିଲା । ଗଞ୍ଜାମ ଏବଂ କୋରାପୁଟ ଅଞ୍ଚଳର ସ୍କୁଲମାନଙ୍କରେ ଓଡ଼ିଆ ଭାଷା ଶିକ୍ଷାର ସୁବିଧା ନଥିଲା । ସରକାରୀ ବିଭାଗମାନଙ୍କରେ ସବୁ ଚାକିରି ତେଲୁଗୁ ଓ ତାମିଲ ଲୋକେ ଅଧିକାର କରିଥିଲେ । ମାନ୍ଦ୍ରାଜ ପ୍ରେସିଡେନ୍ସିର ରାଜଧାନୀ ମାନ୍ଦ୍ରାଜ ସହର ଗଞ୍ଜାମ ଓ କୋରାପୁଟ ଅଞ୍ଚଳରୁ ବହୁଦୂରରେ ଅବସ୍ଥିତ । ରେଳରାସ୍ତା ହେବା ପୂର୍ବରୁ ଓଡ଼ିଶା ଅଞ୍ଚଳରୁ ସେଠାକୁ ଯିବା ଅତି କଷ୍ଟକର ଥିଲା । ହାଇକୋର୍ଟ ଏବଂ ବିଶ୍ୱବିଦ୍ୟାଳୟ ମାନ୍ଦ୍ରାଜ ସହରରେ ଥିଲା । କଚେରି ଓ ଅନ୍ୟ ସରକାରୀ କାର୍ଯ୍ୟରେ ଓଡ଼ିଆମାନେ ସେଠାକୁ ଯାଇ ଚଳିବା ସୁବିଧାଜନକ ନଥିଲା । ଓଡ଼ିଶାର ଏ ଦୁଇ ଜିଲ୍ଲାର ଲୋକମାନେ ଚାଷବାସ କରି ଦରିଦ୍ର ଓ ନିରକ୍ଷର ହୋଇ ଗ୍ରାମମାନଙ୍କରେ ବାସ କରୁଥିଲେ । ମାତ୍ର ପୁରାକାଳରୁ ଗଞ୍ଜାମ ଜିଲ୍ଲା ଓଡ଼ିଆଭାଷା ଓ ସଂସ୍କୃତିର ପୀଠସ୍ଥଳୀ ଥିବାରୁ ଗଞ୍ଜାମବାସୀ ସେ ସଂସ୍କୃତିକୁ ଊନବିଂଶ ଶତାବ୍ଦୀ ଶେଷପର୍ଯ୍ୟନ୍ତ ବଞ୍ଚାଇରଖିଥିଲେ ।

ପଶ୍ଚିମ-ଓଡ଼ିଶାରେ ଊନବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ସବୁ ରାଜ୍ୟ ଛୋଟବଡ଼ କରଦ ରାଜାମାନଙ୍କଦ୍ୱାରା ଶାସିତ ହେଉଥିଲା । ୧୮୪୯ ମସିହାରେ ରାଜା ଅପୁତ୍ରିକ ଥିବାରୁ ସମ୍ବଲପୁର ରାଜ୍ୟ ଇଂରେଜମାନଙ୍କର ପ୍ରତ୍ୟକ୍ଷ ଶାସନ ଅଧୀନକୁ ଆସିଲା । ସରକାର ତାହାକୁ ଗୋଟିଏ ଜିଲ୍ଲା ହିସାବରେ ମଧ୍ୟପ୍ରଦେଶରେ ମିଶାଇଦେଇଥିଲେ । ପରବର୍ତ୍ତୀ ପ୍ରାୟ ପଚାଶବର୍ଷକାଳ ସେ ଜିଲ୍ଲାର ଅଧିବାସୀମାନେ ନାନାପ୍ରକାର ଦୁର୍ଦ୍ଦଶା ଭୋଗ କରିଥିଲେ । ୧୮୮୨ ମସିହା ସୁଦ୍ଧା ଜିଲ୍ଲାର ଏକମାତ୍ର ସରକାରୀ ହାଇସ୍କୁଲ ସମ୍ବଲପୁରଠାରେ ଥିଲା । ବରଗଡ଼ରେ ଗୋଟିଏ ମାଇନର ସ୍କୁଲ ଏବଂ ବରପାଲିରେ ମଧ୍ୟ-ଭର୍ଣ୍ଣାକୁଲାର ସ୍କୁଲ ଥିଲା । ଗ୍ରାମମାନଙ୍କରେ ପୁରାତନ ଚାଟଶାଳୀ ପ୍ରଣାଳୀରେ ପ୍ରାଥମିକ ଶିକ୍ଷା ଦିଆଯାଉଥିଲା । ଯେଉଁ ମୁଷ୍ଟିମେୟ ଉଚ୍ଚମାଧ୍ୟମିକ, ମଧ୍ୟଇଂରାଜୀ ଓ ମଧ୍ୟଭର୍ଣ୍ଣାକୁଲାର ସ୍କୁଲ ଥିଲା, ସେଥିରେ ଓଡ଼ିଆରେ ଯେଉଁ ପାଠ୍ୟପୁସ୍ତକମାନ ଚଳୁଥିଲା ତାହା ବଙ୍ଗଳାଭାଷାରୁ ଓଡ଼ିଆ ଭାଷାରେ ଅନୁବାଦ କରାହେଉଥିଲା । ସମ୍ବଲପୁର ଜିଲ୍ଲା ୧୯୦୫ ମସିହା ପର୍ଯ୍ୟନ୍ତ

ମଧ୍ୟପ୍ରଦେଶ ଅଧୀନରେ ଥିବାରୁ ଓଡ଼ିଶା ଡିଭିଜନ୍‌ରେ ପ୍ରଚଳିତ ପାଠ୍ୟପୁସ୍ତକମାନ ସେଠାରେ ଚଳୁନଥିଲା । ଜିଲ୍ଲାର ଏକମାତ୍ର ହାଇସ୍କୁଲ 'ସମ୍ବଲପୁର ଜିଲ୍ଲାସ୍କୁଲ'ରେ ଅଧିକାଂଶ ଶିକ୍ଷକ ହିନ୍ଦୁସ୍ଥାନୀ ଓ ମରହଟ୍ଟା ଥିଲେ । ପିଲାମାନେ ହିନ୍ଦୀ ଭାଷା ଶିକ୍ଷା କରୁଥିଲେ ଏବଂ ଶିକ୍ଷକମାନେ ପିଲାମାନଙ୍କ ସହିତ ହିନ୍ଦୀରେ କଥାବାର୍ତ୍ତା କରୁଥିଲେ । ପାଟଣା, ସୋନପୁର, କଳାହାଣ୍ଡି, ବାମଣ୍ଡା ଏବଂ ରେଢ଼ାଖୋଲ ପ୍ରଭୃତି ଷ୍ଟେଟ୍‌ର ପଲିଟିକାଲ୍ ଏଜେଣ୍ଟ ଛତିଶଗଡ଼ ଡିଭିଜନ୍‌ର ରାଜଧାନୀ ରାୟପୁରଠାରେ ରହୁଥିଲେ । ମଧ୍ୟପ୍ରଦେଶରୁ ବହୁସଂଖ୍ୟକ ମରହଟ୍ଟା ଓ ହିନ୍ଦୁସ୍ଥାନୀ ଆସି ସମ୍ବଲପୁର ସମେତ ଏସବୁ ଅଞ୍ଚଳରେ ସରକାରୀ ଚାକିରି ଏବଂ ଅନ୍ୟ ବ୍ୟବସାୟମାନ ଅଧିକାର କରିନେଇଥିଲେ । ପ୍ରାଥମିକ ଶିକ୍ଷା ପରିଦର୍ଶନ ମରହଟ୍ଟା ଓ ହିନ୍ଦୁସ୍ଥାନୀ କର୍ମଚାରୀମାନଙ୍କ ହସ୍ତରେ ଥିଲା । ସେମାନେ କ୍ରମେ ଜିଲ୍ଲାରେ ଓଡ଼ିଆ ଜାତୀୟତା ଲୋପ କରିବାକୁ ବସିଲେ । ସେମାନେ ଜିଲ୍ଲାର ସ୍କୁଲ ଓ କଚେରିମାନଙ୍କରୁ ଓଡ଼ିଆଭାଷା ଉଠାଇଦେଇ ହିନ୍ଦୀଭାଷା ପ୍ରଚଳନ କରିବାକୁ ଉଦ୍ୟମ କଲେ । ୧୮୯୫ ମସିହାରେ ସମ୍ବଲପୁର ଜିଲ୍ଲାର ଅଦାଲତମାନଙ୍କରୁ ଓଡ଼ିଆଭାଷା ଉଠାଇ ଦିଆଗଲା । ସେତେବେଳେ ସାର ଜନ୍ ଉଡ୍‌ବର୍ଣ୍ଣ ମଧ୍ୟପ୍ରଦେଶର ଚିଫ୍ କମିଶନର, ଜଣେ ମରହଟ୍ଟା ସମ୍ବଲପୁର ଜିଲ୍ଲାର ଡେପୁଟି କମିଶନର ଏବଂ ତାଙ୍କ ଅଧୀନସ୍ଥ ହାକିମ, କିରାଣି, ପ୍ରାୟ ସମସ୍ତେ ମରହଟ୍ଟା ବା ହିନ୍ଦୁସ୍ଥାନୀ ଥିଲେ । ମାତ୍ର ସମ୍ବଲପୁରର ସ୍ୱଭାଷା ଓ ସ୍ୱଦେଶ ପ୍ରେମୀ ଲୋକମାନେ ଅଦାଲତମାନଙ୍କରୁ ଓଡ଼ିଆଭାଷା ଉଠାଇ ହିନ୍ଦୀଭାଷା ପ୍ରଚଳନ କରିବାର ଘୋର ବିରୋଧ କଲେ । ସେମାନଙ୍କର ଆନ୍ଦୋଳନ ଏବଂ ଅକ୍ଲାନ୍ତ ଉଦ୍ୟମ ଫଳରେ ପରବର୍ତ୍ତୀ ଚିଫ୍ କମିସନର୍ ସାର୍ ଆଣ୍ଡ୍ର ଫ୍ରେଜର୍‌ଙ୍କ ସହାୟତାରେ ୧୯୦୫ ମସିହାରେ ସମ୍ବଲପୁର ଜିଲ୍ଲା ବଙ୍ଗପ୍ରଦେଶ ଅନ୍ତର୍ଗତ ଓଡ଼ିଶା ଡିଭିଜନ୍‌ରେ ମିଶିଲା । କିନ୍ତୁ ଫୁଲଝର ଜମିଦାରି, ପଦ୍ମପୁର ଓ ଫୁଲଝର ତାଲୁକ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ହୋଇଥିଲେ ସୁଦ୍ଧା ମଧ୍ୟପ୍ରଦେଶରେ ରହିଯାଇଥିଲା ।

୧୯୦୫ ମସିହା ସୁଦ୍ଧା ସମ୍ବଲପୁରର ଜନସାଧାରଣଙ୍କ ଶିକ୍ଷା-ଦୀକ୍ଷା ଏବଂ ଆର୍ଥିକ ଅବସ୍ଥା ଓଡ଼ିଶା ଡିଭିଜନ୍‌ର ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କର ଲୋକମାନଙ୍କ ଅବସ୍ଥାଠାରୁ ଅଧିକ ଅନୁନ୍ନତ ଥିଲା । ଓଡ଼ିଶାର ଅନ୍ୟ ଅଞ୍ଚଳମାନଙ୍କ ପରି ସେ ଅଞ୍ଚଳରେ ମରୁଡ଼ି ହେତୁ ଘନ ଘନ ଖଣ୍ଡ-ଦୁର୍ଭିକ୍ଷ ପଡୁଥିଲା ଏବଂ ଗ୍ରାମମାନଙ୍କରେ ହଇଜା ଓ ବସନ୍ତ ପରି ମହାମାରୀ ରୋଗରେ ବହୁଲୋକ ମରିଯାଉଥିଲେ ଏବଂ ବହୁଗ୍ରାମରେ ଏହି ଦୁର୍ବିପାକ ସମୟରେ ଲୋକେ ପରିବାର ସହିତ ଅନ୍ୟ ଗ୍ରାମମାନଙ୍କୁ ପଳାଇଯାଉଥିଲେ । ସବୁ ଅଞ୍ଚଳ ପରି ସେ ଅଞ୍ଚଳରେ ରାସ୍ତାଘାଟର ସୁବିଧା ନଥିଲା ଏବଂ ନଦୀମାନଙ୍କରେ ପୋଲ ନଥିଲା । ହାଟ, ବଜାର,

ବାଣିଜ୍ୟ-ବ୍ୟବସାୟ ସବୁ ଆଦିମ ଧରଣର ଥିଲା ।

ଉତ୍ତର, ଦକ୍ଷିଣ ଓ ପଶ୍ଚିମ ଅଞ୍ଚଳରେ ଉପରୋକ୍ତ ବ୍ରିଟିଶ୍ ସରକାରଙ୍କ ପ୍ରତ୍ୟକ୍ଷ ଶାସନ ଅଧୀନରେ ଥିବା ଓଡ଼ିଶା ଅଞ୍ଚଳମାନଙ୍କ ବ୍ୟତୀତ ଓଡ଼ିଶାର କେନ୍ଦ୍ର ଓ ପଶ୍ଚିମାଞ୍ଚଳରେ ୨୬ ଗୋଟି ଗଡ଼ଜାତ ରାଜ୍ୟ ବ୍ରିଟିଶ୍ ସରକାରଙ୍କ ସାର୍ବଭୌମ କ୍ଷମତା ଅଧୀନରେ ବିଭିନ୍ନ ଓଡ଼ିଆ ରାଜାମାନଙ୍କଦ୍ୱାରା ଶାସିତ ହେଉଥିଲା । ରାଜ୍ୟରେ ଅରାଜକତା, ପ୍ରଜାବିପ୍ଳବ କିମ୍ବା ପ୍ରଜାମାନଙ୍କ ଉପରେ ଅତୀବ ଅତ୍ୟାଚାରର ଅଭିଯୋଗ ନହେଲେ ସାଧାରଣତଃ ବ୍ରିଟିଶ ସରକାର ରାଜ୍ୟ ଶାସନରେ ହସ୍ତକ୍ଷେପ କରୁ ନଥିଲେ । ରାଜାମାନେ ପ୍ରଜାବିପ୍ଳବ ପ୍ରଭୃତି ଗଣ୍ଡଗୋଳ ଦମନ କରିବାପାଇଁ ବ୍ରିଟିଶ୍ ସରକାରଙ୍କ ସୈନ୍ୟ, ପୁଲିସ୍ ଏବଂ ଅସ୍ତ୍ରଶସ୍ତ୍ର ଉପରେ ନିର୍ଭର କରୁଥିଲେ ଏବଂ ବ୍ରିଟିଶ୍ ସରକାରଙ୍କର ସେମାନଙ୍କ ଉପରେ ସାର୍ବଭୌମ କ୍ଷମତା ଓ ପୂର୍ଣ୍ଣ କର୍ତ୍ତୃତ୍ୱ ଥିଲା । ମୋଗଲବନ୍ଦି ଅଞ୍ଚଳରେ ବ୍ରିଟିଶ୍ ଶାସନର ପ୍ରଥମ ଅବସ୍ଥାରେ ବିଭିନ୍ନ ଅଞ୍ଚଳକୁ ଯିବାଆସିବା କରିବାପାଇଁ ରାସ୍ତାଘାଟ ନଥିଲା, ଶିକ୍ଷା ସ୍ୱାସ୍ଥ୍ୟର ବ୍ୟବସ୍ଥା ନଥିଲା ଏବଂ ଆଇନ-ଶୃଙ୍ଖଳା ସୁଦୃଢ଼ ନଥିଲା । ମାତ୍ର ୧୮୬୬ ମସିହାର ନ'ଅଙ୍କ ଦୁର୍ଭିକ୍ଷ ପରେ ସରକାର ବହୁ ଜନହିତକର କାର୍ଯ୍ୟ କରିବାକୁ ବାଧ୍ୟ ହୋଇଥିଲେ । ସରକାର ଆଇନ-ଶୃଙ୍ଖଳା ରକ୍ଷାର ସୁଦୃଢ଼ ବ୍ୟବସ୍ଥା କଲେ, କୋର୍ଟ କଚେରିମାନ ବିଧିବଦ୍ଧ ଭାବରେ ପରିଚାଳନା କଲେ ଏବଂ ଜମିଜମା ଆଇନ ଓ ବିଭିନ୍ନ ପ୍ରକାର କର ଆଦାୟର ବ୍ୟବସ୍ଥା କଲେ । ଶିକ୍ଷାଦାନ ପାଇଁ ସରକାର ନୂତନ ପ୍ରଣାଳୀର ପ୍ରାଥମିକ, ମାଧ୍ୟମିକ ଏବଂ ଉଚ୍ଚ ଶିକ୍ଷାନୁଷ୍ଠାନମାନ ସ୍ଥାପନ କଲେ । ସ୍ୱାସ୍ଥ୍ୟ-ସେବାପାଇଁ ପାଶ୍ଚାତ୍ୟ ରୀତିରେ ଡାକ୍ତରଖାନାମାନ ପ୍ରତିଷ୍ଠା କରିବାକୁ ଆରମ୍ଭ କଲେ ଏବଂ ମହାମାରୀ ରୋଗମାନଙ୍କର ପ୍ରତିଷେଧକ ବ୍ୟବସ୍ଥା କଲେ । ଗମନାଗମନର ସୁବିଧାପାଇଁ ରାସ୍ତା, ଜଳସେଚନ ପାଇଁ ଆନିକଟ ଓ କେନାଲମାନ ନିର୍ମାଣ କଲେ । ଏ ସବୁ ବ୍ୟବସ୍ଥା ପ୍ରଥମ ପଚାଶ-ଷାଠିଏ ବର୍ଷ ପ୍ରାରମ୍ଭିକ ଓ ଅନୁନ୍ନତ ଅବସ୍ଥାରେ ଥିଲା ସତ୍ୟ, କିନ୍ତୁ ଏସବୁ ବ୍ୟବସ୍ଥା ହେତୁ ଆଧୁନିକ ପଦ୍ଧତିରେ ରାଜ୍ୟଶାସନ ପ୍ରଗତି ଲାଭ କଲା ଏବଂ ୧୮୮୦ ମସିହା ପରେ ଲୋକମାନଙ୍କର ଆର୍ଥିକ ଅବସ୍ଥା କ୍ରମଶଃ ଉନ୍ନତ ହେଲା । ତାର ପ୍ରଭାବ ମଧ୍ୟ ଜନସାଧାରଣଙ୍କ ସାମାଜିକ ଅବସ୍ଥା ଉପରେ ପଡ଼ିଥିଲା ।

ମାତ୍ର ଗଡ଼ଜାତ ରାଜ୍ୟସବୁ ପୂର୍ବପରି ଅନୁନ୍ନତ ଅବସ୍ଥାରେ ରହିଯାଇଥିଲା । ସେଠାରେ ଶାସନ ପ୍ରଣାଳୀ, ଶିକ୍ଷା, ସ୍ୱାସ୍ଥ୍ୟ, ଗମନାଗମନ ପ୍ରଭୃତି ବ୍ୟବସ୍ଥାରେ ମୋଗଲବନ୍ଦି ଅଞ୍ଚଳ ପରି ଉନ୍ନତ ହୋଇ ପାରିନଥିଲା । ଫଳରେ ସେ ଅଞ୍ଚଳର ଲୋକମାନେ ଅନୁନ୍ନତ ଅବସ୍ଥାରେ ଆଉ ଶହେ ବର୍ଷ ରହିଗଲେ । ତାହାର

ପ୍ରଧାନ କାରଣ ହେଲା ସେ ରାଜ୍ୟସବୁ ଅତ୍ୟନ୍ତ ଛୋଟ ଥିଲେ। କର ଆଦାୟ କରି ଆଧୁନିକ ଶାସନ ପ୍ରଣାଳୀ ଚଳାଇବାର ସୁବିଧା ନଥିଲା। ରାଜ୍ୟ-ଶାସନର ସର୍ବମୟ କର୍ତ୍ତା ଅଧିକାଂଶ ରାଜାଙ୍କର ଆଧୁନିକ ଶାସନ ବିଷୟରେ ଧାରଣା, ବିଦ୍ୟାବୁଦ୍ଧି ଓ ଦକ୍ଷତା ନଥିଲା କିମ୍ବା ସେଥିପାଇଁ ବିଭିନ୍ନ ସଂଗଠନ ପ୍ରତିଷ୍ଠା କରିବାପାଇଁ ସେମାନଙ୍କର ଶକ୍ତି ଓ ସମ୍ବଳ ନଥିଲା। ଅଧିକାଂଶ ରାଜ୍ୟ ଅତି ଛୋଟ ଥିବାରୁ ରାଜ୍ୟ ମଧ୍ୟରେ ଯିବା ଆସିବା କରିବାକୁ ରାସ୍ତା ନଥିଲା କିମ୍ବା ବ୍ରିଟିଶ୍-ଶାସିତ ଅଞ୍ଚଳର ଚଉଡ଼ା ଓ ଦୂରଗାମୀ ରାସ୍ତାମାନଙ୍କ ସହିତ ସଂଯୋଗ ନଥିଲା। ବହୁ ଛୋଟ ରାଜ୍ୟ ବାହାର-ଜଗତରୁ ବିଚ୍ଛିନ୍ନ ହୋଇ ରହିଥିଲେ। ରାଜ୍ୟଗୁଡ଼ିକ ଘନ ଜଙ୍ଗଲରେ ପୂର୍ଣ୍ଣ ଥିଲେ ମଧ୍ୟ ଜଙ୍ଗଲ-ସମ୍ପଦର ଉପଯୁକ୍ତ ବିନିଯୋଗ ହେଉନଥିଲା। ଅଧିକାଂଶ ରାଜ୍ୟର ବହୁଭାଗ ପ୍ରଜା ଆଦିବାସୀ ସଂପ୍ରଦାୟର ଲୋକ ଥିଲେ। ସେମାନେ ଅଗମ୍ୟ, ବାହାର-ଜଗତ ସହିତ ସଂଯୋଗବିହୀନ, ଅରଣ୍ୟ-ପରିବେଷ୍ଟିତ ଗ୍ରାମମାନଙ୍କରେ ନିଜନିଜର ସଂସ୍କୃତି, ପରମ୍ପରା ଓ ରୀତି ଅନୁସାରେ ବାସକରୁଥିଲେ। ସେମାନଙ୍କର ଶିକ୍ଷାଦୀକ୍ଷା କିଛି ନଥିଲା କିମ୍ବା ଆଧୁନିକ ସଭ୍ୟତା, ବିଜ୍ଞାନସମ୍ମତ କୃଷିପ୍ରଣାଳୀ ପ୍ରଭୃତି କୌଣସି ବିଷୟରେ ଜ୍ଞାନ ନଥିଲା। ସେମାନେ ସ୍ୱଳ୍ପ ଆବାଦୀ ଜମିରେ ଅତି ଅନୁନ୍ନତ ପ୍ରଣାଳୀର ଚାଷ ଓ ଅରଣ୍ୟଜାତ ପଦାର୍ଥର ସଂଗ୍ରହ ଦ୍ୱାରା ଜୀବିକା ନିର୍ବାହ କରୁଥିଲେ। ସେମାନେ ଏତେ ଗରିବ ଥିଲେ ଯେ, ସେମାନଙ୍କ ଉପରେ କର ବସାଇବା ଏବଂ ତାହା ଆଦାୟ କରିବାର ସମ୍ଭାବନା ନଥିଲା। ରାଜ୍ୟ ବାହାରୁ ଆସିଥିବା ବ୍ୟବସାୟୀ ଏବଂ ରାଜ୍ୟ ଭିତରେ ଥିବା ଅଣଆଦିବାସୀ ଲୋକେ ସେମାନଙ୍କୁ ଶୋଷଣ କରୁଥିଲେ।

ଗଡ଼ଜାତ ଅଞ୍ଚଳରେ ସହର ନଥିଲା କହିଲେ ଚଳେ। ରାଜ୍ୟର ରାଜଧାନୀ, ରାଜାଙ୍କ ଗଡ଼ ଏବଂ ସଦର ମହକୁମାମାନ ଖଣ୍ଡିଏ ଖଣ୍ଡିଏ ବଡ଼ ଗାଁ ଥିଲା। ସମଗ୍ର ଗଡ଼ଜାତ ରାଜ୍ୟଗୁଡ଼ିକରେ ମରୁଡ଼ି ଚାଷ ପାଇଁ ପ୍ରଧାନ ବିପଦ ଥିଲା। ମରୁଡ଼ି ହେଲେ ବିଭିନ୍ନ ଅଞ୍ଚଳରେ ଖଣ୍ଡ-ଦୁର୍ଭିକ୍ଷ ପଡୁଥିଲା। ରାଜ୍ୟଗୁଡ଼ିକରେ ଘରଦ୍ୱାର, ଗୋରୁଗାଈ, କୃଷି, ବାଣିଜ୍ୟ, ହାଟବଜାର ସବୁ ଆଦିମ ଧରଣର ଥିଲା ଏବଂ ସାଧାରଣ ଲୋକ ମୋଗଲବନ୍ଦି ଅଞ୍ଚଳର ଲୋକମାନଙ୍କଠାରୁ ଅଧିକ ଗରିବ ଓ ଅଶିକ୍ଷିତ ଥିଲେ। ବ୍ରିଟିଶ୍-ଶାସିତ ଅଞ୍ଚଳ ପରି ସବୁ ରାଜ୍ୟରେ ଶିକ୍ଷା, ସ୍ୱାସ୍ଥ୍ୟ, ପୁଲିସ୍, ଜଙ୍ଗଲ ଓ ନିର୍ମାଣ ବିଭାଗମାନ ଥିଲା। ମାତ୍ର ରାଜ୍ୟର ମୋଟ ରାଜସ୍ୱ ଅତି ଅଳ୍ପ ଥିବାରୁ ଏବଂ ସଂଗୃହୀତ ରାଜସ୍ୱର ଅଧିକାଂଶ ଭାଗ ରାଜପରିବାର ଏବଂ କର୍ମଚାରୀମାନଙ୍କ ଖର୍ଚ୍ଚରେ ଲାଗୁଥିବାରୁ ସବୁ ବିଭାଗରେ ଆୟବ୍ୟୟ ପରିମାଣ ସ୍ୱଳ୍ପ ଥିଲା। ସ୍ୱଳ୍ପ ବେତନଭୋଗୀ କର୍ମଚାରୀମାନେ ନିମ୍ନମାନର

ଥିଲେ, ସେମାନଙ୍କର ସଂଖ୍ୟା କମ୍ ଥିଲା ଏବଂ ସେମାନଙ୍କ ଚାକିରି ରାଜାଙ୍କର ଅନୁଗ୍ରହ ଓ ଇଚ୍ଛା ଉପରେ ନିର୍ଭର କରୁଥିବାରୁ ସ୍ଥାୟୀ କିମ୍ବା ସ୍ଥିର ନଥିଲା । କର୍ମଚାରୀମାନେ ସର୍ବଦା ରାଜାଙ୍କର ଅନୁଗ୍ରହପ୍ରାର୍ଥୀ ଓ ତୋଷାମଦକାରୀ ଥିଲେ । ସେମାନେ ରାଜାମାନଙ୍କର ପ୍ରଜାଶୋଷଣ ଓ ନିଷ୍ପେଷଣର ମାଧ୍ୟମ ଥିଲେ । ନିଜ ସ୍ୱାର୍ଥରେ ମଧ୍ୟ ସେମାନେ ପ୍ରଜାମାନଙ୍କୁ ଶୋଷଣ କରୁଥିଲେ । ପ୍ରଜାମାନେ ରାଜପରିବାରର ଲୋକ ଓ ରାଜକର୍ମଚାରୀମାନଙ୍କୁ ଅତ୍ୟନ୍ତ ଭୟକରୁଥିଲେ ଏବଂ ସର୍ବଦା ସେମାନଙ୍କଠାରୁ ଦୂରରେ ରହିବାକୁ ଚେଷ୍ଟାକରୁଥିଲେ ।

ସବୁ ଗଡ଼ଜାତ ରାଜ୍ୟରେ ଭୂରାଜସ୍ୱ ପ୍ରଧାନ କର ଥିଲା ଏବଂ ତାହା ଗାଁ ପ୍ରଧାନମାନଙ୍କଦ୍ୱାରା ଆଦାୟ ହେଉଥିଲା । ଏକର ପ୍ରତି ଖଜଣା ଅତି ଅଳ୍ପ ଥିଲା । ତଥାପି ଅଳ୍ପମାତ୍ରାରେ ଖଜଣା ବଢ଼ାଇଦେଲେ କରଭାର ଦୁର୍ବହ ହେଲାବୋଲି ପ୍ରଜାମାନେ ଭାବୁଥିଲେ । ବ୍ୟକ୍ତିଗତ ଭାବରେ କରବୃଦ୍ଧିକୁ ବିରୋଧ କରିବାକୁ କୌଣସି ପ୍ରଜାର ଶକ୍ତି ନଥିଲା; ମାତ୍ର କରବୃଦ୍ଧି ହେଲେ ଅନେକ ସମୟରେ ପ୍ରଜାମାନେ ମେଳି ବାନ୍ଧି ବିଦ୍ରୋହ କରୁଥିଲେ । ବିଭିନ୍ନ ବିଷୟରେ ଟିକସ ବସାଇବାର ସମ୍ଭାବନା କମ୍ ଥିବାରୁ ରାଜାମାନେ ଅନେକ ସମୟରେ ଚୁଲି ଟିକସ, ରାସ୍ତା ବ୍ୟବହାର ହେତୁ ପଥକର ଏବଂ ଜଙ୍ଗଲ ସମ୍ପଦ ସଂଗ୍ରହ ଉପରେ ଟିକସ ପ୍ରଭୃତି ଅନେକ ଅପ୍ରୀତିକର ଟିକସ ବସାଉଥିଲେ । ଏ ସବୁ ଟିକସ ଆଦାୟବେଳେ କର୍ମଚାରୀମାନେ ଅନେକ ପ୍ରକାର ଦୁର୍ନୀତି କରୁଥିଲେ ଏବଂ ପ୍ରଜାମାନେ ଅତ୍ୟାଚାରିତ ହେଉଥିଲେ । ସବୁ ଗଡ଼ଜାତ ରାଜ୍ୟରେ ବେଠି ଗୋଟିଏ ସାଧାରଣ ପ୍ରଥା ଥିଲା । ରାସ୍ତା ନିର୍ମାଣ, ରାଜା ଓ ରାଜପରିବାର ଲୋକଙ୍କ ବ୍ୟକ୍ତିଗତ କାର୍ଯ୍ୟ, ଗାଁ-ପଧାନ ଓ ରାଜକର୍ମଚାରୀମାନଙ୍କ ବ୍ୟକ୍ତିଗତ କାର୍ଯ୍ୟ ପାଇଁ ବେଠି ଆଦାୟ କରାଯାଉଥିଲା । ଏହା ବିରୁଦ୍ଧରେ ଆପତ୍ତି କରିବାକୁ କାହାରି ସାହସ ନଥିଲା । କୌଣସି ଲୋକ ଆପତ୍ତି କଲେ ବା ଅସନ୍ତୋଷ ପ୍ରକାଶ କଲେ ତାକୁ ସଙ୍ଗେ ସଙ୍ଗେ ଶାସ୍ତି ଦିଆଯାଉଥିଲା । ଶାସ୍ତିଟା ସବୁବେଳେ ମାଡ଼; ତାହା ଛଡ଼ା ଗୋରୁ-ଗାଈ ନେଇଯିବା, ଘର ଭାଙ୍ଗିଦେବା, ଶେଷରେ ରାଜ୍ୟରୁ ବାହାର କରିଦେବା ପ୍ରଭୃତି ଉପରକୁ ଉପରକୁ ବହୁତ ପ୍ରକାର ଶାସ୍ତି ଥିଲା । ବେଠି ବ୍ୟତୀତ ରାଜା ଓ ରାଜକର୍ମଚାରୀମାନେ ବିଭିନ୍ନ ସମୟରେ ବିଭିନ୍ନ କାର୍ଯ୍ୟରେ ପ୍ରଜାମାନଙ୍କଠାରୁ ଦୁଧ, ଘିଅ, ଚାଉଳ, ଡାଲି, ପରିବା ପ୍ରଭୃତି ବହୁପ୍ରକାର ରସଦ ମାଗଣାରେ ଆଦାୟ କରୁଥିଲେ ।

ସବୁଠାରୁ ମାରାତ୍ମକ ଗୃହୀତ ଆଇନ ଏବଂ ପରମ୍ପରା ଥିଲା ଯେ, ରାଜା ରାଜ୍ୟର ଜମି, ନଦୀ, ପର୍ବତ, ଅରଣ୍ୟ ପ୍ରଭୃତି ସମସ୍ତ ସମ୍ପଦର ମାଲିକ । ପ୍ରଜାମାନେ ତାଙ୍କ ଅନୁମତିରେ ଏବଂ ତାଙ୍କୁ କର ଦେଇ ରାଜ୍ୟରେ

ବାସ କରୁଛନ୍ତି ଏବଂ ଚାଷବାସ, ବ୍ୟବସାୟ ଓ ଜଙ୍ଗଲ ପ୍ରଭୃତି ବିଭିନ୍ନ ସମ୍ବଳ ବ୍ୟବହାର କରି ଜୀବିକା ନିର୍ବାହ କରୁଛନ୍ତି। ପ୍ରଜାମାନେ ସେମାନଙ୍କର ଅଧିକାର ସାବ୍ୟସ୍ତ କରି ପାରୁନଥିଲେ। ବାସ୍ତବ କ୍ଷେତ୍ରରେ ରାଜକୋଷ ଏବଂ ରାଜାଙ୍କର ବ୍ୟକ୍ତିଗତ ପାଣ୍ଠି ମଧ୍ୟରେ କୌଣସି ତଫାତ୍ ନଥିଲା। ରାଜାମାନେ ଇଚ୍ଛାନୁସାରେ ପ୍ରଜାମାନଙ୍କଠାରୁ ଆଦାୟ କରାଯାଉଥିବା ରାଜକୋଷରୁ ଧନ ଖର୍ଚ୍ଚ କରିପାରୁଥିଲେ। ରାଜ୍ୟର ସମସ୍ତ ଶାସନ ପ୍ରକ୍ରିୟା, ରାଜସ୍ୱ ଆଦାୟ ଓ ଖର୍ଚ୍ଚ ରାଜକେନ୍ଦ୍ରିକ ଥିଲା। ରାଜକର୍ମଚାରୀମାନେ ସମସ୍ତେ ରାଜାଙ୍କର କର୍ମଚାରୀରୂପେ ରହିଥିଲେ ଏବଂ ରାଜା ଯେକୌଣସି ଆକାରେ ଯେକୌଣସି ସମୟରେ ସେମାନଙ୍କୁ ବାହାର କରି ଦେଇ ପାରୁଥିଲେ। ଏହା ଫଳରେ ପ୍ରଜାମାନେ ଦରିଦ୍ର ଓ ଭୀତତ୍ରସ୍ତ ହୋଇ ଅନ୍ଧକାରାଚ୍ଛନ୍ନ ସମାଜରେ ବାସକରୁଥିଲେ। ସଂପୂର୍ଣ୍ଣ ଊନବିଂଶ ଶତାବ୍ଦୀରେ ଏବଂ ବିଂଶ ଶତାବ୍ଦୀର ମଧ୍ୟଭାଗରେ, ଗଡ଼ଜାତ ରାଜାମାନଙ୍କର ରାଜତ୍ୱ ଲୋପ ହେବା ପର୍ଯ୍ୟନ୍ତ, ଗଡ଼ଜାତ ରାଜ୍ୟମାନଙ୍କରେ ଉଣା-ଅଧିକେ ସାଧାରଣ ଲୋକମାନଙ୍କ ଅବସ୍ଥା ଏହିପରି ଥିଲା। ମୋଗଲବନ୍ଦି ଅଞ୍ଚଳର ଲୋକମାନେ ଗଡ଼ଜାତ ଅଞ୍ଚଳକୁ ଅନ୍ଧାରୀମୂଲକ ବୋଲି କହୁଥିଲେ। କାରଣ ସେ ଅଞ୍ଚଳମାନଙ୍କରେ ଯିବା-ଆସିବା କରିବାକୁ ରାସ୍ତାଘାଟ ନଥିଲା, ଦ୍ୱିତୀୟରେ ଅଧିକାଂଶ ରାଜ୍ୟ ଜଙ୍ଗଲ ଏବଂ ହିଂସ୍ରଜନ୍ତୁପୂର୍ଣ୍ଣ ଥିଲା ଏବଂ ତୃତୀୟରେ ରାଜାମାନଙ୍କର ମନୋମୁଖୀ ଶାସନ ଅଧୀନରେ ପ୍ରଜାମାନଙ୍କର ବ୍ୟକ୍ତିଗତ ସ୍ୱାଧୀନତା ଓ ଧନ-ଜୀବନ ନିରାପଦ ନଥିଲା।

ସ୍ଥୂଳତଃ ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ଓଡ଼ିଆମାନେ ବଙ୍ଗ ଓ ମାନ୍ଦ୍ରାଜ ପ୍ରେସିଡେନ୍‌ସି, ମଧ୍ୟପ୍ରଦେଶ ଓ ୨୬ ଗଡ଼ଜାତ ରାଜ୍ୟରେ ଉପରୋକ୍ତ ଭାବରେ ବାସକରୁଥିଲେ। ସେମାନଙ୍କର ଭାଷା ଓଡ଼ିଆ ଏବଂ ସଂସ୍କୃତି ଓଡ଼ିଆ ଥିଲା; କିନ୍ତୁ ସେମାନେ ଗୋଟିଏ ପ୍ରକାର ଶାସନାଧୀନରେ ନଥିଲେ କିମ୍ବା ଓଡ଼ିଶା ବୋଲି ଗୋଟିଏ ପ୍ରଦେଶ ବା ରାଜ୍ୟ ନଥିଲା। ରାଜ୍ୟ ନଥିବାରୁ ରାଜଧାନୀ, ହାଇକୋର୍ଟ, ବିଶ୍ୱବିଦ୍ୟାଳୟ ପ୍ରଭୃତିର ପ୍ରଶ୍ନ ଉଠୁନଥିଲା। ସମସ୍ତ ଅଞ୍ଚଳରେ ଭାଷା, ସଂସ୍କୃତି ଓ ଆର୍ଥିକ ଅବସ୍ଥାର ଉନ୍ନତି କରିବା ଉପାୟ ନଥିଲା। ଓଡ଼ିଆମାନେ ନିଜ ଘରେ ବାହାରଲୋକ ପରି ଚଳୁଥିଲେ। ନିଜର ଅବସ୍ଥାର ଉନ୍ନତି କରିବା ଏବଂ ଅଧିକାର ସାବ୍ୟସ୍ତ କରିବାପାଇଁ ସେମାନଙ୍କର ସୁଯୋଗ ନଥିଲା।

ସମସ୍ତ ଓଡ଼ିଆ-ଭାଷୀ ଅଞ୍ଚଳର ଲୋକମାନଙ୍କୁ ଏକତ୍ର କରି ଗୋଟିଏ ପୂର୍ଣ୍ଣାଙ୍ଗ ପ୍ରଦେଶ ଗଠନ କରିବା ଚେତନା ଓଡ଼ିଆମାନଙ୍କ ମଧ୍ୟରେ ଜାଗ୍ରତ କରିବାକୁ ପ୍ରାୟ ଶହେ ବର୍ଷ ଲାଗିଯାଇଥିଲା। ଇଂରେଜମାନେ ୧୮୦୩ ମସିହାରେ

ଓଡ଼ିଶା ଡିଭିଜନ୍ ଅଧିକାର କରିଥିଲେ; ଦେଶମିଶ୍ରଣ ଉଦ୍ଦେଶ୍ୟରେ ୧୯୦୩ ମସିହା ଶେଷରେ କଟକରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ଅନୁଷ୍ଠିତ ହୋଇଥିଲା— ତାହା ପୂର୍ବରୁ ଦେଶମିଶ୍ରଣ ନିମିତ୍ତ ଆନ୍ଦୋଳନ ସଂଗଠିତ ଓ ଧାରାବାହିକରୂପେ ହୋଇପାରିନଥିଲା । ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଏବଂ ଶେଷଭାଗରେ ସେହି ଅନ୍ଧକାର ଯୁଗରେ ଉତ୍କଳର ବିଭିନ୍ନ ଅଞ୍ଚଳର ପୁରପଲ୍ଲୀରେ କେତେକ ମନୀଷୀ ଜନ୍ମଗ୍ରହଣ କଲେ । ସେମାନେ ବିଭିନ୍ନ ଅଞ୍ଚଳରେ ଲୋକମାନଙ୍କ ମନରେ ଓଡ଼ିଆ ଜାତୀୟତାଭାବ ଏବଂ ଜାତୀୟ ସ୍ୱାଭିମାନ ଜାଗ୍ରତ କରାଇଲେ । ଏହି ଜାତୀୟ ଜାଗରଣ ଆନ୍ଦୋଳନରେ ବିଭିନ୍ନ ଅଞ୍ଚଳର ରାଜା, ମହାରାଜା, ଜମିଦାର, ଓକିଲ, କବି, ଲେଖକ, କୃଷକ, ବୁଦ୍ଧିଜୀବୀ ପ୍ରଭୃତି ସବୁ ଶ୍ରେଣୀର ଜନନାୟକ ଯୋଗଦେଲେ ।

ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନରେ ମୟୂରଭଞ୍ଜ ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ ଦେବ ସଭାପତି ହୋଇଥିଲେ ଏବଂ ମଞ୍ଚ ଉପରେ ସମ୍ବଲପୁରର ରାମନାରାୟଣ ମିଶ୍ର, ସିଂହଭୂମିର ଯୁଗଳକିଶୋର ତ୍ରିପାଠୀ, ବାଲେଶ୍ୱରର ଫକୀରମୋହନ ସେନାପତି, କଟକର ଗୌରୀଶଙ୍କର ରାୟ, କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜ ଦେବ, ଗଞ୍ଜାମର ହରିହର ପଣ୍ଡା ଏବଂ ଅନ୍ୟ କେତେକ ଜମିଦାର ଓ ନେତୃସ୍ଥାନୀୟ ବ୍ୟକ୍ତି ବସିଥିଲେ । ସଭାରେ ଅନ୍ୟମାନଙ୍କ ମଧ୍ୟରେ ଥିଲେ ରାଧାନାଥ ରାୟ, ମଧୁସୂଦନ ରାଓ, ଗଙ୍ଗାଧର ମେହେର, ନନ୍ଦକିଶୋର ବଳ, ଗୋପାଳଚନ୍ଦ୍ର ପ୍ରହରାଜ, ବିଶ୍ୱନାଥ କର, ତାଳଚେର, କେନ୍ଦୁଝର ପ୍ରଭୃତି ରାଜ୍ୟମାନଙ୍କର ରାଜା, ଖଲ୍ଲିକୋଟ, କନିକା ପ୍ରଭୃତି ଜମିଦାରିର ଜମିଦାର, ରାଜା ବୈକୁଣ୍ଠନାଥ ଦେ, ରାମନାରାୟଣ ମିଶ୍ର ଓ ବ୍ରଜମୋହନ ପଟ୍ଟନାୟକ ପ୍ରଭୃତି ଓକିଲ ଏବଂ ଗୌନ୍ତିଆ । ସଭାରେ ଗଡ଼ଜାତ ରାଜ୍ୟ, କଟକ, ପୁରୀ, ବାଲେଶ୍ୱର, ଗଞ୍ଜାମ, ସମ୍ବଲପୁର ପ୍ରଭୃତି ସବୁ ଅଞ୍ଚଳର ପ୍ରତିନିଧି ଯୋଗଦେଇଥିଲେ । ଉତ୍କଳ-ଗୌରବ ମଧୁସୂଦନ ଦାସ ସମ୍ମିଳନୀର ସମସ୍ତ ଆୟୋଜନ କରାଇଥିଲେ ଏବଂ ୨୬ ବର୍ଷ ବୟସ୍କ ଯୁବକ କଲେଜଛାତ୍ର ଗୋପବନ୍ଧୁ ଦାସ ମଧୁବାବୁଙ୍କୁ ସମ୍ମିଳନୀର ସମସ୍ତ କାର୍ଯ୍ୟରେ ସାହାଯ୍ୟ କରିଥିଲେ ।

୧୯୦୩ ମସିହାରୁ ଉତ୍କଳ ସମ୍ମିଳନୀ ମାଧ୍ୟମରେ ଓଡ଼ିଆମାନଙ୍କର ଦେଶମିଶ୍ରଣ ଉଦ୍ୟମ ଧାରାବାହିକରୂପେ ଚାଲିଲା । ସମ୍ମିଳନୀର ବାର୍ଷିକ ଅଧିବେଶନମାନ ଓଡ଼ିଶା ଡିଭିଜନ୍ ଏବଂ ବିଚ୍ଛିନ୍ନ ଅଞ୍ଚଳର ବିଭିନ୍ନ ସ୍ଥାନରେ ବିଭିନ୍ନ ଜନନାୟକମାନଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହେଉଥିଲା । ସେ ଆନ୍ଦୋଳନରେ ଓଡ଼ିଶାର ପ୍ରଥମ ପିଢ଼ିର ଜନନାୟକମାନଙ୍କ ସହିତ ଦ୍ୱିତୀୟ ଓ ତୃତୀୟ ପିଢ଼ିର ନେତାମାନେ ଯୋଗଦେଲେ । ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ପାରଳା

ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ଜୟପୁର ମହାରାଜା ବିକ୍ରମ ଦେବ, ଭୁବନାନନ୍ଦ ଦାସ, ଜଗବନ୍ଧୁ ସିଂହ ପ୍ରଭୃତି ଦ୍ୱିତୀୟ ପିଢ଼ିର ଜନନାୟକ ଏବଂ ତାଙ୍କ ସହିତ ବହୁ ତୃତୀୟ ପିଢ଼ିର ଜନନାୟକ ସେ ଆନ୍ଦୋଳନରେ ମନପ୍ରାଣ ଢାଳିଦେଲେ। ୧୯୨୦-୨୧ ମସିହା ପର୍ଯ୍ୟନ୍ତ ଦେଶମିଶ୍ରଣ ସମସ୍ତ ଓଡ଼ିଆମାନଙ୍କ ପାଇଁ ସର୍ବପ୍ରଧାନ ସମସ୍ୟା ଥିଲା ଏବଂ ଓଡ଼ିଶାର ସବୁଶ୍ରେଣୀର ବୁଦ୍ଧିଜୀବୀ ଲୋକ ସେ ଆନ୍ଦୋଳନରେ ସହଯୋଗ କରୁଥିଲେ। ୧୯୨୧ ମସିହାଠାରୁ ୧୯୩୬ ମସିହା ପର୍ଯ୍ୟନ୍ତ ଭାରତବର୍ଷର ସ୍ୱାଧୀନତା ଆନ୍ଦୋଳନ ଏବଂ ଓଡ଼ିଶାର ଦେଶମିଶ୍ରଣ ଆନ୍ଦୋଳନ ଏକତ୍ର ଓଡ଼ିଶାବାସୀଙ୍କ ପାଇଁ ଦୁଇଗୋଟି ପ୍ରଧାନ ସମସ୍ୟା ହେଲା। ସ୍ୱାଧୀନତା ଆନ୍ଦୋଳନରେ ରାଜା, ଜମିଦାର ପ୍ରଭୃତି ବହୁନେତା ଯୋଗଦେଇନଥିଲେ; ମାତ୍ର ଦେଶମିଶ୍ରଣ ଆନ୍ଦୋଳନରେ ଉଭୟ ସ୍ୱାଧୀନତା-ସଂଗ୍ରାମୀ ଓ ସେ ସଂଗ୍ରାମରେ ଯୋଗଦେଇ ନଥିବା ସମସ୍ତ ନେତୃସ୍ଥାନୀୟ ବ୍ୟକ୍ତି ସହଯୋଗ କରୁଥିଲେ। ସମଗ୍ର ଓଡ଼ିଆଜାତିର ପ୍ରାୟ ପଞ୍ଚତ୍ରିଂଶ ବର୍ଷ ସଂଗ୍ରାମ ପରେ ୧୯୩୬ ମସିହା ଅପ୍ରେଲ ପହିଲା ଦିନଠାରୁ କଟକ, ପୁରୀ, ବାଲେଶ୍ୱର, ଗଞ୍ଜାମ, କୋରାପୁଟ ଓ ସମ୍ବଲପୁର ସମେତ କେବଳ ଛଅଗୋଟି ଜିଲ୍ଲାକୁ ନେଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା ଏବଂ ପରେ ଅନୁଗୁଳ ଜିଲ୍ଲା ନବଗଠିତ ପ୍ରଦେଶର ଅନ୍ତର୍ଭୁକ୍ତ ହେଲା। ମାତ୍ର ଓଡ଼ିଶାର ପଡ଼ୋଶୀ ମାନ୍ଦ୍ରାଜ, ମଧ୍ୟପ୍ରଦେଶ, ବଙ୍ଗଳା ଓ ବିହାର ପ୍ରଦେଶରେ ବହୁ ଓଡ଼ିଆ-ଭାଷାଭାଷୀ ଅଞ୍ଚଳ ରହିଗଲା। ବିଶେଷତଃ ମାନ୍ଦ୍ରାଜ ପ୍ରେସିଡେନ୍‌ସିରେ ଇଚ୍ଛାପୁର, ମଧ୍ୟପ୍ରଦେଶରେ ଫୁଲଝର, ବଙ୍ଗଳାରେ ମେଦିନୀପୁର, ବିହାରରେ ସିଂହଭୂମି ପ୍ରଭୃତି ବିସ୍ତୀର୍ଣ୍ଣ ଓଡ଼ିଆ ଅଞ୍ଚଳ ଓଡ଼ିଶା ବାହାରେ ରହିଗଲା। ସେ ସବୁ ଅଞ୍ଚଳପାଇଁ ଓଡ଼ିଆମାନେ ଆଜିଯାଏ ସୁଦ୍ଧା ସ୍ୱର ଉତ୍ତୋଳନ କରୁଛନ୍ତି।

ସ୍ୱତନ୍ତ୍ର ପ୍ରଦେଶ ଗଠନର ୧୨-୧୩ ବର୍ଷ ପରେ, ଭାରତର ସ୍ୱାଧୀନତା ଲାଭ ପରେ, ୧୯୪୮-୪୯ ମସିହାରେ ୨୬ଟିଯାକ ଗଡ଼ଜାତ ରାଜ୍ୟ ଓଡ଼ିଶା ପ୍ରଦେଶ ସହିତ ମିଶିଗଲା ଏବଂ ବର୍ତ୍ତମାନର ପୂର୍ଣ୍ଣାଙ୍ଗ ଓଡ଼ିଶା ରାଜ୍ୟ ଗଠିତ ହେଲା। ମାତ୍ର ଗଡ଼ଜାତ ରାଜ୍ୟମାନଙ୍କର ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣ ପ୍ରକ୍ରିୟାରେ ଦୁଇଗୋଟି ଓଡ଼ିଆ ରାଜ୍ୟ ଷଢ଼େଇକଳା ଓ ଖରସୁଆଁ ବିହାର ରାଜ୍ୟରେ ରହିଗଲା। ଅନ୍ୟାୟ ଭାବରେ ଉପରୋକ୍ତ ଓଡ଼ିଆ ଅଞ୍ଚଳମାନ ଅନ୍ୟ ପଡ଼ୋଶୀ ପ୍ରଦେଶରେ ରହିଯିବା ହେତୁ, ସେସବୁ ଅଞ୍ଚଳମାନଙ୍କୁ ଓଡ଼ିଶାରେ ମିଶାଇବା ପାଇଁ ଓଡ଼ିଶାବାସୀ ଆଜିଯାଏ ସୁଦ୍ଧା ଆନ୍ଦୋଳନ କରିଆସୁଛନ୍ତି; ମାତ୍ର ସେ ଆନ୍ଦୋଳନ ପ୍ରଭାବଶାଳୀ କିମ୍ୱା ଫଳପ୍ରଦ ହୋଇନାହିଁ।

୧୯୪୮-୪୯ ମସିହାରେ ପୂର୍ଣ୍ଣାଙ୍ଗ ଓଡ଼ିଶା ରାଜ୍ୟ ଗଠନ ପରେ ଭାରତୀୟ ରାଷ୍ଟ୍ରସଂଘରେ ଓଡ଼ିଶାର ସ୍ଥିତି ଦୃଢ଼ହେଲା । ଓଡ଼ିଶା ରାଜ୍ୟର ନିଜର ରାଜଧାନୀ, ହାଇକୋର୍ଟ ଏବଂ ବିଶ୍ୱବିଦ୍ୟାଳୟମାନ ପ୍ରତିଷ୍ଠିତ ହେଲା । ପୁରୀ, କୋଣାର୍କ ଭୁବନେଶ୍ୱର ମନ୍ଦିର ସମେତ ଓଡ଼ିଶାର ଅଗଣିତ ପୁରାତନ କୀର୍ତ୍ତିର ସଂରକ୍ଷଣ ସହିତ ରାଜ୍ୟର ସ୍ୱାଭିମାନ ରକ୍ଷା କରିବା ଏବଂ ରାଜ୍ୟର ପ୍ରଚୁର ପ୍ରାକୃତିକ ସମ୍ପଦର ସଦ୍‌ବ୍ୟବହାର କରି ରାଜ୍ୟକୁ ଅଧିକରୁ ଅଧିକ ସମୃଦ୍ଧିଶାଳୀ କରିବା ଦାୟିତ୍ୱ ଉତ୍ତରପୁରୁଷମାନଙ୍କ ଉପରେ ନ୍ୟସ୍ତ ରହିଛି । ତଥାପି ରାଜ୍ୟର ଉନବିଂଶ ଶତାବ୍ଦୀର ଦୁର୍ଦ୍ଦଶା ବର୍ତ୍ତମାନର ପ୍ରତିଯୋଗିତାରେ ଓଡ଼ିଆଜାତିକୁ ସର୍ବଦା ପଛରେ ପକାଉଛି ।

□ □ □

# ଦ୍ୱିତୀୟ ପରିଚ୍ଛେଦ

## କର୍ମବୀର ଗୌରୀଶଙ୍କର ରାୟ

### ବାଲ୍ୟଜୀବନ ଓ ଶିକ୍ଷା –

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଉତ୍କଳର ଭାଷା ଓ ସାହିତ୍ୟକୁ ରକ୍ଷାକରି ଏବଂ ଓଡ଼ିଆମାନଙ୍କର ସ୍ୱାଭିମାନ ଓ ଜାତୀୟତାବୋଧ ଜାଗ୍ରତକରି ଓଡ଼ିଶାରେ ଏକ ନବଯୁଗ ପ୍ରବର୍ତ୍ତନ କରିଥିବା ଜନନାୟକମାନଙ୍କ ମଧ୍ୟରେ କର୍ମଯୋଗୀ ଗୌରୀଶଙ୍କର ରାୟ ଅଗ୍ରଗଣ୍ୟ ଥିଲେ। ସେ ପ୍ରଥମେ ଆଧୁନିକ ଶିକ୍ଷାଲାଭ କରି ଓଡ଼ିଶାରେ ଆଧୁନିକ ଶିକ୍ଷାର ପ୍ରସାର, ପୁରାତନ ସାହିତ୍ୟ ଓ ସଂସ୍କୃତିର ପୁନରୁଦ୍ଧାର ଏବଂ ଓଡ଼ିଆ ଜାତିର ସର୍ବାଙ୍ଗୀନ ଉନ୍ନତି ପାଇଁ ଜୀବନସାରା ସଂଗ୍ରାମ ଚଳାଇଥିଲେ। ସେ ୧୮୩୮ ମସିହା ଜୁଲାଇ ମାସରେ କଟକ ଜିଲ୍ଲାର ଅସୁରେଶ୍ୱର ପ୍ରଗଣା ଅନ୍ତର୍ଭୁକ୍ତ ଦୀକ୍ଷିତପଡ଼ା ଗ୍ରାମରେ ଗୋଟିଏ ବଙ୍ଗୀୟ କାୟସ୍ଥ ପରିବାରରେ ଜନ୍ମହୋଇଥିଲେ। ତାଙ୍କ ବଂଶର ମୌଳିକ ସଂଜ୍ଞା 'ବସୁ' ଥିଲା; ମାତ୍ର ମୋଗଲ ବାଦଶାହଙ୍କ ଅମଳରେ ରାଜକାର୍ଯ୍ୟ କରିଥିବାରୁ ସେମାନେ 'ରାୟ' ଉପାଧି ପାଇଥିଲେ। ତାଙ୍କ ପରିବାର ମୋଗଲ ବାଦଶାହ ଆକବରଙ୍କ ସମୟରେ ବଙ୍ଗଳାର ପ୍ରଶାସକ ତୋଡ଼ରମଲ୍ଲଙ୍କ କର୍ତ୍ତୃକ ରାଜସ୍ୱ ବନ୍ଦୋବସ୍ତ କାର୍ଯ୍ୟରେ ଓଡ଼ିଶା ଆସି ଅସୁରେଶ୍ୱର ପ୍ରଗଣାର ଲୁଣୀ ନଦୀକୂଳରେ ଥିବା ଦୀକ୍ଷିତପଡ଼ା ଗ୍ରାମରେ ବସତି ସ୍ଥାପନ କରିଥିଲେ। ଐତିହାସିକମାନେ କହନ୍ତି ଯେ, ଷୋଡ଼ଶ ଶତାବ୍ଦୀରେ ଅନେକ ବଙ୍ଗୀୟ ପରିବାର ଓଡ଼ିଶାରେ ବସତି ସ୍ଥାପନ କରିବାକୁ ଆରମ୍ଭ କରିଥିଲେ। ସେଥିମଧ୍ୟରୁ ଅନେକ ବୈଷ୍ଣବ ଧର୍ମୀ; ଶ୍ରୀଚୈତନ୍ୟଙ୍କ ସହିତ ଓଡ଼ିଶା ଆସି ଏଠାରେ ବହୁବର୍ଷ ରହି କ୍ରମେ କ୍ରମେ ସ୍ଥାୟୀ ଅଧିବାସୀ ହୋଇ ରହିଗଲେ। ଆଉ ଅନ୍ୟ କେତେକ ପରିବାର ଜଗନ୍ନାଥ ଦର୍ଶନକୁ ଆସି ଏଠିକାର ସ୍ଥାୟୀ ବାସିନ୍ଦା ହୋଇ ରହିଥିଲେ। ତୃତୀୟରେ ତୋଡ଼ରମଲ୍ଲଙ୍କ ସମୟରେ ଅନେକ ବଙ୍ଗାଳୀ ପରିବାର ରାଜସ୍ୱ ବନ୍ଦୋବସ୍ତ କାର୍ଯ୍ୟରେ ଓଡ଼ିଶା ଆସି ଏଠାରେ ସ୍ଥାୟୀଭାବରେ ବସତି ସ୍ଥାପନ କରିଥିଲେ।

ଏହି ଶେଷୋକ୍ତ ପ୍ରକାର କାର୍ଯ୍ୟରେ ରାୟବଂଶ ଓଡ଼ିଶା ଆସି ଦୀକ୍ଷିତପଡ଼ାରେ ସ୍ଥାୟୀ ବାସିନ୍ଦା ଭାବରେ ରହିଥିଲେ।

ବ୍ରିଟିଶ୍ ଶାସନ ସମୟରେ ଗୌରୀଶଙ୍କରଙ୍କ ପିତାମହ ମାଧବ ପ୍ରସାଦ ରାୟ କଟକ କଚେରିରେ ଜଣେ ମୋକ୍ତାର ରୂପେ କାର୍ଯ୍ୟ କରୁଥିଲେ। ସେ ପୁରୀ ଏମାରମଠ ମହନ୍ତଙ୍କଠାରୁ ବେତନ ପାଇ ମଠର ସବୁ ଅଦାଲତ କାର୍ଯ୍ୟ ମଧ କରୁଥିଲେ। ଏମାରମଠ ଅଧୀନରେ କଟକ ଚୌଧୁରୀ ବଜାରରେ ସଖୀମଠ ବୋଲି ଗୋଟିଏ ମଠ ଥିଲା। ପରେ ସଖୀମଠ ଉଠିଯିବାରୁ ମାଧବ ପ୍ରସାଦ ରାୟ ଅଳ୍ପ ରାଜସ୍ୱରେ ସେ ସ୍ଥାନ ନିଜ ବାସସ୍ଥାନ ନିମିତ୍ତ ପାଇଥିଲେ। ମାଧବବାବୁଙ୍କର ଚାରିପୁଅଙ୍କ ମଧ୍ୟରୁ ଜ୍ୟେଷ୍ଠପୁତ୍ର ସଦାଶିବ ପ୍ରସାଦ ରାୟ ପାରସୀ ଭାଷାରେ ଦକ୍ଷତା ଲାଭକରି କଟକ ଅଦାଲତରେ ଡିକ୍ରି ନବିସ୍ ବା ବିଚାର-ନିଷ୍ପତ୍ତି ଲେଖକ କାମରେ ନିଯୁକ୍ତ ହୋଇଥିଲେ। ସେ ଜଣେ ଦକ୍ଷ ଓ ସାଧୁ ଲୋକ ଥିଲେ। ତାଙ୍କର ଚାରିପୁତ୍ରଙ୍କ ମଧ୍ୟରେ ଗୌରୀଶଙ୍କର ଜ୍ୟେଷ୍ଠପୁତ୍ର। ଅନ୍ୟ ତିନିଜଣ ପୁତ୍ରଙ୍କ ନାମ ଗଙ୍ଗାଶଙ୍କର, ହରିଶଙ୍କର ଓ ରାମଶଙ୍କର। ସଦାଶିବବାବୁଙ୍କର ଜଣେ ସାନଭାଇ ଭବାନୀ ପ୍ରସାଦ ରାୟ ବାଲେଶ୍ୱର କଚେରିରେ ନାଜର କାର୍ଯ୍ୟ କରୁଥିଲେ।

ଗୌରୀଶଙ୍କରଙ୍କ ଜନ୍ମ ସମୟରେ ଓଡ଼ିଶାରେ ଆଧୁନିକ ଧରଣର କୌଣସି ପ୍ରାଥମିକ ବିଦ୍ୟାଳୟ ନଥିଲା। ଓଡ଼ିଆ ତାଳପତ୍ର ପୋଥି ଏବଂ ପାରସୀ ଭାଷାରେ ହାତଲେଖା ହଜଦିଆ ବାଲିକାଗଜ କିତାବ ବ୍ୟତୀତ ଦେଶୀୟ ଭାଷାରେ କୌଣସି ଛପାପୁସ୍ତକ ନଥିଲା। ସେହି ସମୟରେ ଖ୍ରୀଷ୍ଟିଆନ୍ ପାଦ୍ରିମାନଙ୍କ ଉଦ୍ୟମରେ ଛାପାଖାନା ପ୍ରଥମେ ଓଡ଼ିଶାକୁ ଆସିଲା। ସେ ସମୟରେ ଗ୍ରାମେ ଗ୍ରାମେ ପୂର୍ବରୀତିରେ ଚାଟଶାଳୀ ଏବଂ ସ୍ଥାନେ ସ୍ଥାନେ ମକ୍ତବ୍‌ମାନ ଥିଲା। ଚାଟଶାଳୀମାନଙ୍କରେ ଅବଧାନ ଏବଂ ମକ୍ତବ୍‌ମାନଙ୍କରେ ଆଖୁଞ୍ଜି ପାଠ ପଢ଼ାଉଥିଲେ। ଗୌରୀଶଙ୍କର ଗାଁ ଚାଟଶାଳୀରେ ଓଡ଼ିଆ ଶିକ୍ଷାକରି ନିକଟବର୍ତ୍ତୀ ଗୋଟିଏ ମକ୍ତବ୍‌ରେ ଏବଂ କଟକରେ ଉର୍ଦ୍ଦୁ ଓ ପାରସୀ ଭାଷା ଶିକ୍ଷା କରିଥିଲେ। ପ୍ରାୟ ପାଞ୍ଚ-ଛଅ ବର୍ଷରେ ଚାଟଶାଳୀ ପାଠ ଶେଷ କରି ସେ ଏଗାରବର୍ଷ ବୟସରେ ୧୮୪୯ ମସିହାରେ କଟକ ଆସି ସେଠାରେ ଥିବା ହାଇସ୍କୁଲରେ ନାମ ଲେଖାଇଥିଲେ। ସେ ସମୟରେ ସମଗ୍ର ଭାରତବର୍ଷରେ କୌଣସି ବିଶ୍ୱବିଦ୍ୟାଳୟ ନଥିଲା କିମ୍ବା ବିଶ୍ୱବିଦ୍ୟାଳୟ ଶିକ୍ଷା-ପଦ୍ଧତି ଆରମ୍ଭ ହୋଇନଥିଲା। ୧୮୫୮ ମସିହାରେ କଲିକତା, ବମ୍ବେ ଏବଂ ମାନ୍ଦ୍ରାଜ ସହରରେ ତିନିଗୋଟି ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇଥିଲା। ତାହା ପୂର୍ବରୁ ଶିକ୍ଷା ବିଭାଗ ଅଧୀନରେ ଜୁନିଅର୍ ସ୍କୁଲ୍‌ସିପ୍ ଓ ସିନିଅର୍ ସ୍କୁଲ୍‌ସିପ୍ ନାମରେ ଦୁଇଟି ଛାତ୍ରବୃତ୍ତି

ପରୀକ୍ଷା ହେଉଥିଲା। ସିନିଅର୍ ସ୍କଲ୍‌ସିପ୍ ସ୍କୁଲଶିକ୍ଷାର ଚରମ ସୀମା ଥିଲା। ଉକ୍ତ ପରୀକ୍ଷା ପାଇଁ ଅଧ୍ୟୟନର ବ୍ୟବସ୍ଥା କଟକ ବ୍ୟତୀତ ଓଡ଼ିଶାର ଅନ୍ୟ କୌଣସି ସହରରେ ନଥିଲା। ଗୌରୀଶଙ୍କର ଆଠବର୍ଷ କଟକ ଇଂରାଜୀ ସ୍କୁଲରେ ଅଧ୍ୟୟନ କରି ଜୁନିଅର୍ ସ୍କଲ୍‌ସିପ୍ ପରୀକ୍ଷାରେ ପାସ୍ କରି ମାସିକ ଆଠଟଙ୍କା ବୃତ୍ତି ପାଇଥିଲେ। ତାହାପରେ ସେ ବଙ୍ଗଳାରେ 'ହୁଗୁଳି କଲେଜ'ରେ ପଢ଼ିବାକୁ ହୁଗୁଳି ଯାଇଥିଲେ।

୧୮୫୬ ମସିହା ଜୁନ୍ ମାସରେ ସେ ହୁଗୁଳି ଯାତ୍ରା କରିଥିଲେ। କଟକରୁ ବଳଦଗାଡ଼ିରେ ଯାଇ ବାଲେଶ୍ୱରରେ ତାଙ୍କ କକା ଭବାନୀପ୍ରସାଦ ରାୟଙ୍କ ଘରେ ପହଞ୍ଚିବାକୁ ତାଙ୍କୁ ବାରଦିନ ଲାଗିଥିଲା। ତା'ପରେ ସେ ଆଉ ବଳଦଗାଡ଼ିରେ ନଯାଇ ପାଦରେ ଚାଲି ଆଉ ଦଶଦିନରେ ହୁଗୁଳିରେ ପହଞ୍ଚିଥିଲେ। ଏପରି ଯାତ୍ରା ବର୍ତ୍ତମାନ ଆମ୍ଭମାନଙ୍କୁ କୌତୂହଳପୂର୍ଣ୍ଣ ଲାଗୁଛି; କାରଣ ବର୍ତ୍ତମାନ କଟକରୁ କଲିକତାକୁ ରେଲଗାଡ଼ିରେ ଆଠଘଣ୍ଟା ଏବଂ ଭୁବନେଶ୍ୱରରୁ ଉଡ଼ାଜାହାଜରେ ଏକଘଣ୍ଟା କୋଡ଼ିଏ ମିନିଟ୍ ସମୟ ଲାଗୁଛି। ହୁଗୁଳି କଲେଜରେ ସିନିଅର୍ ସ୍କଲ୍‌ସିପ୍ ଶିକ୍ଷାରେ ଅଧ୍ୟାପକମାନେ ଇଂରାଜୀ ଶିକ୍ଷାପ୍ରତି ଅଧିକ ଧ୍ୟାନ ଦେଉଥିଲେ। ଗୌରୀଶଙ୍କର ସେଠାରେ ପ୍ରଥମବର୍ଷର ଶିକ୍ଷା ସମାପ୍ତ କରି ଦ୍ୱିତୀୟ ବର୍ଷ ଅଧ୍ୟୟନ କରିଥିଲେ। ମାତ୍ର ଦ୍ୱିତୀୟ ବର୍ଷ ଶିକ୍ଷା ସମାପ୍ତ ହେବାପୂର୍ବରୁ ସେଠାରେ ତାଙ୍କର ଗୋଟିଏ ବିବାହ ପ୍ରସ୍ତାବ ହେଉଥିବାର ଖବର ଶୁଣିପାରି ତାଙ୍କର ପିତା ତାଙ୍କୁ ହୁଗୁଳି ଛାଡ଼ି ଅତିଶୀଘ୍ର କଟକ ଫେରିଆସିବାକୁ ଆଦେଶ ଦେଲେ। ପିତାଙ୍କ ଆଦେଶରେ ୧୮୫୮ ମସିହା ନଭେମ୍ବର ମାସରେ ଗୌରୀଶଙ୍କର କଲିକତାବାଟେ କଟକ ଫେରିଲେ। ବାଟରେ ବାଲେଶ୍ୱରରେ ତାଙ୍କ କକାଘରେ ପହଞ୍ଚି, ବାଲେଶ୍ୱର ଜିଲ୍ଲାସ୍କୁଲରେ ସେତେବେଳେ ଜଣେ ଶିକ୍ଷକ ଛୁଟିରେ ଯାଇଥିବାରୁ ତାଙ୍କ ସ୍ଥାନରେ ମାସିକ ୨୦ ଟଙ୍କା ଦରମାରେ କେତେକ ମାସ ଚାକିରି କରିଥିଲେ। ତା'ପରେ ୧୮୫୯ ମସିହାରେ କଟକ ଫେରିଆସିଥିଲେ। ସୁତରାଂ ୧୮୫୮ ମସିହାରେ ତାଙ୍କର କଲେଜଶିକ୍ଷା ଶେଷହୋଇଥିଲା।

## କର୍ମ-ଜୀବନ –

ମାତ୍ର କୋଡ଼ିଏ ବର୍ଷ ବୟସରେ ଗୌରୀଶଙ୍କରଙ୍କର ବାଲ୍ୟଜୀବନ ଏବଂ ସ୍କୁଲ-କଲେଜ ଶିକ୍ଷା ଶେଷ ହୋଇଥିଲା। ତା'ପରେ ୧୮୫୯ ମସିହାଠାରୁ ଏକୋଇଶ ବର୍ଷ ବୟସରେ ସେ କର୍ମଜୀବନ ଆରମ୍ଭ କରିଥିଲେ ଏବଂ ତାହା ଦୀର୍ଘ ଛପନ ବର୍ଷ ୧୯୧୫ ମସିହା ପର୍ଯ୍ୟନ୍ତ ବ୍ୟାପିଥିଲା। କର୍ମଜୀବନ-ସ୍ରୋତରେ ସେ ପ୍ରଧାନତଃ ଦୁଇଗୋଟି ଧାରରେ କାର୍ଯ୍ୟ କରିଥିଲେ– ପ୍ରଥମଟି ହେଲା

ସରକାରୀ ଚାକିରି ଏବଂ ଦ୍ୱିତୀୟଟି ଦେଶ ଓ ସମାଜସେବା। ସରକାରୀ ଚାକିରି ତାଙ୍କ ଜୀବନରେ ଗୌଣ କାର୍ଯ୍ୟ ହୋଇଥିଲା ଏବଂ ଦେଶ ଓ ସମାଜସେବା ମୁଖ୍ୟ କର୍ମ ହୋଇଥିଲା। ଦେଶ ଓ ସମାଜସେବା ପାଇଁ ତାଙ୍କ ହାତରେ ଦୁଇଗୋଟି ପ୍ରଧାନ ଅସ୍ତ୍ର ଥିଲା। ପ୍ରଥମଟି ହେଲା 'ଉତ୍କଳ-ଦୀପିକା' ସାପ୍ତାହିକ ସମ୍ବାଦପତ୍ର ଓ 'ଉତ୍କଳ ପ୍ରିଣ୍ଟିଂ କମ୍ପାନୀ' ଛାପାଖାନା ଏବଂ ଦ୍ୱିତୀୟଟି ହେଲା 'ଉତ୍କଳସଭା' ସଂଗଠନ। ଉତ୍କଳ-ଦୀପିକାର ସେ ୧୮୬୫ ମସିହାରୁ ୧୯୧୫ ମସିହା ପର୍ଯ୍ୟନ୍ତ ପଚାଶ ବର୍ଷକାଳ ସମ୍ପାଦକ ଥିଲେ ଏବଂ ଉତ୍କଳସଭାର ୧୮୭୨ ମସିହାରୁ ୧୯୦୫ ମସିହା ପର୍ଯ୍ୟନ୍ତ ତେତ୍ରିଶବର୍ଷ ସମ୍ପାଦକରୂପେ। ଏହି ଦୁଇଟି ଅନୁଷ୍ଠାନର ସଂପାଦକ ଓ ପରିଚାଳକରୂପେ ସେ ସମୟରେ ଓଡ଼ିଶାର ସର୍ବସାଧାରଣ କ୍ଷେତ୍ରରେ ଗୌରୀଶଙ୍କର ବରିଷ୍ଠ ଓ ସର୍ବପ୍ରଧାନ ଜନନାୟକ ଥିଲେ ଏବଂ ଓଡ଼ିଶାର ସବୁପ୍ରକାର ସମସ୍ୟାର ସମାଧାନ ଦିଗରେ ମୁଖ୍ୟଭୂମିକା ଗ୍ରହଣ କରିଥିଲେ।

## ସରକାରୀ ଚାକିରି –

୧୮୫୯ ମସିହାରେ ସେ ବାଲେଶ୍ୱରରୁ ଫେରି କଟକ କମିଶନରଙ୍କ କଚେରିରେ ଛୁଟିରେ ଯାଇଥିବା ଜଣେ ଅମଲାଙ୍କ ସ୍ଥାନରେ କେତେ ମାସ କାର୍ଯ୍ୟ କରିଥିଲେ। ସେ କାର୍ଯ୍ୟ ଶେଷ ହେଲାବେଳକୁ ତାଙ୍କର କାର୍ଯ୍ୟଦକ୍ଷତା ହେତୁ କମିଶନର କକ୍‌ବର୍ଣ୍ଣ ସାହେବ ତାଙ୍କୁ କଟକ କଲେକ୍ଟରଙ୍କ ଅଫିସରେ ଖାଲିଥିବା ଜଣେ କିରାଣି କାର୍ଯ୍ୟରେ ସ୍ଥାୟୀଭାବରେ ନିଯୁକ୍ତ କରିଥିଲେ। ସେ ସମୟରେ ବିଭିନ୍ନ ସ୍ଥାନକୁ ମନିଅର୍ଡ଼ର ପଠାଇବା କାମ ପୋଷ୍ଟ ଅଫିସ୍‌ରେ ନ ହୋଇ କଲେକ୍ଟରଙ୍କ ଅଫିସ୍‌ର ଅବକାରୀ ବିଭାଗରେ ହେଉଥିଲା। ଗୌରୀଶଙ୍କର ସେହି ଅଫିସ୍‌ରେ ମନିଅର୍ଡ଼ର ଏଜେଣ୍ଟ ରୂପେ ନିଯୁକ୍ତ ହୋଇଥିଲେ। ଏହି କାର୍ଯ୍ୟରେ କର୍ତ୍ତବ୍ୟନିଷ୍ଠା ଏବଂ ନିୟମାନୁବର୍ତ୍ତିତା ଦ୍ୱାରା ସେ ସମସ୍ତଙ୍କୁ ସନ୍ତୁଷ୍ଟ କରିଥିଲେ। ନିଜ କର୍ତ୍ତବ୍ୟରେ ଦୃଢ଼ଥିବା ହେତୁ ସେ ଉପର ହାକିମମାନଙ୍କ ଆଦେଶରେ ସୁଦ୍ଧା ନିୟମ-ବହିର୍ଭୂତ କାର୍ଯ୍ୟ କରିବାକୁ ରାଜି ହେଉନଥିଲେ। ଥରେ ଆର୍ମଷ୍ଟ୍ରଙ୍ଗ ନାମରେ ଜଣେ ଜଏଣ୍ଟମାଜିଷ୍ଟ୍ରେଟ୍ ମନିଅର୍ଡ଼ର ନେବାର ସମୟ ଗଡ଼ିଯାଇଥିଲେ ସୁଦ୍ଧା ତାଙ୍କର ଗୋଟିଏ ମନିଅର୍ଡ଼ର ନେବାକୁ ଗୌରୀଶଙ୍କରଙ୍କୁ ଆଦେଶ ଦେଲେ। ଗୌରୀଶଙ୍କର ତାଙ୍କ ଆଦେଶ ଗ୍ରହଣ ନକରି ନିଜେ ଖାତାରେ ସାହେବ ଲେଖିଦିଅନ୍ତୁ ବୋଲି ସାହେବଙ୍କୁ କହିଲେ। ସାହେବ ନିଜର ମାନ ରଖି ଖାତାରେ ନିଜେ ଲେଖି ମନିଅର୍ଡ଼ର କରଦେଲେ। ଗୌରୀଶଙ୍କର ଏହି ନିୟମ-ବହିର୍ଭୂତ କାର୍ଯ୍ୟ ସରକାରଙ୍କ ଦୃଷ୍ଟିକୁ ଆଣିଥିଲେ। ଏହି କାର୍ଯ୍ୟରେ

ନିଯୁକ୍ତ ଥିବାବେଳେ ସେ ଉତ୍କଳ-ଦୀପିକାର ସଂପାଦକ ହୋଇଯାଇଥିଲେ। କଚେରିର ହାକିମମାନଙ୍କର କର୍ତ୍ତବ୍ୟରେ ଅବହେଳା ଏବଂ ସାଧାରଣ ଲୋକମାନଙ୍କର ସେଥିଯୋଗୁଁ ଅସୁବିଧା ବିଷୟ ବହୁବାର ଦୀପିକାରେ ସମାଲୋଚନା କରିଥିଲେ। ସେଥିରେ ଅନେକ ସାହେବ ରାଗି ତାଙ୍କଠାରୁ କଇଫତ ମାଗିଥିଲେ; ମାତ୍ର ଗୌରୀଶଙ୍କର ନିଜ କର୍ତ୍ତବ୍ୟରେ ଦୃଢ଼ ଥିବାରୁ ଏବଂ ସମାଲୋଚନାରେ ମିଥ୍ୟା କଥା ଲେଖିନଥିବାରୁ, ସାହେବମାନେ ତାଙ୍କର କିଛି କ୍ଷତି କରିପାରିନଥିଲେ; ବରଂ ସେମାନେ ନିଜ କର୍ତ୍ତବ୍ୟପାଳନରେ ସାବଧାନ ହୋଇଥିଲେ। କେତେକ ସାହେବ ମଧ୍ୟ ତାଙ୍କର ଶୌର୍ଯ୍ୟ ପାଇଁ ତାଙ୍କୁ ପ୍ରଶଂସା କରିଥିଲେ। ଗୌରୀଶଙ୍କର ଉପରୋକ୍ତ ମନିଅର୍ଡ଼ର ଏଜେଣ୍ଟ କାମରେ ବାରବର୍ଷ କାର୍ଯ୍ୟ କଲାପରେ କଟକ କଲେକ୍ଟର ମାକ୍‌ଫରସନ୍ ସାହେବ ଅସ୍ଥାୟୀ ଭାବରେ ଜଜ୍ ହୋଇଥିବା ସମୟରେ ତାଙ୍କୁ ମାସିକ ଏକଶହ ଟଙ୍କା ଦରମାରେ ଅଦାଲତର ଟ୍ରାନ୍‌ସଲେଟର୍ ପଦରେ ନିଯୁକ୍ତ କରିଥିଲେ। ୧୮୯୨ ମସିହାରେ ସରକାରୀ କାର୍ଯ୍ୟରୁ ଅବସର ନେବା ପର୍ଯ୍ୟନ୍ତ କୋଡ଼ିଏ ବର୍ଷ କାଳ ସେ ସେହି ପଦରେ କାମ କରିଥିଲେ। ସରକାରୀ ଚାକିରିରେ ଥାଇ ମଧ୍ୟ ପ୍ରାୟ ସତେଇଶ ବର୍ଷ ସେ 'ଦୀପିକା'ର ସମ୍ପାଦକ ଏବଂ ପ୍ରାୟ କୋଡ଼ିଏ ବର୍ଷ 'ଉତ୍କଳ-ସଭା'ର ସମ୍ପାଦକ ଥିଲେ। ସରକାରୀ କଚେରିରେ ଓ ଓଡ଼ିଶାର ଜନସାଧାରଣଙ୍କ ମଧ୍ୟରେ ତାଙ୍କର ସମ୍ମାନ ଓ ପ୍ରତିପତ୍ତି ବିଶେଷତଃ ଏହି ସାଧାରଣ ଅନୁଷ୍ଠାନମାନଙ୍କରେ କାର୍ଯ୍ୟହେତୁ ହୋଇଥିଲା। ବ୍ରିଟିଶ୍ ଅମଳରେ ସରକାରୀ ଚାକିରିର କଠୋର ଶୃଙ୍ଖଳା ମଧ୍ୟରେ ରହି ମଧ୍ୟ ସେ ନିର୍ଭୀକଭାବରେ ଉତ୍କଳଦୀପିକାରେ ଜନସାଧାରଣଙ୍କର ଅଭାବ ଅସୁବିଧା ଦେଖାଇ ଦେଉଥିଲେ ଏବଂ ସରକାରୀ କର୍ତ୍ତୃପକ୍ଷଙ୍କର ସମାଲୋଚନା କରୁଥିଲେ। ଏହି ଦୁଇ କାର୍ଯ୍ୟ ମଧ୍ୟରେ ଭାରସାମ୍ୟ ରକ୍ଷା କରିବା କଷ୍ଟକର କାର୍ଯ୍ୟ ଥିଲା। ଅନେକ ସମୟରେ ତାଙ୍କର ସମାଲୋଚନା ହେତୁ ସେ କର୍ତ୍ତୃପକ୍ଷଙ୍କର ବିଷଦୃଷ୍ଟିରେ ପଡ଼ିଥିଲେ। ମାତ୍ର ସବୁବେଳେ ସମାଲୋଚନା ନିରପେକ୍ଷ ଓ ସତ୍ୟନିଷ୍ଠ ଥିବାରୁ ସରକାର ତାଙ୍କର ବିଶେଷ କ୍ଷତି କରିପାରିନଥିଲେ। ସରକାରୀ ଚାକିରିରେ ଥିବାବେଳେ ସେ ଅନେକ ଲୋକଙ୍କୁ ସରକାରଙ୍କର ଅନ୍ୟାୟ ଆଦେଶ ବା କାର୍ଯ୍ୟ ବିରୁଦ୍ଧରେ ସାହାଯ୍ୟ କରିଥିଲେ।

**କଟକ ପ୍ରିଣ୍ଟିଂ କମ୍ପାନୀ –**

ଗୌରୀଶଙ୍କର ଶିଶୁଥିବା ବେଳେ, ଖ୍ରୀଷ୍ଟିଆନ୍ ପାଦ୍ରିମାନେ ପ୍ରଥମେ ମୁଦ୍ରାଯନ୍ତ୍ର ଓଡ଼ିଶାକୁ ଆଣିଥିଲେ। ତାହା 'ମିସନ୍ ପ୍ରେସ୍' ନାମରେ କଟକରେ କାମ କରୁଥିଲା। ମାତ୍ର ସେଥିରେ କେବଳ ଖ୍ରୀଷ୍ଟଧର୍ମ-ପୁସ୍ତକ ଏବଂ ପାଦ୍ରି ସାହେବଙ୍କ

ଲିଖିତ ଓଡ଼ିଆ ପାଠ୍ୟପୁସ୍ତକ ବ୍ୟତୀତ ଆଉ କିଛି ଛାପା ହେଉନଥିଲା। ହିନ୍ଦୁଧର୍ମ ସଂପୃକ୍ତ ଗ୍ରନ୍ଥ କିମ୍ବା ପ୍ରାଚୀନ ଓଡ଼ିଆ କାବ୍ୟ ଆଦି ସେଥିରେ ଛାପା ହେବାର ସମ୍ଭାବନା ନଥିଲା। ଗୌରୀଶଙ୍କର ବାଲ୍ୟକାଳରୁ ଓଡ଼ିଆ ପ୍ରାଚୀନ କାବ୍ୟ ଓ ସଂଗୀତମାନଙ୍କର ଆବୃତ୍ତି ଶୁଣି ଓଡ଼ିଆ ପ୍ରାଚୀନ ସାହିତ୍ୟ ଓ ସଂଗୀତ ପ୍ରତି ଆକୃଷ୍ଟ ହୋଇଥିଲେ। ତାଙ୍କର ଯୁବକ ସମୟରେ, ସେ ବନ୍ଧୁମାନଙ୍କ ସହିତ ଓଡ଼ିଆ ପ୍ରାଚୀନ ସାହିତ୍ୟ ଓ ସଂଗୀତ ବିଷୟରେ ଚର୍ଚ୍ଚା କରୁଥିଲେ। ମାତ୍ର ସେ ଓଡ଼ିଆ କାବ୍ୟମାନ କୌଣସି ଛାପା ବହିରେ ପ୍ରକାଶିତ ହୋଇ ନଥିଲା। ଗୌରୀଶଙ୍କରଙ୍କ ପରି ଅନ୍ୟ ସାହିତ୍ୟପ୍ରେମୀ ଶିକ୍ଷିତ ବ୍ୟକ୍ତିମାନେ ମଧ୍ୟ ଓଡ଼ିଆ ଛାପାବହିର ଅଭାବ ଏବଂ ସେଥିପାଇଁ ଗୋଟିଏ ମୁଦ୍ରାଯନ୍ତ୍ରର ଅଭାବ ତୀବ୍ରଭାବରେ ଅନୁଭବ କରୁଥିଲେ। ୧୮୬୫ ମସିହା ପାଖାପାଖି ସମୟରେ କଟକରେ ଗୋଟିଏ ପ୍ରିଣ୍ଟିଂ କମ୍ପାନୀ ଗଠନ କରି ଗୋଟିଏ ଛାପାଖାନା ଚଳାଇବାର ଉଦ୍ୟମ ହେଲା। ସେତେବେଳେ କଣ୍ଟାବଣିଆ ଗ୍ରାମର ବିଚିତ୍ରାନନ୍ଦ ଦାସ ନାମରେ ଜଣେ ଦେଶହିତୈଷୀ ଏବଂ ଉତ୍ସାହୀ ବ୍ୟକ୍ତି କମିସନର ସାହେବଙ୍କର ସିରସ୍ତାଦାର ଥିଲେ। ସେ ଓଡ଼ିଆମାନଙ୍କର ଉନ୍ନତି ନିମିତ୍ତ ଅନେକ ଲୋକହିତକର କାର୍ଯ୍ୟରେ ସର୍ବଦା ଅଗ୍ରଣୀ ହେଉଥିଲେ। ବିଚିତ୍ରାନନ୍ଦ ଦାସ କମିସନରଙ୍କ ଅଫିସ୍‌ରେ ତାଙ୍କର ପଦବୀ ହେତୁ ପ୍ରତିପତ୍ତିଶାଳୀ ଥିଲେ ଏବଂ ବହୁ ଲୋକହିତକର କାର୍ଯ୍ୟ କରିବା ପ୍ରବୃତ୍ତି ହେତୁ ଅତ୍ୟନ୍ତ ଜନପ୍ରିୟ ଥିଲେ। ଶ୍ରୀ ଜଗମୋହନ ରାୟ ଓ ଶ୍ରୀ ଗୌରୀଶଙ୍କର ରାୟ ପ୍ରଭୃତି ଉତ୍ସାହୀ ଯୁବକମାନଙ୍କ ସହାୟତାରେ କଟକରେ ଗୋଟିଏ ପ୍ରିଣ୍ଟିଂ କମ୍ପାନୀ ଗଠନ ଏବଂ ଗୋଟିଏ ଛାପାଖାନା ସ୍ଥାପନ କାର୍ଯ୍ୟରେ ସେ ଅତି ଆଗ୍ରହର ସହିତ ଅଗ୍ରସର ହେଲେ। ସେ ଗଡ଼ଜାତର ସମସ୍ତ ରାଜା ଓ ମହାରାଜା ଏବଂ ମୋଗଲବନ୍ଦି ଅଞ୍ଚଳର ଜମିଦାରମାନଙ୍କୁ ଏହି କାର୍ଯ୍ୟରେ ସାହାଯ୍ୟ କରିବାକୁ ପ୍ରବର୍ତ୍ତାଇଲେ। ସେ ସମୟର ଢେଙ୍କାନାଳର ରାଜା ଭଗୀରଥ ମହେନ୍ଦ୍ର ବାହାଦୁର ଏ କାର୍ଯ୍ୟରେ ବିଶେଷ ଉତ୍ସାହ ଦେଖାଇଲେ। ସେତେବେଳେ ରେଭେନ୍‌ସା ସାହେବ ଓଡ଼ିଶାର କମିସନର ହୋଇ ଆସିଲେ ଏବଂ ସେ ମଧ୍ୟ ଏ କାର୍ଯ୍ୟରେ ସାହାଯ୍ୟ କରିବାପାଇଁ ଉତ୍ସାହ ଦେଖାଇଲେ। କମିସନର ସାହେବଙ୍କ ଆନୁକୂଲ୍ୟରେ ଏବଂ ବିଚିତ୍ରାନନ୍ଦବାବୁଙ୍କ ଉଦ୍ୟମରେ ଢେଙ୍କାନାଳ, ତାଳଚେର, ବଡ଼ାମ୍ବା, ନୟାଗଡ଼, ଆଠଗଡ଼, ନରସିଂହପୁର ପ୍ରଭୃତି ରାଜ୍ୟମାନଙ୍କର ରାଜା ଏବଂ କେନ୍ଦ୍ରାପଡ଼ା, କୋଠଦେଶ, ଭିଙ୍ଗାରପୁର ପ୍ରଭୃତି ଜମିଦାରିର ଜମିଦାର ଏବଂ ଅନ୍ୟ ଅନେକ ଭଦ୍ରବ୍ୟକ୍ତି ଏହି କମ୍ପାନୀରେ ଅଂଶୀଦାର ହେଲେ। ତିନିଶହ ଅଂଶବିଶିଷ୍ଟ ସାତହଜାର ପାଞ୍ଚଶହ ଟଙ୍କା (ଏହା ସେ କାଳର ଟଙ୍କା) ମୂଳଧନରେ 'କଟକ ପ୍ରିଣ୍ଟିଂ କମ୍ପାନୀ' ଗଠିତ ହୋଇଥିଲା ଏବଂ କାର୍ଯ୍ୟ-ପରିଚାଳନା ନିମିତ୍ତ

ଗୌରୀଶଙ୍କରଙ୍କୁ ମୁଖ୍ୟ-ପରିଚାଳକ ଭାବେ ଦାୟିତ୍ୱ ଦିଆଯାଇଥିଲା । ସେତେବେଳେ ଛାପାଖାନାରେ କିପରି କାର୍ଯ୍ୟ ହୁଏ ସେ ବିଷୟରେ କାହାରି ଧାରଣା ନଥିଲା । ଗୌରୀଶଙ୍କର ମଧ୍ୟ ଛାପାଖାନାର କାର୍ଯ୍ୟ ବିଷୟରେ କୌଣସି ଶିକ୍ଷା ପାଇନଥିଲେ । ତଥାପି ସରକାରୀ ଚାକିରିରେ ରହି ବିନା ବେତନରେ ଅବସର ସମୟରେ ସେ ଛାପାଖାନାର ପରିଚାଳନା ସୁଚାରୁରୂପେ କରିଥିଲେ ।

୧୮୬୫ ମସିହା ଜୁଲାଇ ମାସ ପହିଲାରେ ଜଗମୋହନ ରାୟଙ୍କ ବୈଠକଖାନାରେ ଏହି କମ୍ପାନୀର କାର୍ଯ୍ୟ ଆରମ୍ଭ ହେଲା । ପ୍ରଥମେ ଗୋଟିଏ ସାମାନ୍ୟ ଲିଥୋଗ୍ରାଫ୍ ପ୍ରେସ୍ ଅଣାଇ ସେଥିରେ କାର୍ଯ୍ୟ ଆରମ୍ଭ ହେଲା । ପଥର ପଟାରେ ହାତରେ ଲେଖି ପ୍ରଥମେ ଛାପା ହେଉଥିଲା । ସେଥିପାଇଁ ଉତ୍ତମ ହସ୍ତାକ୍ଷର ଲେଖିପାରୁଥିବା ଭାଗୀରଥି ଷାଠିଯା ନାମରେ ଜଣେ ବ୍ୟକ୍ତି ଲିପିକାରରୂପେ ନିଯୁକ୍ତ ହୋଇଥିଲେ । ଭାଗୀରଥି ଷାଠିଯାଙ୍କ ହସ୍ତଲିଖିତ ଅନେକ ସଚିତ୍ର ପୁସ୍ତକ ଉକ୍ତ ଲିଥୋଗ୍ରାଫ୍ ପ୍ରେସ୍‌ରେ ମୁଦ୍ରିତ ହୋଇଥିଲା । ପାଞ୍ଚବର୍ଷ ପରେ, ୧୮୭୦ ମସିହାରେ, ଦରଘାବଜାରରେ କମ୍ପାନୀର କୋଠାଘର ତିଆରି ହେବା ପରେ, ସେଠାରେ ଛାପାକାର୍ଯ୍ୟ ପ୍ରଶସ୍ତ ଭାବରେ କରାହେଲା । ନୂତନ ମୁଦ୍ରାଯନ୍ତ୍ର ଆସିଲା ପରେ ମଧ୍ୟ ପଥର ଛାପା ଲିଥୋଗ୍ରାଫ୍ ସେ ପ୍ରେସ୍‌ରେ ଅନେକ ଦିନଯାଏ କାର୍ଯ୍ୟ କରୁଥିଲା ।

ଗୌରୀଶଙ୍କରଙ୍କ ଉଦ୍ୟମରେ ନାନାସ୍ଥାନରୁ ପ୍ରାଚୀନ ସାହିତ୍ୟ, ପୁରାଣ ଏବଂ ଧର୍ମଗ୍ରନ୍ଥ ପୋଥିମାନ ସଂଗୃହୀତ ହୋଇ, ପ୍ରେସ୍‌ରେ ମୁଦ୍ରିତ ହେବାକୁ ଲାଗିଲା । ସେଥିସହିତ ନୂତନଭାବରେ ରଚିତ ହୋଇଥିବା ପୁସ୍ତକମାନ ମଧ୍ୟ ମୁଦ୍ରିତ ହେଲା । ପ୍ରେସ୍‌ରେ ଉତ୍କଳ ପଞ୍ଜିକା ପ୍ରକାଶ କରିବା ଉଦ୍ୟମ ହେଲା । ପଣ୍ଡିତ ସର୍ବେଶ୍ୱର ପଟ୍ଟଯୋଷୀ, ଚନ୍ଦ୍ରଶେଖର ଆଚାର୍ଯ୍ୟ ଏବଂ ହରିହର ଖଡ଼ିରତ୍ନ ପ୍ରଭୃତି ତତ୍କାଳୀନ ଜ୍ୟୋତିଷୀ ପଣ୍ଡିତମାନେ ପଞ୍ଜିକା ସଂକଳନ କରୁଥିଲେ । ପ୍ରଥମେ ସେ ପାଞ୍ଜି ପଦ୍ୟ ଆକାରରେ ଏବଂ ପରେ ନୂତନ ରୀତିରେ ପ୍ରକାଶିତ ହୋଇଥିଲା । ତାହାପରେ ପଠାଣି ସାମନ୍ତଙ୍କ ଦୃକ୍‌ସିଦ୍ଧ ନୂତନ ପଞ୍ଜିକା ସେହି ପ୍ରେସ୍‌ରୁ ପ୍ରକାଶିତ ହୋଇଥିଲା । ବହିସଂଖ୍ୟା ବଢ଼ିବାରୁ ପ୍ରେସ୍‌କୁ ଲାଗି ଗୋଟିଏ ଗୃହରେ ଗୋଟିଏ ବହି ଦୋକାନ ଖୋଲିଲା । ଉଭୟ ପ୍ରେସ୍ ଓ ବହି-ଦୋକାନରୁ କମ୍ପାନୀ ପ୍ରଚୁର ଲାଭ କଲେ । ୧୮୯୨ ମସିହାରେ ସରକାରୀ ଚାକିରିରୁ ଅବସର ନେବାପରେ ଗୌରୀଶଙ୍କର କମ୍ପାନୀ କୋଠାକୁ ନିଜ ବାସଗୃହ ମନେକରି ସେଠାରେ ରହୁଥିଲେ । ୧୮୯୨ ମସିହାଠାରୁ ୧୯୧୫ ମସିହାରେ ସେ ପ୍ରେସ୍ ଛାଡ଼ିବା ସମୟ ମଧ୍ୟରେ ପ୍ରେସ୍ ଏବଂ ବହି-ଦୋକାନର ବିଶେଷ ଉନ୍ନତି ହୋଇଥିଲା । ଗୌରୀଶଙ୍କର ନିରବଚ୍ଛିନ୍ନ ଭାବରେ ଦୀର୍ଘ ପଚାଶବର୍ଷ କାଳ ଦକ୍ଷଭାବରେ ପ୍ରିଣ୍ଟିଂ କମ୍ପାନୀର କାର୍ଯ୍ୟ ପରିଚାଳନା

କରିଥିଲେ। ୧୯୧୫ ମସିହାରେ ସେ କାର୍ଯ୍ୟରୁ ଅବ୍ୟାହତି ନେବା ସମୟରେ ହିସାବରୁ ଜଣାଯାଇଥିଲା ଯେ ଅଂଶୀଦାରମାନଙ୍କୁ ୫୫ ହଜାର ଟଙ୍କା ଲାଭ ଦେଇ ସେ କମ୍ପାନୀର ୪୦ ହଜାର ଟଙ୍କାର ସମ୍ପତ୍ତି ରଖିଥିଲେ।

**ଉତ୍କଳ-ଦୀପିକା –**

ପ୍ରିଣ୍ଟିଂ କମ୍ପାନୀ ପ୍ରତିଷ୍ଠା କରିବା ସମୟରେ ସହଯୋଗୀମାନେ ଗୋଟିଏ ସଂବାଦପତ୍ରର ଅଭାବ ମଧ୍ୟ ଅନୁଭବ କରିଥିଲେ। ପ୍ରେସ୍‌ର ଉନ୍ନତି ଦେଖାଗଲେ ସରକାରଙ୍କ ନିକଟରେ ଲୋକମାନଙ୍କର ଦୁଃଖ ଗୁହାରି ଶୁଣାଇବା ନିମିତ୍ତ ଗୋଟିଏ ସାପ୍ତାହିକ ପତ୍ରିକା ବାହାର କରିବା ପାଇଁ ସେମାନଙ୍କର ଉଦ୍ଦେଶ୍ୟ ଥିଲା। ମାତ୍ର ହଠାତ୍ ନ'ଅଙ୍କ ଦୁର୍ଭିକ୍ଷ ପଡ଼ିବାରୁ ଏହି ପତ୍ରିକା ପ୍ରକାଶ କରିବା କାର୍ଯ୍ୟ ଜରୁରି ହୋଇ ପଡ଼ିଲା। ତେଣୁ ଛାପାଖାନା ପ୍ରତିଷ୍ଠା ହେବାର ପ୍ରାୟ ମାସକ ପରେ, ୧୮୬୫ ମସିହା ଅଗଷ୍ଟ ମାସରେ ଉତ୍କଳ-ଦୀପିକାର ପ୍ରଥମ ସଂଖ୍ୟା ପ୍ରକାଶିତ ହୋଇଥିଲା। ବର୍ଷ ଶେଷରେ ୧୮୬୬ ମସିହା ଜାନୁଆରୀ ମାସରୁ ତାହାର ଦ୍ୱିତୀୟ ବର୍ଷ ଗଣାହୋଇଥିଲା। ଗୌରୀଶଙ୍କର ଏହି ସାପ୍ତାହିକ ପତ୍ରିକାର ସଂପାଦକ ନିଯୁକ୍ତ ହୋଇଥିଲେ। ସରକାରୀ ଚାକିରିରେ ଥାଇ ମଧ୍ୟ ଏହି ଗୁରୁ ଦାୟିତ୍ୱ ବହନ କରିବାକୁ ସେ ରାଜି ହୋଇଥିଲେ ଏବଂ ନିରବଚ୍ଛିନ୍ନ ଭାବରେ ଦୀର୍ଘ ପଚାଶ ବର୍ଷକାଳ ସେ ଦାୟିତ୍ୱ ବହନ କରିଥିଲେ। ଦେଶର ବିଭିନ୍ନ ଅଞ୍ଚଳରୁ ସମ୍ବାଦ ସଂଗ୍ରହ କରି ଏହି ସମ୍ବାଦପତ୍ର ମାଧ୍ୟମରେ ସେ ସରକାର ଏବଂ ଦେଶବାସୀଙ୍କ ଗୋଚରକୁ ଆଣୁଥିଲେ। ଦେଶବାସୀଙ୍କ ଦୁଃଖ ଓ ଅସୁବିଧାମାନ ଜଣାଇବାକୁ ଯାଇ ସରକାରଙ୍କର ଦୋଷ ଉଦ୍‌ଘାଟନ କରିବାରେ ସେ କୌଣସି ତ୍ରୁଟି କରୁନଥିଲେ। ଅନେକ ସମୟରେ ତାଙ୍କର ମନ୍ତବ୍ୟ ଦେଖି କର୍ତ୍ତୃପକ୍ଷ ବିରକ୍ତ ହେଉଥିଲେ; ମାତ୍ର ସମ୍ବାଦ ସତ୍ୟ ଓ ନିରପେକ୍ଷ ହେଉଥିବାରୁ କର୍ତ୍ତୃପକ୍ଷ ତାଙ୍କ ଉପରେ କୌଣସି କାର୍ଯ୍ୟାନୁଷ୍ଠାନ କରିପାରୁନଥିଲେ।

ସବୁ ସମ୍ବାଦ ଗୌରୀଶଙ୍କର ନିଜେ ଯାଞ୍ଚ କରି ପତ୍ରିକାରେ ପ୍ରକାଶ କରାଉଥିଲେ। ତାଙ୍କର ସଂପାଦକୀୟ ମନ୍ତବ୍ୟ ସର୍ବଦା ସତ୍ୟ ଏବଂ ନିରପେକ୍ଷ ଥିଲା। କୌଣସି କଳହରେ ଯୁକ୍ତ ନ ହୋଇ, ସ୍ଥିର ଚିତ୍ତରେ ବିଚାର କରି ସେ ନିଜର ମନ୍ତବ୍ୟ ପ୍ରକାଶ କରୁଥିଲେ। ସେଥିଯୋଗୁଁ ସରକାର ତାଙ୍କ ମତରେ ଆସ୍ଥା ସ୍ଥାପନ କରୁଥିଲେ ଏବଂ ଦେଶବାସୀ ମଧ୍ୟ ଅସନ୍ତୁଷ୍ଟ ହେଉନଥିଲେ। ପ୍ରାୟ ପଚାଶ ବର୍ଷକାଳ 'ଉତ୍କଳ-ଦୀପିକା' ଉତ୍କଳର ମୁଖପତ୍ରରୂପେ ସରକାର ଏବଂ ଜନସାଧାରଣଙ୍କ ଦ୍ୱାରା ଗୃହୀତ ହୋଇଥିଲା। ସଂବାଦପତ୍ରରେ ବିଭିନ୍ନ ରାଜନୈତିକ ବିଷୟ ଆଲୋଚନା କରିବା ଅବଶ୍ୟମ୍ଭାବୀ ଥିଲା। ରାଜନୀତି

କ୍ଷେତ୍ରରେ ସେ ଚରମପନ୍ଥୀ ନଥିଲେ, ମାତ୍ର ସେ ସର୍ବଦା ଜନସ୍ୱାର୍ଥରକ୍ଷା କରିବାକୁ ଜାଗ୍ରତ ଥିଲେ। ଦେଶରେ ସ୍ୱାୟତ୍ତଶାସନ ପାଇଁ ସେ ସର୍ବଦା ମତ ପ୍ରକାଶ କରୁଥିଲେ। ସେ ସମୟରେ ସବୁ ପ୍ରକାର ସଭା-ସମିତି ସହ ସେ ସଂପୃକ୍ତ ଥିଲେ। ଅଧିକାଂଶ ସଭା-ସମିତି ପ୍ରିଣ୍ଟିଂ କମ୍ପାନୀ ହଲ୍‌ରେ ଅନୁଷ୍ଠିତ ହେଉଥିଲା। ଏହି ସଭା-ସମିତିମାନଙ୍କର ବିବରଣୀ, ବିଭିନ୍ନ ଲୋକମାନଙ୍କର ମତ ଏବଂ ଦେଶର ସ୍ୱାର୍ଥଜଡ଼ିତ ପ୍ରଧାନ ସମସ୍ୟାମାନ ଦୀପିକାରେ ଆଲୋଚିତ ହେଉଥିଲା ଏବଂ ସମାଲୋଚନାକୁ ସରକାର ଓ ଜନସାଧାରଣ ଗୁରୁତ୍ୱ ଦେଉଥିଲେ। ଦେଶର ସ୍ୱାର୍ଥହାନି ଘଟିଲେ ସେ ଦେଶର ସର୍ବୋଚ୍ଚ କର୍ତ୍ତାଙ୍କ କାର୍ଯ୍ୟର କଟୁ ସମାଲୋଚନା କରିବାକୁ ପଛାଉନଥିଲେ।

୧୮୭୦ ମସିହାରେ ଆୟର୍ଲାଣ୍ଡରେ ପ୍ରୋଟେଷ୍ଟାଣ୍ଟ୍ ପାଦ୍ରିଙ୍କ ଦରମା ବିଷୟରେ ଆପତ୍ତି ହେଉଥିଲା। ସେହି ପ୍ରସଙ୍ଗରେ ଗୌରୀଶଙ୍କର ଦୀପିକାରେ ମନ୍ତବ୍ୟ ଦେଇଥିଲେ ଯେ, ଏ ଦେଶରେ ହିନ୍ଦୁ ଓ ମୁସଲମାନମାନଙ୍କର ଦାତାଙ୍କ ଅର୍ଥରେ ଖ୍ରୀଷ୍ଟିଆନ ପୁରୋହିତମାନଙ୍କୁ ସରକାର ଦରମା ଦେବା ନ୍ୟାୟସଙ୍ଗତ ନୁହେଁ; ସରକାର ଧର୍ମ ବିଷୟରେ ସଂପୂର୍ଣ୍ଣ ନିରପେକ୍ଷ ରହିବା ଉଚିତ। ୧୮୭୧ ମସିହାରେ ବଙ୍ଗର ଲାଟ୍ କାମ୍ବେଲ୍ ସାହେବ ଉର୍ଦ୍ଦୂ ଏବଂ ପାରସୀ ଭାଷା କଚେରିମାନଙ୍କରୁ ଉଠାଇ ଦେବାକୁ ଆଦେଶ ଦେଇଥିଲେ। ଶିକ୍ଷା ବିଭାଗକୁ ଜଣାଇ ଦିଆଯାଇଥିଲା ଯେ ଯେଉଁଠି ଦେଶୀୟ ଭାଷାରେ ଶବ୍ଦ ନ ଥିବ, ସେଠାରେ ଇଂରାଜୀ ଭାଷାର ସାହାଯ୍ୟ ନିଆଯାଇପାରେ। ଗୌରୀଶଙ୍କର ଏ ଆଦେଶକୁ ବ୍ୟଙ୍ଗାତ୍ମକ ଭାବରେ ଦୀପିକାରେ ସମାଲୋଚନା କରିଥିଲେ। ସେହିପରି ୧୮୮୬ ମସିହାରେ ସରକାରଙ୍କର ଜଗନ୍ନାଥ ମନ୍ଦିର ପରିଚାଳନାରେ ହସ୍ତକ୍ଷେପ, ୧୮୯୫ ମସିହାରେ ମଧ୍ୟପ୍ରଦେଶ ସରକାର ସମ୍ବଲପୁର ଜିଲ୍ଲାର କଚେରିମାନଙ୍କରୁ ଓଡ଼ିଆ ଭାଷା ଉଠାଇ ଦେବା ନିଷ୍ପତ୍ତି ପ୍ରଭୃତି ସରକାରୀ ଆଦେଶମାନଙ୍କର ପ୍ରତିବାଦ ଦୀପିକାରେ ଧାରାବାହିକରୂପେ ପ୍ରକାଶ କରାଯାଉଥିଲା। ଏସବୁ ବିଷୟରେ ଗୌରୀଶଙ୍କର ଉତ୍କଳବାସୀଙ୍କ ସ୍ୱାର୍ଥର ଜାଗ୍ରତ-ପ୍ରହରୀ ଥିଲେ। ଉତ୍କଳ-ଦୀପିକା ପ୍ରକାଶ ଆରମ୍ଭରୁ ଉତ୍କଳ-ଭାଷା ସୁରକ୍ଷା ଦୀପିକାର ଗୋଟିଏ ପ୍ରଧାନ ଆଲୋଚ୍ୟ ବିଷୟ ଥିଲା।

### ଓଡ଼ିଆଭାଷାର ସୁରକ୍ଷା –

ଓଡ଼ିଆଭାଷାର ସୁରକ୍ଷା ଓ ପ୍ରସାର ଗୋରୀଶଙ୍କରଙ୍କ ଜୀବନର ସର୍ବପ୍ରଧାନ କାର୍ଯ୍ୟ ଥିଲା। ବ୍ରିଟିଶ୍ ଶାସନର ପ୍ରଥମ ପଚାଶ ବର୍ଷରେ ଓଡ଼ିଶାରେ କୌଣସି ଶିକ୍ଷା-ବ୍ୟବସ୍ଥା ହୋଇନଥିଲା। ୧୮୩୮ ମସିହାପରେ ଖ୍ରୀଷ୍ଟିୟାନ୍ ମିସ୍‌ନାରୀମାନେ

ଖ୍ରୀଷ୍ଟ ଧର୍ମ-ପୁସ୍ତକ ସହିତ ଓଡ଼ିଆଭାଷାରେ କେତେକ ଅନ୍ୟ ପୁସ୍ତକ ପ୍ରକାଶ କରିଥିଲେ। ଓଡ଼ିଆରେ ପାଠ୍ୟପୁସ୍ତକ ଅଭାବ ହେତୁ, ଓଡ଼ିଶାର ବିଦ୍ୟାଳୟମାନଙ୍କରେ ବଙ୍ଗଳା ଭାଷାରେ ଶିକ୍ଷା ଦିଆଯାଉଥିଲା। ଶିକ୍ଷା ବିଭାଗର ସବୁ ବଡ଼ କର୍ମଚାରୀ ବଙ୍ଗାଳୀ ଥିବାରୁ ସେମାନେ ସରକାରଙ୍କୁ ପ୍ରତିବର୍ଷ ରିପୋର୍ଟ ଦେଉଥିଲେ ଯେ, ଓଡ଼ିଶାରେ ବଙ୍ଗଳାଭାଷାରେ ଶିକ୍ଷାଦେବାରେ କୌଣସି ଅସୁବିଧା ହେଉନାହିଁ। ସରକାର ହିନ୍ଦୀ ଓ ବଙ୍ଗଳା ଭାଷାରେ ପୁସ୍ତକ ରଚ଼ନା ପାଇଁ ପୁରସ୍କାର ଦେଉଥିଲେ ଏବଂ କେତେକ ସ୍ଥଳରେ ପୁସ୍ତକମାନଙ୍କର ପ୍ରକାଶନବ୍ୟୟ ବହନ କରୁଥିଲେ। ମାତ୍ର ଓଡ଼ିଆ ଭାଷାରେ ପୁସ୍ତକ ରଚ଼ନା ପାଇଁ ସେ ଉତ୍ସାହ ଦେଉନଥିଲେ। ୧୮୬୫ ମସିହାରେ ଓଡ଼ିଶାର କମିସନର ରେଭେନ୍‌ସା ସାହେବ ଏ ବିଷୟରେ ବଙ୍ଗ ସରକାରଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ। ଶ୍ରୀଯୁକ୍ତ ନନ୍ଦକିଶୋର ଦାସ ଏବଂ ଶ୍ରୀ ବିଚିତ୍ରାନନ୍ଦ ଦାସ କ୍ରମାଗତ ଭାବରେ ଏ ବିଷୟ କମିସନରଙ୍କ ଦୃଷ୍ଟିକୁ ଆଣିଥିଲେ। ଉତ୍କଳ-ଦୀପିକାର ପ୍ରକାଶନ ଆରମ୍ଭରୁ ଏ ବିଷୟରେ କ୍ରମାଗତ ଭାବରେ ଆଲୋଚ଼ନା ହେଉଥିଲା।

୧୮୬୬ ମସିହାରେ ଓଡ଼ିଶାରେ ନ'ଅଙ୍କ ଦୁର୍ଭିକ୍ଷ ହେଲା ଏବଂ ଓଡ଼ିଶାର ଲୋକସଂଖ୍ୟାର ତିନିଭାଗରୁ ଏକ ଭାଗ ପ୍ରାୟ ଦଶଲକ୍ଷରୁ ଊର୍ଦ୍ଧ୍ୱ ଲୋକ ମରିଗଲେ। ସରକାରଙ୍କ ଅବହେଳା ହେତୁ ଏତେ ସଂଖ୍ୟାରେ ଜନକ୍ଷୟ ହେବା ଜାଣି ବ୍ରିଟିଶ୍ ସରକାର ମର୍ମାହତ ହେଲେ। ଅଳ୍ପକାଳ ପୂର୍ବରୁ ଓଡ଼ିଶାର କମିସନର ରୂପେ ଯୋଗଦେଇଥିବା ରେଭେନ୍‌ସା ସାହେବ ମଧ୍ୟ ଅତ୍ୟନ୍ତ ଅନୁତପ୍ତ ହେଲେ। ଏହିସବୁ କାରଣ ହେତୁ ପ୍ରାୟ ୧୮୬୯ ମସିହାଠାରୁ ଓଡ଼ିଶାରେ ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟ କରିବାକୁ ସରକାର ଉଦ୍ୟମ କଲେ। ଲୋକମାନଙ୍କର ସ୍ୱାସ୍ଥ୍ୟ ଓ ଶିକ୍ଷାର ଉନ୍ନତି ପାଇଁ ମଧ୍ୟ ଉଦ୍ୟମ ହେଲା। ଏହି କାର୍ଯ୍ୟକ୍ରମରେ, ୧୮୬୯ ମସିହାରେ କଟକରେ ମେଡ଼ିକାଲ୍ ସ୍କୁଲ ଏବଂ ସର୍ଭେ ସ୍କୁଲ ପ୍ରତିଷ୍ଠିତ ହେଲା। ପ୍ରାଥମିକ ଶିକ୍ଷାର ଉନ୍ନତି ନିମିତ୍ତ ଶିକ୍ଷକମାନଙ୍କୁ ତାଲିମ ଦେବା ପାଇଁ କଟକରେ ନର୍ମାଲ୍ ସ୍କୁଲ ସ୍ଥାପିତ ହେଲା। କଟକ ହାଇସ୍କୁଲରେ ଆଇନ୍ କ୍ଲାସ୍ ମଧ୍ୟ ଖୋଲିଲା। ପରେ ପରେ ଗଣିତ, ବିଜ୍ଞାନ, ଭୂଗୋଳ, ଇତିହାସ, ସ୍ୱାସ୍ଥ୍ୟରକ୍ଷା, ଜୀବତତ୍ତ୍ୱ ପ୍ରଭୃତି ବିଷୟରେ ଓଡ଼ିଆରେ ପୁସ୍ତକ ରଚ଼ନା କରିବା ପାଇଁ ପୁରସ୍କାର ଘୋଷଣା କରାଗଲା। ଉତ୍କଳର ଇତିହାସ ସଂକଳନପାଇଁ ଢେଙ୍କାନାଳର ଲୋକହିତୈଷୀ ରାଜା ଭଗୀରଥ ମହେନ୍ଦ୍ର ବାହାଦୁର ସରକାରଙ୍କ ହସ୍ତରେ ଏକ ହଜାର ଟଙ୍କା ଅର୍ପଣ କରିଥିଲେ। ଉତ୍କଳଦୀପିକାରେ ଯୁବକମାନଙ୍କୁ ଓଡ଼ିଆରେ ପାଠ୍ୟପୁସ୍ତକ ଲେଖିବାକୁ କ୍ରମାଗତ ଭାବରେ ଆହ୍ୱାନ କରାହେଉଥିଲା। ଶ୍ରୀଯୁକ୍ତ ବିଷ୍ଣୁଚ଼ରଣ ପଟ୍ଟନାୟକ, ବିଚିତ୍ରାନନ୍ଦ ଦାସ, ଜଗମୋହନ୍ ଲାଲା, ଫକୀରମୋହନ ସେନାପତି,

ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ, ଗୌରିଶଙ୍କର ରାୟ, କପିଳେଶ୍ୱର ବିଦ୍ୟାଭୂଷଣ ଓ ପ୍ରଭାକର ବିଦ୍ୟାରତ୍ନ ପ୍ରଭୃତି ଓଡ଼ିଆରେ ପାଠ୍ୟପୁସ୍ତକ ଲେଖିବାକୁ ଆଗେଇ ଆସିଥିଲେ। ଛାତ୍ରବୃତ୍ତି ସ୍କୁଲମାନଙ୍କରେ ବଙ୍ଗଳା ସହିତ ଓଡ଼ିଆ ପଢ଼ାଯିବାର ଆଦେଶ ହୋଇଥିଲା ଏବଂ ୧୮୬୯ ମସିହାଠାରୁ ପରୀକ୍ଷାର୍ଥୀମାନେ ଦୁଇଭାଷାରେ ପରୀକ୍ଷା ଦେବା ପାଇଁ ଅନୁମତି ପାଇଥିଲେ। ସେତେବେଳେ ଚାଟଶାଳୀଠାରୁ ନର୍ମାଲ୍ ସ୍କୁଲ ପର୍ଯ୍ୟନ୍ତ ସବୁ ସ୍କୁଲରେ ଗଦ୍ୟ ପୁସ୍ତକ ଓଡ଼ିଆରେ, ପଦ୍ୟ ଓ ବ୍ୟାକରଣ ବଙ୍ଗଳାରେ, ଭୂଗୋଳ ଓଡ଼ିଆରେ, ଇତିହାସ ବଙ୍ଗଳାରେ– ଏହିପରି ବିଭିନ୍ନ ବିଷୟ ଓଡ଼ିଆ ଓ ବଙ୍ଗଳାରେ ପଢ଼ାହେଉଥିଲା। ଉକ୍ତ ସ୍କୁଲମାନଙ୍କରେ ଅଧିକାଂଶ ଶିକ୍ଷକ ବଙ୍ଗାଳୀ ଥିଲେ। ସେମାନେ ଏପରି ଦୁଇଟି ଭାଷାରେ ବିଭିନ୍ନ ବିଷୟ ପଢ଼ାଇବାକୁ ଭଲପାଉନଥିଲେ। ସେଥିଯୋଗୁଁ ୧୮୬୫ଠାରୁ ୧୮୭୦ ମସିହା ମଧ୍ୟରେ ସେମାନେ ସ୍କୁଲମାନଙ୍କରୁ ଓଡ଼ିଆ ଭାଷା ଉଚ୍ଛେଦ କରିବାକୁ ବାରମ୍ୱାର ଚେଷ୍ଟା କରୁଥିଲେ।

୧୮୬୯ ମସିହାରେ ରାଜେନ୍ଦ୍ରଲାଲ୍ ମିତ୍ର ନାମରେ ଜଣେ ପ୍ରତ୍ନତତ୍ତ୍ୱବିତ୍ କଟକ, ପୁରୀ, କୋଣାର୍କ, ଭୁବନେଶ୍ୱର, ଖଣ୍ଡଗିରି, ଯାଜପୁର ପ୍ରଭୃତି ସ୍ଥାନମାନଙ୍କର ପ୍ରତ୍ନତତ୍ତ୍ୱ ସଂକଳନ ପାଇଁ ଆସି ଅନେକ ଦିନ କଟକରେ ରହିଥିଲେ। ସେହି ସମୟରେ କଟକର ଶିକ୍ଷିତ ଲୋକମାନେ ଇଂରାଜୀରେ ବିଭିନ୍ନ ବିଷୟ ଆଲୋଚନା କରିବାକୁ ଡିବେଟିଂ ସୋସାଇଟି ନାମରେ ଗୋଟିଏ ସମିତି ସ୍ଥାପନ କରିଥିଲେ। ସ୍ୱୟଂ କମିଶନର ଏହାର ସ୍ଥାୟୀ ସଭାପତି ଥିଲେ। ସେହି ସମିତିରେ ଏକଦା ରାଜେନ୍ଦ୍ରବାବୁ ବକ୍ତୃତା ପ୍ରସଙ୍ଗରେ କହିଥିଲେ ଯେ– "ଉତ୍କଳର ଯଥାର୍ଥ ହିତାକାଂକ୍ଷୀ ଯେ ହେବେ, ସେ ସର୍ବାଗ୍ରେ ଉତ୍କଳ ଭାଷା ଉଠାଇ ଦେଇ ଏଠାରେ ବଙ୍ଗ ଭାଷା ପ୍ରଚଳନ କରାଇବାକୁ ଚେଷ୍ଟାକରିବେ। ଯେତେବେଳଯାଏ ଉତ୍କଳଭାଷା ଉଠିଯାଇନାହିଁ, ସେତେବେଳଯାଏଁ ଉତ୍କଳର ଉନ୍ନତି ହେବା ଅସମ୍ଭବ। ସେ ଯୁକ୍ତି କଲେ ଯେ ଉତ୍କଳର ଜନସଂଖ୍ୟା ମାତ୍ର ୨୦ଲକ୍ଷ। ସେଥିମଧ୍ୟରୁ ପ୍ରାୟ ଦଶ-ବାର ଲକ୍ଷ ଲୋକ ଲେଖାପଢ଼ା ଜାଣିଥି ସମ୍ଭବ। ଏତିକି ଲୋକ ଗୋଟିଏ ସ୍ୱତନ୍ତ୍ର ଭାଷା ରକ୍ଷା କରି ପାରିବେ ନାହିଁ। ଅଳ୍ପ ଗ୍ରାହକ ହେତୁ ନୂତନ ପୁସ୍ତକ ରଚିତ ହୋଇ ପାରିବ ନାହିଁ। ବଙ୍ଗଦେଶ ବିସ୍ତୃତ; ତାହାର ଲୋକସଂଖ୍ୟା ଖୁବ୍ ଅଧିକ। ଉତ୍କଳରେ ବଙ୍ଗଭାଷା ପ୍ରଚଳିତ ହେଲେ, ବଙ୍ଗଭାଷାର ପୁସ୍ତକମାନ ଏଠାରେ ଚଳିବ ଏବଂ ଉତ୍ତମ ପୁସ୍ତକମାନ ରଚିତ ହେବ। ଉଦାହରଣସ୍ୱରୂପ– ବିଗତ ଏହି ତିନିମାସ ମଧ୍ୟରେ ବଙ୍ଗଳାରେ ତିନିଶହ ପୁସ୍ତକ ମୁଦ୍ରିତ ହୋଇଥିବାସ୍ଥଳେ ଓଡ଼ିଆରେ ମାତ୍ର ଚଉତ୍ରିଶଖଣ୍ଡରୁ ଅଧିକ ପୁସ୍ତକ ମୁଦ୍ରିତ ହୋଇନାହିଁ। ଏଥିରୁ ପ୍ରମାଣିତ ହେଉଛି ଯେ, ଉତ୍କଳଭାଷା କଦାପି ଉନ୍ନତ ହୋଇ ନପାରେ।"

ରାଜେନ୍ଦ୍ରବାବୁଙ୍କର ଧାରଣା ଥିଲା ଯେ ଉତ୍କଳ କେବଳ ପାଲିଙ୍କି-ବେହେରାମାନଙ୍କର ଦେଶ।

ତତ୍କାଳୀନ କଟକର ଜିଲ୍ଲାମାଜିଷ୍ଟ୍ରେଟ୍ ଜନ୍ ବୀମ୍‌ସ ସାହେବ ଏହାର ସମାଲୋଚନା କରିଥିଲେ। ସେ ପର୍ତ୍ତୁଗୀଜ୍ ଭାଷାର ଉଦାହରଣ ଦେଇଥିଲେ। ସେତେବେଳେ ଅନେକ ବଙ୍ଗାଳୀ ଲୋକ ରାଜେନ୍ଦ୍ରବାବୁଙ୍କ ମତକୁ ସମର୍ଥନ କରିଥିଲେ। ଗୌରୀଶଙ୍କର ଦୀପିକାରେ ରାଜେନ୍ଦ୍ରବାବୁଙ୍କ ମତର ଦୃଢ଼ ପ୍ରତିବାଦ କରି ଲେଖିଥିଲେ ଯେ, ସ୍ୱଦେଶପ୍ରୀତିରେ ରାଜେନ୍ଦ୍ରବାବୁ ମିଥ୍ୟା କାରଣ ଦେଖାଇଛନ୍ତି। ଉତ୍କଳର ଜନସଂଖ୍ୟାରେ ଗଡ଼ଜାତ ଅଞ୍ଚଳ ଏବଂ ଅନ୍ୟ ପ୍ରଦେଶରେ ଥିବା ଓଡ଼ିଆ ଅଞ୍ଚଳମାନଙ୍କର ଲୋକମାନଙ୍କୁ ମିଶାଇ ନାହାନ୍ତି। ଯାହାର ଯେଉଁ ବିଷୟରେ ଜ୍ଞାନ ନାହିଁ, ତାହାର ସେ ବିଷୟରେ କଥା କହିବା ଅନୁଚିତ। ଉତ୍କଳର ଭୂମିଖଣ୍ଡ ବଙ୍ଗଳାଠାରୁ ଊଣା ନୁହେଁ। ସରକାର ବଙ୍ଗଦେଶପ୍ରତି ଯେପରି ଦୃଷ୍ଟି ଦେଉଛନ୍ତି, ଉତ୍କଳପ୍ରତି ସେପରି ଦୃଷ୍ଟି ଦେଉ ନାହାନ୍ତି। ତାହା ହୋଇଥିଲେ ଓଡ଼ିଆରେ ପୁସ୍ତକ ରଚନା ମଧ୍ୟ ଅଧିକ ହୋଇଥାନ୍ତା। ରାଜେନ୍ଦ୍ରବାବୁଙ୍କ ମତ ଅତ୍ୟନ୍ତ ଭ୍ରମାତ୍ମକ ଏବଂ ଯେଉଁମାନେ ସେଥିରେ ଅନୁଗାମୀ ହେଉଛନ୍ତି ସେମାନେ କୁହୁଡ଼ି ପହଁରୁଛନ୍ତି।

ସେ ଦେଖାଇଥିଲେ ଯେ ଉତ୍କଳ ଭାଷାର ରକ୍ଷକ ତିନି ସରକାର। ସେମାନେ କେହି କାହାର କଥା ଜାଣୁନାହାନ୍ତି। ସେଥିଯୋଗୁଁ ଉତ୍କଳ ଭାଷାର ଉନ୍ନତି ହୋଇପାରୁନାହିଁ। ଏହି ତିନି ସରକାରଙ୍କର ଶିକ୍ଷାକାର୍ଯ୍ୟ ଏକତ୍ର ପ୍ରକାଶ କରିବାର କୌଣସି ଚେଷ୍ଟା ହେଉନାହିଁ। ଏ ବିଷୟରେ ସମୁଦାୟ ସ୍ଥାନ ଏକ କର୍ମଚାରୀଙ୍କର ଅଧୀନ ହେବା ଉଚିତ। ଅନ୍ତତଃପକ୍ଷେ ତିନି ସ୍ଥାନର ଅବସ୍ଥା ଜାଣିବାର ଗୋଟିଏ ବ୍ୟବସ୍ଥା ହେଉ। ଉତ୍କଳ ଦୀପିକାରେ ୧୮୬୯ ମସିହାର ସେ ଛିନ୍ନ-ବିଚ୍ଛିନ୍ନ ଉତ୍କଳର ବିଭିନ୍ନ ଅଞ୍ଚଳ ଏକତ୍ର ହେଉ ବୋଲି ଦୃଢ଼ ମତ ପ୍ରକାଶ କରିଥିଲେ। ଏହା ଦେଶମିଶ୍ରଣ ଉଦ୍ୟମର ପ୍ରଥମ ପଦକ୍ଷେପ। ଓଡ଼ିଆ ଭାଷାରେ ପୁସ୍ତକସଂଖ୍ୟା ବୃଦ୍ଧି ନିମିତ୍ତ ସେ ଦୀପିକା ମାଧ୍ୟମରେ ଆନ୍ଦୋଳନ ଆରମ୍ଭ କରିଥିଲେ ଏବଂ ବିଦ୍ୟାଳୟମାନଙ୍କରେ ପ୍ରଚଳିତ ମିଶ୍ର-ଭାଷାଶ୍ରିତ ପୁସ୍ତକମାନଙ୍କର ତୀବ୍ର ସମାଲୋଚନା କରିବାକୁ ଲାଗିଲେ। ସେତେବେଳେ କଲିକତାର 'ସ୍କୁଲବୁକ୍ ସୋସାଇଟି' ନାମକ ସଂସ୍ଥା ଉତ୍କଳ ଓ ଗଞ୍ଜାମ ଜିଲ୍ଲାକୁ ସ୍କୁଲବହି ଯୋଗାଉଥିଲେ। ସେ ସଂସ୍ଥା ଓଡ଼ିଆ ଭାଷା ଜାଣିନଥିବା ଲୋକମାନଙ୍କ ଦ୍ୱାରା ଓଡ଼ିଆ ବହି ଲେଖାଉଥିଲେ। ଓଡ଼ିଆ ପାଠ୍ୟପୁସ୍ତକ ଲେଖକମାନେ ପୁସ୍ତକ ନିର୍ବାଚନ ନହେବା ଆଶଙ୍କାରେ ପୁସ୍ତକ ଲେଖିବାକୁ ସାହସ କରୁନଥିଲେ। ସମ୍ବଲପୁରର ଡେପୁଟି ଇନ୍‌ସପେକ୍ଟର୍ ବିଚ୍ଛନ୍ଦ ପଟ୍ଟନାୟକଙ୍କ ଅଧ୍ୟବସାୟ ଫଳରେ ଶୁଦ୍ଧ ଓଡ଼ିଆ

ପୁସ୍ତକ ରଚିତ ହେଲା । ଗୌରୀଶଙ୍କର ସ୍କୁଲ ବୁକ୍ ସୋସାଇଟିର କ୍ଷମତା ହ୍ରାସ ପାଇଁ ଦୃଢ଼ସଂକଳ୍ପ ହୋଇଥିଲେ । ତାଙ୍କର କ୍ରମାଗତ ସମାଲୋଚନା ଫଳରେ ବିକୃତ ଭାଷାର ପୁସ୍ତକମାନଙ୍କ ପରିବର୍ତ୍ତେ ଶୁଦ୍ଧ ଭାଷାରେ ଲିଖିତ ବହି ପ୍ରଚଳିତ ହେବାକୁ ଲାଗିଲା । ସରକାର ଓଡ଼ିଆ ଭାଷାରେ ପୁସ୍ତକ ଲେଖିବା ପାଇଁ ପୁରସ୍କାର ଘୋଷଣା କଲେ ଏବଂ ନୂତନ ପୁସ୍ତକମାନଙ୍କର ମୁଦ୍ରଣ ଖର୍ଚ୍ଚ ବହନ ପାଇଁ ଅଧିକ ତତ୍‌ପରତା ଦେଖାଇଲେ । ଏଥିରେ ବଙ୍ଗୀୟ ଗ୍ରନ୍ଥକାରମାନଙ୍କର ସ୍ୱାର୍ଥହାନି ହେଲା ।

ସେହି ସମୟରେ 'କଟକ ଷ୍ଟାର୍' ନାମକ ସାପ୍ତାହିକ ପତ୍ରିକାରେ ଉମାଚରଣ ହାଲଦାର ନାମକ ଜଣେ ବଙ୍ଗୀୟ ବ୍ୟକ୍ତି ପ୍ରସ୍ତାବ କଲେ ଯେ ଓଡ଼ିଆ ଭାଷାର ବହିସବୁ ବଙ୍ଗଳା ଅକ୍ଷରରେ ଲେଖାଯାଉ । ତାହାହେଲେ ବଙ୍ଗଳା ଓ ଓଡ଼ିଶାର ଲୋକେ ଏବଂ ସାହେବମାନେ ସହଜରେ ଓଡ଼ିଆ ଭାଷା ଶିକ୍ଷା କରି ପାରିବେ । ୧୮୬୯ ମସିହାରେ ଦୀପିକାରେ ଏ ପ୍ରସ୍ତାବର ତୀବ୍ର ସମାଲୋଚନା ହେଲା । 'ଉତ୍କଳ-ହିତୈଷିଣୀ' ପତ୍ରିକା ଦୀପିକାର ମତକୁ ପ୍ରତିବାଦ କରିଥିଲେ । ମାତ୍ର କଟକର ଅନ୍ୟ ଶିକ୍ଷିତ ଲୋକମାନେ ଏ ପ୍ରସ୍ତାବକୁ ଦୃଢ଼ ସମର୍ଥନ କଲେ । ଏଥଯୋଗୁଁ ବଙ୍ଗଳା ଏବଂ ଓଡ଼ିଶାର ଲୋକମାନଙ୍କ ମଧ୍ୟରେ ଘୋର ମନୋମାଳିନ୍ୟ ଘଟିଲା । ଦୀପିକା ଉଭୟପକ୍ଷଙ୍କୁ ମିଳାଇବାର ଉଦ୍ୟମ କଲେ । ବଙ୍ଗଳାର ରଙ୍ଗଲାଲ୍ ବନ୍ଦୋପାଧ୍ୟାୟ ନାମକ ଜଣେ ବ୍ୟକ୍ତି ବଙ୍ଗଳା ଅକ୍ଷରରେ ଓଡ଼ିଆ ଭାଷା ଲେଖିବା ପ୍ରସ୍ତାବକୁ ବିରୋଧ କରିଥିଲେ । ରଙ୍ଗଲାଲ୍ ବାବୁ ଆଗରୁ କଟକରେ ଜଣେ ଜନପ୍ରିୟ ଡେପୁଟି ମାଜିଷ୍ଟ୍ରେଟ୍ ଥିଲେ । ସେ ଯୁକ୍ତି କରିଥିଲେ ଯେ ଯଦି ଏକ ଜାତି ହେବା ପାଇଁ ଏକ ବର୍ଣ୍ଣମାଳା ପ୍ରଚଳନ କରିବାକୁ ଆଶା କରାଯାଏ, ତେବେ ବଙ୍ଗଳା, ଓଡ଼ିଆ, ହିନ୍ଦୀ ଓ ସଂସ୍କୃତ ସବୁ ଦେବନାଗରୀ ଲିପିରେ ଲେଖାହେବା ଉଚିତ ।

ତାହାପରେ କଟକର କେତେକ ବଙ୍ଗାଳୀ ଏବଂ ଓଡ଼ିଆ ଲୋକଙ୍କ ସ୍ୱାକ୍ଷରରେ କଲିକତାର ଇଂରାଜୀ ସମ୍ବାଦପତ୍ର 'ଇଣ୍ଡିଆନ୍ ମିରର୍'ର ସମ୍ପାଦକଙ୍କ ମାଧ୍ୟମରେ ବଙ୍ଗ ସରକାରଙ୍କୁ ଜଣାଇବାକୁ ଗୋଟିଏ ପତ୍ର ଇଣ୍ଡିଆନ୍ ମିରର୍‌କୁ ପଠାଯାଇଥିଲା । ତାହା ଫଳରେ ଇଣ୍ଡିଆନ୍ ମିରର୍‌ରେ ଗୋଟିଏ ମନ୍ତବ୍ୟ ପ୍ରକାଶ ପାଇଲା । ସେଥିରେ ଦର୍ଶାଯାଇଥିଲା – 'ବର୍ତ୍ତମାନ ଓଡ଼ିଶାରୁ ବଙ୍ଗଳା ଭାଷା ଉଠାଇ ଓଡ଼ିଆ ଭାଷା ଚଳାଇବା ଉଚିତ ନୁହେଁ । ବଙ୍ଗଳା ଭାଷା ଓ ସଭ୍ୟତା ଉନ୍ନତ ଥିବା ଜାଣି ଉତ୍କଳୀୟମାନେ ତାଙ୍କର ପିଲାମାନଙ୍କୁ ବଙ୍ଗଳା ଭାଷାରେ ଶିକ୍ଷା ଦେଉଛନ୍ତି । ସରକାର ଓଡ଼ିଆ ଭାଷା ଚଳାଇବାରୁ ଓଡ଼ିଆମାନେ ଭାରି ଅସନ୍ତୁଷ୍ଟ ଅଛନ୍ତି' । ମିରର୍ ସଂବାଦପତ୍ରର ସେତେବେଳେ ସରକାରଙ୍କ ଉପରେ ବିଶେଷ ପ୍ରଭାବଥିଲା ।

ଗୌରୀଶଙ୍କର ଦୀପିକାରେ ମିରର୍‌ରେ ପ୍ରକାଶିତ ଏହି ମନ୍ତବ୍ୟର ଘୋର ପ୍ରତିବାଦ କରିଥିଲେ। ସେ ଲେଖିଥିଲେ ଯେ, 'କେତେକ ଲୋକଙ୍କ ପ୍ରରୋଚନାରେ ମିରର୍‌ର ସମ୍ପାଦକ ଏପରି ମିଥ୍ୟା ଏବଂ ଅଯୌକ୍ତିକ କଥା ଲେଖିବାକୁ ସାହସ କରିଛନ୍ତି। ସେ ଓଡ଼ିଶା ବିଷୟରେ କିଛି ଜାଣନ୍ତି ନାହିଁ। ପୂର୍ବେ ବଙ୍ଗାଳୀମାନେ ଏ ଦେଶର ଭାଷା ଓ ଲୋକଙ୍କୁ ଘୃଣା କରୁ ନଥିବାରୁ ଗୌରବାନ୍ୱିତ ହୋଇଥିଲେ। ବର୍ତ୍ତମାନ ବଙ୍ଗାଳୀମାନେ ଓଡ଼ିଆ ଭାଷା ଏବଂ ଅକ୍ଷରକୁ ଦେଖିପାରୁ ନାହାନ୍ତି। ସେଥିନିମିତ୍ତ ଓଡ଼ିଆ ଓ ବଙ୍ଗାଳୀମାନଙ୍କ ମଧ୍ୟରେ କଳହ। ତଥାପି ଉକ୍ତ ସମ୍ପାଦକ କହନ୍ତି ଯେ, ଓଡ଼ିଆମାନେ ନିଜ ଭାଷାଠାରୁ ବଙ୍ଗଳା ପଢ଼ିବାକୁ ଅଧିକ ଆଗ୍ରହୀ ଏବଂ ବଙ୍ଗାଳୀମାନଙ୍କ ଅଧୀନ ହେବାକୁ ଅଧିକ ଲାଭଜନକ ବୋଲି ମନେ କରନ୍ତି। କେଡ଼େ ଭ୍ରମ! ଅଥବା ଲୋକେ ସ୍ୱଭାବତଃ ଏଡ଼େ ପକ୍ଷପାତୀ ଯେ ସ୍ୱଜାତିବର୍ଗର କଥା ବିଶ୍ୱାସ କରିବାକୁ କେତେବେଳେ କୁଣ୍ଠିତ ନୁହନ୍ତି। ବଙ୍ଗାଳୀମାନେ ଏଠାରେ ଅନେକ ପ୍ରକାର ଉଦ୍ୟମ କରି ଯହୁଁ ଓଡ଼ିଆ ଉଠାଇବାକୁ ଅକ୍ଷମ ହେଲେ, ଏବେ ଏଠାରେ ଆଉ ଚେଷ୍ଟା ନ କରି ଦେଶ ଲୋକମାନଙ୍କ ଆଶ୍ରୟ ନେଇ ଅଛନ୍ତି। ପୁଣି ସାହସ ଏଡ଼େ ଯେ, ଖଣ୍ଡେ ଦରଖାସ୍ତ ମଧ୍ୟ ଏଠାରୁ ପ୍ରାପ୍ତ କରାଇଛନ୍ତି। ଆମର ଇଣ୍ଡିଆନ୍ ମିରର୍‌ର ସମ୍ପାଦକଙ୍କୁ ଏତିକି ଅନୁରୋଧ ଯେ ଓଡ଼ିଆମାନେ ବଙ୍ଗଳାଶିକ୍ଷା ପାଇଁ କେଡ଼େ ଅସମ୍ମତ ଏବଂ ଏଠାରେ ବଙ୍ଗଳାଭାଷା ସ୍କୁଲମାନଙ୍କରେ ପ୍ରଚଳିତ ଥିବାରୁ, ଶିକ୍ଷା କାର୍ଯ୍ୟରେ କେତେ ବ୍ୟାଘାତ ହେଉଛି, ଏ ବିଷୟରେ ସରକାରଙ୍କ ପାଖକୁ ଯେଉଁ ଆବେଦନମାନ ଯାଇଛି ଏବଂ ସେଥିରେ ଜିଲ୍ଲା କଲେକ୍ଟର୍ ଓ କମିସନରମାନେ ଯେଉଁ ମତ ଦେଇଛନ୍ତି, ସେ ସମସ୍ତ ପାଠ କରନ୍ତୁ ଏବଂ ତା'ପରେ ମନ୍ତବ୍ୟ ଦିଅନ୍ତୁ। ତୁଚ୍ଛାକୁ ଲୋକଙ୍କୁ ଭ୍ରମରେ ପକାଇବା ଉଚିତ ନୁହେଁ।'

କଲିକତାର ଶିକ୍ଷା ବିଭାଗ ଡାଇରେକ୍ଟର୍ ମଧ୍ୟ ମିରର୍‌ରେ ପ୍ରକାଶିତ ମତରେ ଭାସିଯାଇଥିଲେ। କେବଳ ଓଡ଼ିଶାର କମିସନର ରେଭେନ୍‌ସା ସାହେବ ଏବଂ ସ୍କୁଲ ଇନ୍‌ସପେକ୍ଟର୍ ମାର୍ଟିନ୍ ସାହେବ ଉତ୍କଳ ଭାଷା ପ୍ରଚଳନ ସପକ୍ଷରେ ଦୃଢ଼ମତ ପ୍ରକାଶ କରିବାରୁ ସରକାର ଉପରୋକ୍ତ ମତ ସବୁ ଅଗ୍ରାହ୍ୟ କରି ୧୮୬୯ ମସିହା ନଭେମ୍ବର ମାସରେ ଆଦେଶ ଦେଲେ ଯେ କଟକ ହାଇସ୍କୁଲ ଏବଂ ଅନ୍ୟ ଦୁଇ ଜିଲ୍ଲାସ୍କୁଲରେ ଓଡ଼ିଆ କିମ୍ବା ବଙ୍ଗଳା ଭାଷା-ଶିକ୍ଷା ଇଚ୍ଛାଧୀନ ରହିବ। ମଧ୍ୟସ୍କୁଲରେ ଇଂରାଜୀ ଓ ଭାଷା ସ୍କୁଲରେ ସକଳ ବିଷୟରେ ଶିକ୍ଷା ଉତ୍କଳଭାଷାରେ ଦିଆଯିବ। ଇଂରାଜୀ ଅବଶ୍ୟ ପଢ଼ିବାକୁ ହେବ ଏବଂ ସ୍ୱେଚ୍ଛାଧୀନ ରହିବ। ମଧ୍ୟଶ୍ରେଣୀରେ ଯେତେ ଦିନ ପର୍ଯ୍ୟନ୍ତ ଉତ୍କଳ ଭାଷାରେ ପାଠ୍ୟପୁସ୍ତକ ହୋଇନାହିଁ, ଭାଷା ଶୁଣିବା ପାଇଁ ବଙ୍ଗଳା ପଢ଼ାଯିବ। ନିମ୍ନଶ୍ରେଣୀରେ ଉତ୍କଳ-

ବିଦ୍ୟାଳୟମାନଙ୍କରେ କେବଳ ଓଡ଼ିଆ ପଢ଼ା ହେବ। ସାଧାରଣ ଭାବରେ ସରକାରଙ୍କ ମତ ଯେ ଜିଲ୍ଲାସ୍କୁଲର ତଳ ସମସ୍ତ ସ୍କୁଲରେ ଓଡ଼ିଆ ଭାଷାରେ ଶିକ୍ଷା ଦିଆଯିବ। ଜିଲ୍ଲାସ୍କୁଲ ଏବଂ ହାଇସ୍କୁଲର ଛାତ୍ରମାନେ ଇଚ୍ଛା କଲେ ବଙ୍ଗଳା ଶିକ୍ଷା କରିପାରିବେ। ସରକାରଙ୍କ ଏହି ଅଭିପ୍ରାୟ କାର୍ଯ୍ୟରେ ପରିଣତ କରିବାକୁ ଶିକ୍ଷା ବିଭାଗର ଡାଇରେକ୍ଟର୍‌ଙ୍କୁ ଆଦେଶ ଦିଆଯାଇଥିଲା। ଗୌରୀଶଙ୍କର ଦୀପିକାରେ ରେଭେନ୍‌ସା ଓ ମାର୍ଟିନ୍ ସାହେବଙ୍କୁ ଧନ୍ୟବାଦ ଦେଇଥିଲେ ଏବଂ ଉତ୍କଳୀୟମାନଙ୍କୁ ପାଠ୍ୟପୁସ୍ତକର ଅଭାବ ପୂରଣ ପାଇଁ ଅନୁରୋଧ କରିଥିଲେ।

ତୃତୀୟ ଥରକୁ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ନାମରେ ଜଣେ ବ୍ୟକ୍ତି ବାଲେଶ୍ୱର ଜିଲ୍ଲାସ୍କୁଲର ହେଡ୍‌ପଣ୍ଡିତ ହୋଇ ଆସିଥିଲେ। ଜିଲ୍ଲାସ୍କୁଲରେ ବଙ୍ଗଳା ଏବଂ ଓଡ଼ିଆ ପଢ଼ାଇବାକୁ ସେ ଆଦେଶ ପାଇଥିଲେ। ସେ ବଙ୍ଗଳାରେ ଗୋଟିଏ ବହି ଲେଖିଲେ 'ଉଡ଼ିୟା ସ୍ୱତନ୍ତ୍ର ଭାଷା ନୟ'। କଟକର ଉତ୍କଳ ହିତୈଷିଣୀ ପତ୍ରିକା ତାଙ୍କର ମତ ସମର୍ଥନ କରିଥିଲେ। କଟକ ଓ ବାଲେଶ୍ୱରର ବଙ୍ଗାଳୀ ସରକାରୀ କର୍ମଚାରୀ ଏବଂ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ମଧ ସେ ମତକୁ ସମର୍ଥନ କରିଥିଲେ। ଗୌରୀଶଙ୍କର ଦୀପିକାରେ ସେ ମତର ତୀବ୍ର ସମାଲୋଚନା କରିଥିଲେ।

ସେ ଲେଖିଲେ– "ଓଡ଼ିଆଭାଷା ସଂସ୍କୃତଭାଷାର ଅଧୀନ। ଗ୍ରନ୍ଥକାରଙ୍କ ମତରେ ବଙ୍ଗଳା କେଉଁ ସ୍ୱତନ୍ତ୍ର ଭାଷା ଯେ, ଓଡ଼ିଆ ତାହା ସଙ୍ଗରେ କିୟଦଂଶରେ ମିଶିବାରୁ ସ୍ୱତନ୍ତ୍ର ଭାଷା ହେଲା ନାହିଁ? ଯଦି ହିନ୍ଦୀ ଏବଂ ବଙ୍ଗଳା ସ୍ୱତନ୍ତ୍ର ଭାଷା ହେଲା, ତେବେ ଓଡ଼ିଆ କାହିଁକି ନୁହେଁ? ଗାରୋ, ଖାସୀ, କନ୍ଧ ଓ ଜୁଆଙ୍ଗ ପ୍ରଭୃତି ବହୁ ଆଦିବାସୀ ଭାଷା; ଭିନ୍ନ ଭିନ୍ନ ଭାଷା– କେବଳ କେତେକ ସୌସାଦୃଶ୍ୟ ହେତୁରୁ ଯେବେ ଦୁଇ ବା ଅଧିକ ଭାଷାକୁ ଏକ ବୋଲାଯାଇପାରେ, ତେବେ ଯଦି କେହି କହେ ଓଡ଼ିଆରୁ ହିନ୍ଦୀ ବା ବଙ୍ଗଳା ଭାଷା ବାହାରିଛି, ସେଥିରେ ଦୋଷ କ'ଣ? କିନ୍ତୁ ଓଡ଼ିଆମାନେ ତୁଚ୍ଛାକୁ ଏ ଅହଂକାର କରନ୍ତି ନାହିଁ; ମାତ୍ର କରିବାର କାରଣ ଅଛି। ଓଡ଼ିଶାର କୀର୍ତ୍ତିକଳାପ ବଙ୍ଗଳାରେ ନାହିଁ। ଓଡ଼ିଶାର ରାଜାମାନେ ଏକସମୟରେ ତ୍ରିବେଣୀ ପର୍ଯ୍ୟନ୍ତ ରାଜ୍ୟ ଅଧିକାର କରିଥିଲେ। ବଙ୍ଗଳାର କୌଣସି ରାଜା ଓଡ଼ିଶାକୁ କେବେ ଜୟ କରିବାର ଶୁଣାନାହିଁ। ଅତଏବ ବଳ, ବୀର୍ଯ୍ୟ, ଶିଳ୍ପକୌଶଳରେ ଓଡ଼ିଶାର ପୂର୍ବକାଳୀୟ ଲୋକ ବଙ୍ଗଳାରୁ ଶ୍ରେଷ୍ଠ ଥିବା ପ୍ରତ୍ୟେକ୍ଷେ, ଭାଷା ନିମିର ଅନ୍ୟଠାରେ ଋଣୀ ହୋଇଥିଲେ ଏହା ସମ୍ଭବ ନୁହେଁ, ବରଂ ଓଡ଼ିଶାର ଭାଷା କେତେକ ବଙ୍ଗଳାରେ ଚଳିବାର ଅନୁମାନ ସିଦ୍ଧ। ଲେଖକ ନିଜେ ମେଦିନୀପୁର, ଓଲବାଡ଼ିୟା ପ୍ରଭୃତିରେ କେତେକ ଭାଷା ଓଡ଼ିଆଭାଷା ତୁଲ୍ୟ ବୋଲି ଯାହା ଲେଖିଛନ୍ତି,

ତାହା ତାର ପ୍ରମାଣ ଦିଏ। ଓଡ଼ିଆରେ ଯେତେ ପ୍ରାଚୀନ ଗ୍ରନ୍ଥ ଅଛି, ବଙ୍ଗଳାରେ ତାହା ନାହିଁ। ଲେଖକ କେବଳ ଓଡ଼ିଆ ଓ ବଙ୍ଗଳା ଭାଷାର କେତେକ ସମତା ଥିବା ବିଷୟ ଲେଖିଛନ୍ତି। ସେ ଦୁଇ-ଚାରିଟା ବାଲେଶ୍ୱରୀ କଥା ଶୁଣି ଆପଣାର ବୁଦ୍ଧିକୁ ଧନ୍ୟବାଦ ଦେଇ ଗ୍ରନ୍ଥ ଲେଖିବାରେ ପ୍ରବୃତ୍ତ ହୋଇଛନ୍ତି। କେଡ଼େ ମୂର୍ଖପଣିଆ! ପୁଣି ତାହା ସଙ୍ଗେ ସାହସ ମଧ କେଡ଼େ! ସଂସ୍କୃତ, ହିନ୍ଦୀ, ପାରସୀ ଶବ୍ଦମାନଙ୍କୁ ବଙ୍ଗଳା ବୋଲି ପରିଚୟ ଦେଇଛନ୍ତି। ଯଦି ସେ କିଞ୍ଚିତ୍ ହିନ୍ଦୀ ଓ ପାରସୀ ଜାଣିଥାନ୍ତେ, ତେବେ କେଉଁ ଶବ୍ଦ କେଉଁ ଭାଷାରୁ ଆସିଛି, ତାହା ବାରିଦେଇ ପାରିଥାନ୍ତେ। ଆଉ ଯଦି କିଛି ଓଡ଼ିଆ ଶିଖିଥାନ୍ତେ, ତେବେ କେତେକେ ଏ ଭ୍ରମରୁ ଉଦ୍ଧାର ପାଇଥାନ୍ତେ। ଥରେ ମଫସଲର ଓଡ଼ିଆଙ୍କ ସଙ୍ଗେ କଥା କହିଥିଲେ ଜାଣନ୍ତେ ଯେ ଘଟୀ, ବାଟୀ, ଚାକରାନୀ, ସୁପାରୀ, ଛାନାଲା ପ୍ରଭୃତି ଶବ୍ଦ ଓଡ଼ିଆମାନେ ବୁଝିପାରନ୍ତି ନାହିଁ ଏବଂ ପିଲ୍‌ସଜ, ଅବଖରା, ସତରଞ୍ଜି, ଗାଲିଚା, ତକ୍ତପୋଷ, ଗିଲାସ ଇତ୍ୟାଦି ପାରସୀ ଓ ହିନ୍ଦୀ ଶବ୍ଦରେ ଉଭୟ ଓଡ଼ିଆ ଓ ବଙ୍ଗଳାର ସମାନ ଅଧିକାର ଅଛି। ଡାଳ, ସାମସେଇ, ମଥାଦହି, ଜହ୍ନି, ତୁଣ, ଜାଇ, ନିଶୁଣୀ, ଅଲଗୁଣି, ପରୁଷୁଣିଆ, ତେଲୌଣୀ ପ୍ରଭୃତି ବିଶୁଦ୍ଧ ଓଡ଼ିଆ ଶବ୍ଦ ଯଦି ଥରେ ତାଙ୍କ କାନରେ ପଡ଼ିଥାନ୍ତା, ତେବେ ଏତେ ବଣା ହୁଅନ୍ତେ ନାହିଁ। କେବଳ ଗୁଡ଼ାଏ ସଂସ୍କୃତ ଓ ଅନ୍ୟ ଭାଷାରୁ ଉଦ୍‌ଭବ କେତେଗୁଡ଼ିଏ ଶବ୍ଦ ଖୋଜି ପାଠକଙ୍କୁ ପ୍ରତାରଣା କରିଛନ୍ତି। କିଛି ଓଡ଼ିଆ ନଜାଣି ସବୁ ଜାଣିଥିବାର ପ୍ରକାଶ କରିଛନ୍ତି। 'ହୁନ୍ଦର' ଶବ୍ଦର ଅର୍ଥ ସୁନ୍ଦର ବୋଲି କହିଛନ୍ତି। ଏପରି ଗାଲୁଆପଣ ଆଉ ଦେଖା ନାହିଁ। ବର୍ତ୍ତମାନ ବଙ୍ଗଳା ଓ ଓଡିଆରେ ଯେଉଁ ପୁସ୍ତକ ଲେଖାଯାଉଛି ତହିଁରେ ଅଧିକ ସଂସ୍କୃତ ଶବ୍ଦ ମିଶିଥିବାରୁ ଏ ଦୁହିଁଙ୍କର ବିଶେଷ ସମତା ଦେଖାଯାଏ। ମାତ୍ର ଅବୋଧ ଓଡ଼ିଆ ଓ ବଙ୍ଗାଳୀ ଏ ଭାଷା ବୁଝିବାକୁ ଅକ୍ଷମ। କେହି କାହାରି ଭାଷା ବୁଝିପାରନ୍ତି ନାହିଁ। ତେଣୁ ଏହି ଦୁଇ ଭାଷାକୁ ପୃଥକ୍ ଭାଷା ବୋଲିବାକୁ ହେବ। କାନ୍ତିବାବୁ ଯେତେ ପୁସ୍ତକ ରଚନା କରନ୍ତୁ, ଦୁଇ ଭାଷା କଦାଚ୍ ଏକ ହୋଇ ନ ପାରିବ।'' (ଦୀପିକା, ୨୭।୨।୧୮୭୦)

ଆମ୍ଭମାନଙ୍କର ମନେରଖିବାର କଥା ଯେ, ଗୌରୀଶଙ୍କର ନିଜେ ଗୋଟିଏ ବଙ୍ଗଳୀ ପରିବାରରେ ଜନ୍ମ ହୋଇଥିଲେ। ଉପରୋକ୍ତ ଲେଖାରୁ ଜଣାଯାଏ ଯେ କୌଣସି ଓଡ଼ିଆ ଲୋକ ଓଡ଼ିଆ ଭାଷା ରକ୍ଷା ପାଇଁ ତାହାଙ୍କଠାରୁ ଅଧିକ ତଥ୍ୟପୂର୍ଣ୍ଣ ଓ ଶକ୍ତିଶାଳୀ ଯୁକ୍ତି ଦେଇପାରିନଥାନ୍ତେ। ଗୌରୀଶଙ୍କର ଓଡ଼ିଶାକୁ ନିଜର ଜନ୍ମଭୂମି ଏବଂ ଓଡ଼ିଆ ଭାଷାକୁ ମାତୃଭାଷାରୂପେ ଗ୍ରହଣ କରିଥିଲେ ଏବଂ ଜନ୍ମଭୂମି ଓ ମାତୃଭାଷା ରକ୍ଷାପାଇଁ ଜୀବନବ୍ୟାପୀ ସଂଗ୍ରାମ କରିଥିଲେ।

କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ବହି ପ୍ରକାଶ ପରେ ଶତାଧିକ ବଙ୍ଗାଳୀ ଲୋକ ପୁନର୍ବାର ସରକାରଙ୍କୁ ଦରଖାସ୍ତ କରିଥିଲେ ଯେ, ଭାଷାନୀତିର ପୁନର୍ବିଚାର କରି ସରକାର ଓଡ଼ିଶାରେ ଓଡ଼ିଆ ପରିବର୍ତ୍ତେ ବଙ୍ଗଳା ଭାଷା ପ୍ରଚଳନ କରନ୍ତୁ। ବାଲେଶ୍ୱର ଜିଲ୍ଲା ସ୍କୁଲରେ ଓଡ଼ିଆ ପରିବର୍ତ୍ତେ କେବଳ ବଙ୍ଗଳା ପଢ଼ାଯିବାକୁ ସରକାରୀ ଆଦେଶ ମଧ୍ୟ ହୋଇଥିଲା। ମାତ୍ର ବାଲେଶ୍ୱରରେ ଫକୀରମୋହନ ପ୍ରଭୃତି ପ୍ରତିବାଦ କରି ସରକାରଙ୍କ ପାଖକୁ ଦରଖାସ୍ତ କରିଥିଲେ; କଟକରେ ଗୌରୀଶଙ୍କରବାବୁ ପ୍ରଭୃତି ତାର ଘୋର ପ୍ରତିବାଦ କରିଥିଲେ। ସେତେବେଳେ ଭୂଦେବ ମୁଖୋପାଧ୍ୟାୟ ଏଜୁକେଶନ୍ ଗେଜେଟ୍‌ର ସଂପାଦକ ଓ ପରିଚାଳକ ଥିଲେ। ସେ ମଧ୍ୟ ଶିକ୍ଷା ବିଭାଗର ଇନ୍‌ସ୍‌ପେକ୍ଟର୍ ଥିଲେ। ସେ କାନ୍ତିବାବୁଙ୍କ ବହିର କଟୁ ସମାଲୋଚନା କରିଥିଲେ। ସେ ଲେଖିଥିଲେ– 'କାନ୍ତିବାବୁଙ୍କ ଯୁକ୍ତି ପ୍ରଣାଳୀରେ କେବଳ ଓଡ଼ିଆ କାହିଁକି, ହିନ୍ଦୀ ବି ସ୍ୱତନ୍ତ୍ର ଭାଷା ନୁହେଁ। ବଙ୍ଗଳା ଏବଂ ଓଡ଼ିଆ ମଧ୍ୟରେ ଯେପରି ମେଳ ଅଛି, ବଙ୍ଗଳା ଓ ହିନ୍ଦୀ ଭାଷା ମଧ୍ୟରେ ସେହିପରି ଅନେକ ମେଳ ଅଛି। ହିନ୍ଦୀରେ ଲିଖିତ ପ୍ରେମସାଗର ଓ ତୁଳସୀ ରାମାୟଣରୁ ବହୁ ଉଦାହରଣ ଉଦ୍ଧାର କରି ସେ ଲେଖିଥିଲେ ଯେ, କାନ୍ତିବାବୁଙ୍କ ପଦ୍ଧତିକୁ ସତ୍‌ପଦ୍ଧତି ମନେକଲେ ଓଡ଼ିଶାରେ ଯେପରି ବଙ୍ଗଳା ପ୍ରଚଳିତ ହେବା ପ୍ରତିପନ୍ନ ହୋଇଛି, ସେହିପରି ବଙ୍ଗଳା ଏବଂ ଓଡ଼ିଶା ଉଭୟ ଦେଶରେ ହିନ୍ଦୀ ପ୍ରଚଳିତ ହେବା ଉଚିତ ବୋଲି ପ୍ରତିପନ୍ନ ହୋଇପାରେ। ଅଥବା ସମସ୍ତ ଆର୍ଯ୍ୟାବର୍ତ୍ତରେ ଏକା ବଙ୍ଗଳା, ଓଡ଼ିଆ, ଆସାମୀ କିମ୍ବା ହିନ୍ଦୀ ପ୍ରଚଳିତ ହେବା ଉଚିତ ବୋଲି ମଧ୍ୟ ପ୍ରତିପନ୍ନ ହୋଇପାରେ।

'ଭଟ୍ଟାଚାର୍ଯ୍ୟ ଯେଉଁ ସ୍ଥଳରେ ଓଡ଼ିଆ ଓ ବଙ୍ଗଳାର ମେଳ ଦେଖିଛନ୍ତି, ସେ ସ୍ଥଳରେ ଦୁହିଁଙ୍କି ବଙ୍ଗଳା କହିଛନ୍ତି; ଯେଉଁ ସ୍ଥଳରେ ଭିନ୍ନରୂପ ଦେଖିଛନ୍ତି, ସେଠାରେ ଓଡ଼ିଆକୁ ବିଶୁଦ୍ଧ ବଙ୍ଗଳାର ଅପଭ୍ରଂଶ ବୋଲି କହିଛନ୍ତି। ଏହା କ'ଣ ବିଚାରର ରୀତି? ଯେଉଁ ସ୍ଥଳରେ ଦୁହିଁଙ୍କର ମେଳ, ସେ ସ୍ଥଳରେ ବଙ୍ଗଳା କାହିଁକି ଓଡ଼ିଆ ହୋଇନାହିଁ ଏବଂ ଯେଉଁ ସ୍ଥଳରେ ଅମେଳ, ସେ ସ୍ଥଳରେ ବଙ୍ଗଳା କାହିଁକି ଓଡ଼ିଆରେ ଅପଭ୍ରଂଶ ହୋଇନାହିଁ? ଏହି ଅପଭ୍ରଂଶ ଶବ୍ଦହିଁ ମହା-ଅନର୍ଥକର। କିଏ କାହାର ଅପଭ୍ରଂଶ ବିଚାର କରିବା ଆବଶ୍ୟକ ଥିଲା।

'ବସ୍ତୁତଃ ଓଡ଼ିଆ ବଙ୍ଗଳାର ଅପଭ୍ରଂଶ ନୁହେଁ ଏବଂ ବଙ୍ଗଳା ମଧ୍ୟ ଓଡ଼ିଆର ଅପଭ୍ରଂଶ ନୁହେଁ। ବଙ୍ଗଳା, ଓଡ଼ିଆ, ଆସାମୀ ଏକସୂତ୍ରରୁ ସମୁତ୍ପନ୍ନ, ଏକ ବୃକ୍ଷର ଭିନ୍ନ ଭିନ୍ନ ଶାଖା ବା ଏକ ପ୍ରସୂତିର ଭିନ୍ନ ଭିନ୍ନ ସନ୍ତାନ। ମୂଳ ବୃକ୍ଷ କାଳକ୍ରମେ ଲୋପ ପାଇ ଯାଇଅଛି। ଶାଖାମାନେ ଆପଣା ଆପଣାର ଅନ୍ତର୍ନିହିତ ଶକ୍ତି ପ୍ରଭାବରେ ପରସ୍ପର ନିରପେକ୍ଷ ହୋଇ ଜୀବନ ଧାରଣ

କରୁଛନ୍ତି। ଏମାନଙ୍କୁ ବଳପୂର୍ବକ ଏକ ଶରୀରରେ ପରିଣତ କରିବାକୁ ଚେଷ୍ଟା କଲେ ବ୍ୟର୍ଥ ପ୍ରଯତ୍ନ ହେବ। ଯେଉଁ ସ୍ରୋତ ଦ୍ୱିଧାରା ଭାବରେ ପ୍ରବାହିତ ହେଉଛି, ତାହା ଆଉ ମିଳିବାର ନୁହେଁ। ଏତେବେଳେ କାହାକୁ ଅଦାଲତ ଏବଂ ବିଦ୍ୟାଳୟ ସମୂହରୁ ଦୂରୀଭୂତ କଲେ ଲୋପ ପାଇବ ନାହିଁ। ଭିନ୍ନଭିନ୍ନ ଦେଶୀୟ ଲୋକଙ୍କ ମିଳନ ଅଭାବରୁ ଭାଷା ଅଲଗା ହୋଇଥାଏ। ଭିନ୍ନ ରାଜ୍ୟାଧିକାର ଓ ପ୍ରାକୃତିକ ଅବସ୍ଥା ହେଲେ ଜନସାଧାରଣଙ୍କ ମନୋବୃତ୍ତି ଚାଳନାର ପ୍ରଣାଳୀ ମଧ୍ୟ ଭିନ୍ନ ହୋଇପଡ଼େ। ଉଭୟ ଦେଶର ଭାବ ପୃଥକ ହୋଇଥାଏ ଏବଂ ନୂତନ କାବ୍ୟଗ୍ରନ୍ଥାଦିର ପ୍ରଚାର ହେଉଥାଏ। ବର୍ତ୍ତମାନ ପରିସ୍ଥିତିରେ ଏକଭାଷା ବଳପୂର୍ବକ ଅନ୍ୟ ଭାଷା ଉପରେ ଲଦିଦେବା ସମ୍ଭବ ନୁହେଁ।'

ଭୂଦେବବାବୁଙ୍କର ଏହି ନିରପେକ୍ଷ ମତ ପ୍ରତି ଉଭୟ ଶିକ୍ଷିତ ସାଧାରଣ ଲୋକ ଏବଂ ସରକାରଙ୍କର ଆସ୍ଥା ପ୍ରକାଶ ପାଇଥିଲା। ଗୌରୀଶଙ୍କର ଭୂଦେବବାବୁଙ୍କୁ ଧନ୍ୟବାଦ ଦେଇ ଓଡ଼ିଶାର ଜନସାଧାରଣଙ୍କୁ ଜଣାଇଦେବାପାଇଁ ତାଙ୍କ ନିରପେକ୍ଷ ମତକୁ ଟିପ୍ପଣୀ ସହିତ ଦୀପିକାରେ ପ୍ରଚାର କରିଥିଲେ। କଲିକତାର ପାଦ୍ରିସାହେବ ଏବଂ ଇଂରାଜୀ ପଣ୍ଡିତମାନେ ମଧ୍ୟ ସରକାରଙ୍କ କାର୍ଯ୍ୟରେ ଅନୁକୂଳ ମତ ପ୍ରକାଶ କରିଥିଲେ। ସେମାନଙ୍କଦ୍ୱାରା ପ୍ରକାଶିତ ହେଉଥିବା 'କଲିକତା ରିଭ୍ୟୁ'ର ସମ୍ପାଦକୀୟରେ ସେ ସମୟରେ ପ୍ରକାଶିତ ହୋଇଥିଲା – 'କାନ୍ତିବାବୁ ଓଡ଼ିଆଭାଷା ନଥିବା ଏବଂ ତାହା ବଙ୍ଗଳା ଭାଷାର ଅପଭ୍ରଂଶ ମାତ୍ର ଥିବାର ପ୍ରମାଣ କରିବାକୁ ଚେଷ୍ଟା କରିଛନ୍ତି। କିନ୍ତୁ ଆମ୍ଭମାନଙ୍କ ବିବେଚନାରେ ସେ କୃତକାର୍ଯ୍ୟ ହୋଇନାହାନ୍ତି। ତାଙ୍କ ମତ ସମର୍ଥନ କରିବାପାଇଁ ସେ ଗୋଟିଏ ମାତ୍ର ହେତୁ ପ୍ରଦର୍ଶନ କରିଛନ୍ତି– ତାହା ଏହି ଯେ ଅନେକ ବଙ୍ଗଳା ଓ ଓଡ଼ିଆ ଶବ୍ଦ ଏକାପରି। ମାତ୍ର ତାହା ବଙ୍ଗଳା ଓ ଗୁଜରାଟୀ ପକ୍ଷରେ ମଧ୍ୟ କୁହାଯାଇପାରେ। ଏଥିଯୋଗୁଁ କ'ଣ କେହି ବଙ୍ଗଳା ଓ ଗୁଜରାଟୀକୁ ଏକ ବୋଲି ଅନୁମାନ କରନ୍ତି? ପ୍ରକୃତ କଥା ଏହି ଯେ ଓଡ଼ିଆ, ବଙ୍ଗଳା, ଗୁଜରାଟୀ ଏବଂ ଅନ୍ୟ ଭାଷାମାନେ ସଂସ୍କୃତରୁ ଉଦ୍‌ଭୂତ ହୋଇଥିବାରୁ ସେମାନଙ୍କ ମଧ୍ୟରେ ସୌସାଦୃଶ୍ୟ ଅଛି। ଓଡ଼ିଆ ବଙ୍ଗଳାଭାଷାର ଅପଭ୍ରଂଶ ନୁହେଁ। ସରକାର ଓଡ଼ିଆକୁ ଅଦାଲତ-ସମୂହର ଭାଷା କରିବାରେ ଯଥାର୍ଥ ବିଚାର କରିଛନ୍ତି। ଓଡ଼ିଶାର ତିନିକୋଟି ଲୋକ କେବଳ ଏହି ଭାଷାରେ କଥାବାର୍ତ୍ତା କରନ୍ତି। ଏ ଭାଷାରେ ପୂର୍ବରୁ ଅନେକ ସାହିତ୍ୟ ଗ୍ରନ୍ଥ ରଚିତ ହୋଇଛି ଏବଂ ତାହା ଦିନକୁ ଦିନ ବୃଦ୍ଧି ପାଉଛି। ଅତଏବ ଓଡ଼ିଆ ଲୋକଙ୍କୁ ବଳପୂର୍ବକ ବଙ୍ଗଳା ଶିକ୍ଷା ଦେଇଥିଲେ ସରକାର ଅନ୍ୟାୟ କରିଥାନ୍ତେ।'

ଏହିସବୁ ମତ ପରିପ୍ରେକ୍ଷୀରେ ସେ ବର୍ଷ ଶେଷବେଳକୁ ଦୁଇବର୍ଷର ବିଦ୍ୱେଷାନଳ ନିର୍ବାପିତ ହେବାକୁ ଲାଗିଲା ଏବଂ ଗୌରୀଶଙ୍କର ତାଙ୍କର ସମର୍ଥକ ଚିତ୍ରାନନ୍ଦ, ନନ୍ଦକିଶୋର, ଜଗମୋହନ, ଫକୀରମୋହନ ଏବଂ ବିଚ୍ଛନ୍ଦବାବୁ ପ୍ରଭୃତିଙ୍କ ସହ ଏ ଭାଷା-ସଂଗ୍ରାମରେ ଜୟଲାଭ କରିଥିଲେ। ତାହାପରେ କମିସନର୍ ରେଭେନ୍‌ସା ସାହେବ ଓଡ଼ିଆଭାଷାର ଉନ୍ନତି ପାଇଁ ଅଧିକ ଯତ୍ନ କରିଥିଲେ ଏବଂ ଶିକ୍ଷାବିଭାଗର ଡାଇରେକ୍ଟର୍ ସରକାରୀ ଖର୍ଚ୍ଚରେ ଓଡ଼ିଆ ପାଠ୍ୟପୁସ୍ତକ ପ୍ରକାଶ ପାଇଁ ପୁନଃ ପୁନଃ ଘୋଷଣା କରିଥିଲେ। ଓଡ଼ିଶାର ଶିକ୍ଷା ବିଭାଗର ତତ୍ତ୍ୱାବଧାନ ପାଇଁ ଜଣେ ଜଏଣ୍ଟ ଇନସ୍‌ପେକ୍ଟର ନୂତନରୂପେ ନିଯୁକ୍ତ ହୋଇଥିଲେ। ୧୮୭୩ ମସିହାରେ ନନ୍ଦକିଶୋର ଦାସ ପ୍ରଥମେ ସେ ପଦରେ ଅଧିଷ୍ଠିତ ହୋଇଥିଲେ। ଉତ୍କଳ-ବିରୋଧୀ ଅଫିସରମାନଙ୍କର ସ୍ଥାନାନ୍ତର ହୋଇଥିଲା। ରାଧାନାଥ ରାୟ ଡେପୁଟି ଇନସ୍‌ପେକ୍ଟର ରୂପେ ନିଯୁକ୍ତ ହୋଇଥିଲେ। ସେ ନିଜେ ଓଡ଼ିଆରେ ପାଠ୍ୟପୁସ୍ତକ ଲେଖୁଥିଲେ ଏବଂ ଅନ୍ୟମାନଙ୍କୁ ଲେଖିବାକୁ ଉତ୍ସାହିତ କରୁଥିଲେ। ସୁତରାଂ ୧୮୭୩ ମସିହାରୁ ଭାଷା-ଦ୍ୱନ୍ଦର ସଂପୂର୍ଣ୍ଣ ସମାଧାନ ହେଲା ଏବଂ ଆଧୁନିକ ଓଡ଼ିଆ ଭାଷାର ଉନ୍ନତି ଆରମ୍ଭ ହେଲା। ୧୮୭୦ଠାରୁ ୧୮୮୦ ମସିହା ମଧ୍ୟରେ ରାଧାନାଥ, ମଧୁସୂଦନ, ଫକୀରମୋହନ, ପ୍ୟାରୀମୋହନ, ଗୌରୀଶଙ୍କର ଓ ରାମଶଙ୍କର ପ୍ରମୁଖ ଓଡ଼ିଆଭାଷାର ଉନ୍ନତି କରିବାରେ ଅଗ୍ରଣୀ ଥିଲେ।

## ପାଠ୍ୟପୁସ୍ତକ ନିର୍ବାଚନ –

ସରକାରଙ୍କ ଉତ୍ସାହଦାନ ଫଳରେ ଅନେକ ଶିକ୍ଷିତ ଯୁବକ ବିଭିନ୍ନ ବିଷୟରେ ଓଡ଼ିଆରେ ପାଠ୍ୟପୁସ୍ତକ ଲେଖିଲେ। ସେଗୁଡ଼ିକ ବିକଳ୍ପ ପାଠ୍ୟପୁସ୍ତକରୂପେ ବିବେଚିତ ହୋଇ ପ୍ରତ୍ୟେକ ବିଷୟରେ ଅନେକଗୁଡ଼ିଏ ପୁସ୍ତକ ସ୍କୁଲମାନଙ୍କରେ ପଢ଼ାହେବା ପାଇଁ ନିର୍ବାଚିତ ହେଉଥିଲା। ପ୍ରତି ବିଷୟରେ ବହୁସଂଖ୍ୟକ ପୁସ୍ତକ ନିର୍ବାଚିତ ହେଉଥିବାରୁ ଶିକ୍ଷା ବିଭାଗରେ ଯେଉଁମାନଙ୍କର ପ୍ରଭାବ ଓ ପ୍ରତିପତ୍ତି ଥିଲା ସେମାନଙ୍କର ପୁସ୍ତକ ଅଧିକ ପ୍ରାଧାନ୍ୟ ଓ ପ୍ରଚାର ଲାଭ କରିଥିଲା। ଏଥିରେ ଅନ୍ୟ ଲେଖକମାନେ କ୍ଷୁଣ୍ଣ ହୋଇ ପୁସ୍ତକ ନିର୍ବାଚନ କମିଟି ଏବଂ ଶିକ୍ଷା ବିଭାଗର କର୍ତ୍ତୃପକ୍ଷଙ୍କ କାର୍ଯ୍ୟର ତୀବ୍ର ସମାଲୋଚନା କଲେ। ଶିକ୍ଷା ବିଭାଗର ଲୋକମାନେ ସାଧାରଣତଃ ଛାତ୍ରବୃତ୍ତି ପରୀକ୍ଷାରେ ପରୀକ୍ଷକ ନିଯୁକ୍ତ ହେଉଥିବାରୁ ସେମାନଙ୍କ ଦ୍ୱାରା ଲିଖିତ ପୁସ୍ତକ ପ୍ରଚାରରେ ଅଧିକ ସୁବିଧା ପାଉଥିଲା। ଏ ପ୍ରକାର ଅବିଚାର ଦେଖି, ଗୌରୀଶଙ୍କର ଦୀପିକାରେ ତା ବିରୁଦ୍ଧରେ ଆନ୍ଦୋଳନ ଆରମ୍ଭ କରିଥିଲେ। ସେତେବେଳେ ବାଙ୍କୀ ପାଟପୁର ଗ୍ରାମର ଗୋବିନ୍ଦ ରଥ ନାମରେ ଜଣେ ପଣ୍ଡିତ ପାଠ୍ୟପୁସ୍ତକ ରଚନା ଓ ପ୍ରକାଶ

କରିବାରେ ଜଣେ ପ୍ରଧାନ ବ୍ୟକ୍ତି ଥିଲେ। ସେ ପ୍ରାୟ ଦୁଇଶହରୁ ଅଧିକ ପୁସ୍ତକ ପ୍ରକାଶ କରିଥିଲେ ଏବଂ ସରକାରଙ୍କଠାରୁ ଅନେକ ପୁରସ୍କାର ପାଇଥିଲେ। ସେ ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ସହିତ ମିଶି 'ଉତ୍କଳପୁତ୍ର' ନାମରେ ଗୋଟିଏ ପତ୍ରିକା ସମ୍ପାଦନ କରୁଥିଲେ ଏବଂ ପ୍ୟାରୀମୋହନ ଏକାଡେମୀ ପ୍ରତିଷ୍ଠାରେ ତାଙ୍କୁ ବିଶେଷ ସାହାଯ୍ୟ କରୁଥିଲେ। ସେ ବିଭିନ୍ନ ପାଠ୍ୟପୁସ୍ତକ ରଚନା ଓ ପ୍ରକାଶନରେ ଗୌରୀଶଙ୍କରଙ୍କର ଜଣେ ପ୍ରଧାନ ସହକର୍ମୀ ଥିଲେ। ସେ ଏହି ପାଠ୍ୟପୁସ୍ତକ ନିର୍ବାଚନ ବିଷୟକ ଆନ୍ଦୋଳନରେ ଗୌରୀଶଙ୍କରଙ୍କର ଜଣେ ପ୍ରଧାନ ସହାୟକ ଥିଲେ।

ଏହି ଆନ୍ଦୋଳନ ପ୍ରାୟ ପାଞ୍ଚ-ଛଅ ବର୍ଷ ଚାଲିଥିଲା ଏବଂ ଏ ବିଷୟରେ ଦୀପିକା, ଉତ୍କଳ-ହିତୈଷିଣୀ, ସମ୍ବାଦ-ବାହିକା ଏବଂ ସଂସ୍କାରକ ପ୍ରଭୃତି ପତ୍ରିକାରେ ବହୁ ବାଦାନୁବାଦ ପ୍ରକାଶ ପାଇଥିଲା। ଗୋବିନ୍ଦ ରଥ, ଜଗମୋହନ ଲାଲ୍, ଦୀନ ନାଥ ବନ୍ଦୋପାଧ୍ୟାୟ ପ୍ରଭୃତି ଗୌରୀଶଙ୍କରଙ୍କୁ ସମର୍ଥନ କରୁଥିଲେ। ଶିକ୍ଷା ବିଭାଗର କର୍ମଚାରୀ ଏବଂ ସେମାନଙ୍କ ସହ ସଂପୃକ୍ତ ଲୋକେ ସେମାନଙ୍କୁ ବିରୋଧ କରୁଥିଲେ। ଉଭୟ ଦଳ ଅନ୍ୟାନ୍ୟ ଦଳର ପୁସ୍ତକମାନଙ୍କରେ ଦୋଷ ଦେଖାଇବା ଫଳରେ ଉଭୟ ପକ୍ଷର କେତେକ ପୁସ୍ତକ ପାଠ୍ୟତାଲିକାରୁ ଅନ୍ତରିତ ହୋଇଥିଲା। ଅଶ୍ଳୀଳତା ଆଳରେ ମଧ ଅନେକ ପ୍ରାଚୀନ ସାହିତ୍ୟପୁସ୍ତକ ବିଦ୍ୟାଳୟ ପାଠ୍ୟ ତାଲିକାରେ ସ୍ଥାନ ପାଇ ନଥିଲା। ଗୌରୀଶଙ୍କରଙ୍କ ପ୍ରକାଶିତ 'ବିଚିତ୍ର ରାମାୟଣ' ଏବଂ ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ଲିଖିତ 'ଓଡ଼ିଶା ଇତିହାସ' ତାଲିକାରୁ ବାଦ୍ ପଡ଼ିଥିଲା। ଗୌରୀଶଙ୍କର ବାଲ୍ୟକାଳରୁ ଓଡ଼ିଶାର ପ୍ରାଚୀନ ସଙ୍ଗୀତମାନଙ୍କୁ ଅତି ଭଲପାଉଥିଲେ ଏବଂ ଯୌବନରୁ ବୃଦ୍ଧ ବୟସ ପର୍ଯ୍ୟନ୍ତ ଓଡ଼ିଶାର ପ୍ରାଚୀନ ସଙ୍ଗୀତ ଆଲୋଚନା ପ୍ରତି ଆକୃଷ୍ଟ ହୋଇଥିଲେ। ସେ ନିଜେ ଗାଇବା ଏବଂ ବଜାଇବା ଜାଣିଥିଲେ ଏବଂ ସଙ୍ଗୀତଜ୍ଞ ଓ ଯାତ୍ରାଦଳ ପ୍ରଭୃତିଙ୍କୁ ଅର୍ଥ ସାହାଯ୍ୟ ଦେଇ ଉତ୍ସାହିତ କରୁଥିଲେ। ଉତ୍କଳର ପ୍ରାଚୀନ ସଙ୍ଗୀତ ମାଧ୍ୟମରେ ସେ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ପ୍ରବେଶ କରିଥିଲେ ଏବଂ ପ୍ରାଚୀନ ସାହିତ୍ୟ ପ୍ରଚାର ସପକ୍ଷରେ ଆଜୀବନ ଯତ୍ନ କରିଥିଲେ। ପ୍ରାଚୀନ ସାହିତ୍ୟ ବହିସବୁ ସ୍କୁଲ ପାଠ୍ୟପୁସ୍ତକ ତାଲିକାରେ ସ୍ଥାନ ପାଇ ନ ଥିବାରୁ ସେ ଅତ୍ୟନ୍ତ କ୍ଷୁବ୍ଧ ହୋଇଥିଲେ। ତାହା ବିରୁଦ୍ଧରେ ବରାବର ଦୀପିକାରେ ଲେଖୁଥିଲେ। ପରେ ଓଡ଼ିଶାର ପ୍ରାଚୀନ ସାହିତ୍ୟର ଉପାଦେୟତା ଚର୍ଚ୍ଚା କରିବାକୁ 'ଇନ୍ଦ୍ରଧନୁ' ନାମରେ ଗୋଟିଏ ପତ୍ରିକା ବାହାରିଲା। ସେଥିରେ ଗୋପାଳବଲ୍ଲଭ ଦାସ, ରାମଶଙ୍କର ରାୟ, ଦାମୋଦର ପଟ୍ଟନାୟକ, ଦାମୋଦର ଦାସ ପ୍ରଭୃତି ବହୁ ଲେଖକ ଭଞ୍ଜ-କାବ୍ୟମାନଙ୍କର ପ୍ରଶଂସା କରି ଏବଂ ରାଧାନାଥ ରାୟଙ୍କ

କାବ୍ୟମାନଙ୍କର ସମାଲୋଚନା କରି ଧାରାବାହିତରୂପେ ପ୍ରବନ୍ଧମାନ ଲେଖୁଥିଲେ। ଇନ୍ଦ୍ରଧନୁ ବିରୁଦ୍ଧରେ ବାମଣ୍ଡାରୁ 'ବିଜୁଳି' ନାମରେ ଗୋଟିଏ ପତ୍ରିକା ପ୍ରକାଶ ପାଇଥିଲା। ସେଥିରେ ରାଧାନାଥ ରାୟଙ୍କ କାବ୍ୟମାନଙ୍କର ପ୍ରଶଂସା ଏବଂ ଭଞ୍ଜସାହିତ୍ୟର ସମାଲୋଚନାସବୁ ବାହାରୁଥିଲା।

**ଉତ୍କଳସଭା –**

ପୂର୍ବରୁ ସୂଚନା ଦିଆଯାଇଛି ଯେ ଦେଶ ଓ ସମାଜର ସେବାପାଇଁ ଗୌରୀଶଙ୍କର ପ୍ରଧାନତଃ ଦୁଇଗୋଟି ସଂଗଠନ ବ୍ୟବହାର କରୁଥିଲେ। ସେ ଦୁଇଗୋଟି ହେଲା– 'ଉତ୍କଳ ଦୀପିକା' ସଂବାଦପତ୍ର ଏବଂ 'ଉତ୍କଳସଭା' ନାମରେ ଗୋଟିଏ ପବ୍ଲିକ୍ ଆସୋସିଏସନ୍। ୧୮୭୦ ମସିହା ପୂର୍ବରୁ କଟକରେ 'ଉତ୍କଳୋଲ୍ଲାସିନୀ' ଏବଂ 'କଟକ ସୋସାଇଟି' ନାମରେ ଦୁଇଟି ସମିତି ଥିଲା। କଟକ ସୋସାଇଟି ପ୍ରଧାନତଃ ବଙ୍ଗାଳୀମାନଙ୍କ ଦ୍ୱାରା ପରିଚାଳିତ ହେଉଥିଲା। ଏହି ଦୁଇଟି ସମିତି ପରସ୍ପରକୁ ବିରୋଧ କରୁଥିଲେ। ୧୮୭୦ ମସିହାର ଶେଷ ଭାଗରେ ଗୌରୀଶଙ୍କର ଉପରୋକ୍ତ ଦୁଇ ସମିତିକୁ ମିଶାଇଦେବାକୁ ଯତ୍ନ କରିଥିଲେ। ୧୮୭୧ ମସିହାରେ ଉଭୟ ସମିତିର ମିଳନ ହୋଇ 'ଓଡ଼ିଶା ସୋସାଇଟି' ଗଠିତ ହୋଇଥିଲା। ଗୌରୀଶଙ୍କର ତାହାର ପରିଚାଳକ ଥିଲେ। ମାତ୍ର ସେ ସମିତି ବିଶେଷ କାର୍ଯ୍ୟତତ୍ପର ନଥିଲା। ୧୮୮୨ ମସିହାରେ ଲର୍ଡ ରିପନ୍‌ଙ୍କ ସ୍ଥାନୀୟ ସ୍ୱାୟତ୍ତଶାସନ ଘୋଷଣା ପରେ ପରେ କଟକର ସବୁ ଶ୍ରେଣୀର ଲୋକ ଗୋଟିଏ ସମ୍ମିଳନୀରେ ଏକତ୍ରିତ ହୋଇଥିଲେ। ୧୮୮୨ ମସିହା ଅଗଷ୍ଟ ୧୬ ତାରିଖର ଏହି ସମ୍ମିଳନୀରେ ସ୍ଥାନୀୟ ସ୍ୱାୟତ୍ତଶାସନ ପ୍ରବର୍ତ୍ତନ ଏବଂ କଟକ ଜିଲ୍ଲା ଓ ସମଗ୍ର ଉତ୍କଳର ଉନ୍ନତି ଉଦ୍ଦେଶ୍ୟରେ 'ଉତ୍କଳସଭା' ନାମରେ ଗୋଟିଏ ସ୍ୱାଧୀନ ସଭା ନୂତନ ଭାବରେ ଗଠିତ ହୋଇଥିଲା। ଏହାର ଅନ୍ୟ ନାମ ଥିଲା 'ଓଡ଼ିଶା ଆସୋସିଏସନ୍'। ଗୌରୀଶଙ୍କର ଏବଂ ମଧୁସୂଦନ ଦାସ ଏହି ସଭାର ଗଠନର ପ୍ରଧାନ ଉଦ୍ୟୋକ୍ତା ଥିଲେ। ଭିଙ୍ଗାରପୁର ଜମିଦାର ଚୌଧୁରୀ କାଶୀନାଥ ଦାସ ପ୍ରଥମ ବାରବର୍ଷ ଏହି ସଭାର ସଭାପତି ଥିଲେ ଏବଂ ତା'ପରେ ମଧୁସୂଦନ ଦାସ ତାହାର ସଭାପତି ହୋଇଥିଲେ। ୧୮୮୨ ମସିହାରୁ ୧୯୦୫ ମସିହା, ଏ ସଭା ଶେଷ ହେବା ପର୍ଯ୍ୟନ୍ତ ଗୌରୀଶଙ୍କର ତାହାର ସଂପାଦକ ଓ ପରିଚାଳକ ଥିଲେ। ୧୯୦୩ ମସିହାରେ 'ଉତ୍କଳ ସମ୍ମିଳନୀ' ଗଠିତ ହେବା ପରେ ଏହି ସଭାର ପରିସମାପ୍ତି ଘଟିଥିଲା।

୧୮୮୨ରୁ ୧୯୦୫ ମସିହା ପର୍ଯ୍ୟନ୍ତ ଉତ୍କଳସଭା କଟକର ସବୁ ସଂପ୍ରଦାୟ ଲୋକଙ୍କର ଗୋଟିଏ ପ୍ରତିନିଧିମୂଳକ ସଂଗଠନ ଥିଲା। କଟକର ସବୁ ସଂପ୍ରଦାୟର

ଗଣ୍ୟମାନ୍ୟ ବ୍ୟକ୍ତି ଏବଂ ପଦସ୍ଥ ସରକାରୀ କର୍ମଚାରୀ ଏହି ସଭାର ସଭ୍ୟ ଥିଲେ। ଏହି ସଭାର ଅଧିବେଶନ ସବୁ ନିୟମିତ ଭାବରେ ବସୁଥିଲା ଏବଂ ସେଥିରେ ଓଡ଼ିଶାର ବିଭିନ୍ନ ସମସ୍ୟାମାନ ଆଲୋଚିତ ହୋଇ ପ୍ରସ୍ତାବମାନ ଗ୍ରହଣ କରାଯାଉଥିଲା। ସେ ପ୍ରସ୍ତାବସବୁ କାର୍ଯ୍ୟାନୁଷ୍ଠାନ ପାଇଁ ବଙ୍ଗ ସରକାର ଓ କେନ୍ଦ୍ର ସରକାରଙ୍କ ନିକଟକୁ ପଠାହେଉଥିଲା। ୧୮୮୨ ମସିହାରୁ ୧୯୦୫ ମସିହା ମଧ୍ୟରେ ଓଡ଼ିଶାର ବହୁ ସମସ୍ୟା ମଧ୍ୟରେ କଟକ ମ୍ୟୁନିସିପାଲିଟି ଗଠନ, ଚେୟାରମାନ୍ ଓ କମିସନର ନିର୍ବାଚନର ବ୍ୟବସ୍ଥା ଓ ଭୋଟରମାନଙ୍କର ଯୋଗ୍ୟତା ନିର୍ଦ୍ଧେଶ, ମଫସଲ ମ୍ୟୁନିସିପାଲିଟିମାନଙ୍କର ନିର୍ବାଚନର ବ୍ୟବସ୍ଥା, ଜିଲ୍ଲାବୋର୍ଡ଼ ଓ ଲୋକାଲ୍ ବୋର୍ଡ଼ ନିର୍ବାଚନ ପଦ୍ଧତି, ବଙ୍ଗୀୟ ପ୍ରଜାସ୍ୱତ୍ୱ ଆଇନର ପାଣ୍ଡୁଲିପିର ବିଚାର, ଓଡ଼ିଶାରେ ଜଳସେଚନ ବ୍ୟବସ୍ଥା, ଜଗନ୍ନାଥ ମନ୍ଦିର ପରିଚାଳନାରେ ସରକାରୀ ହସ୍ତକ୍ଷେପର ବିରୋଧ (୧୮୮୬), କଟକରୁ ଚାନ୍ଦବାଲି ଏବଂ ବଡିଘର ପର୍ଯ୍ୟନ୍ତ ଷ୍ଟିମର୍ ଚଳାଇବା ବ୍ୟବସ୍ଥା, ୧୮୯୫ରେ ମଧ୍ୟପ୍ରଦେଶ ସରକାର ସମ୍ବଲପୁର ଜିଲ୍ଲାର କଚେରିସମୂହରୁ ଓଡ଼ିଆଭାଷା ଉଠାଇଦେବାର ପ୍ରତିବାଦ ଏବଂ ଆଦେଶ ପ୍ରତ୍ୟାହାର ପାଇଁ ପ୍ରସ୍ତାବ, ଗଞ୍ଜାମ, ମଧ୍ୟପ୍ରଦେଶ, ଛୋଟନାଗପୁର ଓ ବଙ୍ଗଳାରେ ଥିବା ଓଡ଼ିଆ ଭାଷାଭାଷୀ ଅଞ୍ଚଳ ମିଶାଇ ଜଣେ ଚିଫ୍ କମିସନରଙ୍କ ଅଧୀନରେ ରଖି, କଲିକତା ହାଇକୋର୍ଟ ଅଧୀନରେ ବିଚାର ଅଦାଲତ ଏବଂ କଲିକତା ବିଶ୍ୱବିଦ୍ୟାଳୟ ଅଧୀନରେ ଶିକ୍ଷା ବ୍ୟାପାର ରଖିବାର ବ୍ୟବସ୍ଥା ପ୍ରଭୃତି ଓଡ଼ିଶାର ପ୍ରଧାନ ସମସ୍ୟାମାନ ଆଲୋଚିତ ହୋଇ ପ୍ରସ୍ତାବମାନ ଗୃହୀତ ହୋଇଥିଲା ଏବଂ ଆବଶ୍ୟକ ପଦକ୍ଷେପମାନ ନିଆଯାଇଥିଲା। ୧୮୭୦ ମସିହାରେ ସୁରେନ୍ଦ୍ର ନାଥ ବାନାର୍ଜି 'ଭାରତ ସଭା' ଗଠନ କଲାବେଳେ ଉତ୍କଳ ସୋସାଇଟିକୁ ତାହାର ଶାଖା କରିବାକୁ ଗୌରୀଶଙ୍କର ପ୍ରସ୍ତାବ କରିଥିଲେ। ୧୮୮୫ ମସିହାରେ ଭାରତୀୟ ଜାତୀୟ କଂଗ୍ରେସ ଗଠିତ ହେବା ପରେ ପ୍ରତିବର୍ଷ ଉତ୍କଳସଭା ତରଫରୁ ପ୍ରତିନିଧି ତାର ଅଧିବେଶନମାନଙ୍କୁ ପଠାହେଉଥିଲା। ଗୌରୀଶଙ୍କର, ମଧୁସୂଦନ ପ୍ରଭୃତି ନେତାମାନେ ଉତ୍କଳସଭା ପକ୍ଷରୁ ଭାରତୀୟ ଜାତୀୟ କଂଗ୍ରେସ ଅଧିବେଶନମାନଙ୍କରେ ଯୋଗଦେଉଥିଲେ। ୧୯୧୫ ମସିହାରେ ବୃଦ୍ଧ ଅବସ୍ଥାରେ ଗୌରୀଶଙ୍କର କଂଗ୍ରେସର କରାଚି ଅଧିବେଶନରେ ଯୋଗଦେଇଥିଲେ। ଗୋଷ୍ଠୀଠାରୁ ଜାତୀୟ ସ୍ତର ପର୍ଯ୍ୟନ୍ତ ଉନ୍ନତିପାଇଁ ବିଭିନ୍ନ ସଂଗଠନ ପରସ୍ପରର ବିରୋଧୀ ନହୋଇ ପରିପୂରକ ବୋଲି ତାଙ୍କର ମତ ଥିଲା। କାୟସ୍ଥ ସମିତି, ଉତ୍କଳସଭା, ଭାରତୀୟ ଜାତୀୟ କଂଗ୍ରେସ ପ୍ରଭୃତି ପରସ୍ପରର ·ପରିପୂରକ ବୋଲି ଭାବି ସେ ବିଭିନ୍ନ ସମିତିମାନ ଗଢ଼ିଥିଲେ ଏବଂ ସେମାନଙ୍କର ଉନ୍ନତିପାଇଁ କାର୍ଯ୍ୟ କରୁଥିଲେ।

## ସମାଜସଂସ୍କାର ଓ ସମାଜସେବା –

ଗୌରୀଶଙ୍କର ଗୋଟିଏ ରକ୍ଷଣଶୀଳ ହିନ୍ଦୁ ପରିବାରରେ ଜନ୍ମ ହୋଇଥିଲେ। ଊନବିଂଶ ଶତାବ୍ଦୀର ପ୍ରଥମଭାଗବେଳକୁ ହିନ୍ଦୁସମାଜ ବହୁପ୍ରକାର କୁସଂସ୍କାରରେ ପୂର୍ଣ୍ଣ ହୋଇଯାଇଥିଲା। ପିତୁଳାପୂଜା ଓ ଦୃଢ଼ ଜାତିଭେଦ ସହିତ କାଳକ୍ରମେ ବହୁ ଅନ୍ଧବିଶ୍ୱାସ ଓ କୁ-ପ୍ରଥା ହିନ୍ଦୁ ସମାଜ ମଧ୍ୟରେ ପ୍ରବେଶ କରିଥିଲା। ବ୍ରିଟିଶ୍ ଶାସନରେ ଆଧୁନିକ ଶିକ୍ଷା ଓ ଖ୍ରୀଷ୍ଟଧର୍ମ ପ୍ରଚାର ସହିତ ବହୁ ଶିକ୍ଷିତ ହିନ୍ଦୁ ପରିବାରରେ ପିତୁଳାପୂଜା ଓ ଯୁକ୍ତିସମ୍ମତ ନଥିବା ଅନେକ କୁପ୍ରଥା ଉପରେ ଅବିଶ୍ୱାସ ଜାତ ହୋଇଥିଲା। ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ବଙ୍ଗଳାର ରାଜା ରାମମୋହନ ରାୟଙ୍କ ଦ୍ୱାରା ବ୍ରାହ୍ମଧର୍ମ ପ୍ରଥମେ ଆରମ୍ଭ ହୋଇଥିଲା। ସେ ସମୟରେ ବଙ୍ଗଳାରେ ବହୁ ଶିକ୍ଷିତ ଯୁବକ ଖ୍ରୀଷ୍ଟଧର୍ମ କିମ୍ବା ବ୍ରାହ୍ମଧର୍ମ ପ୍ରତି ଆକୃଷ୍ଟ ହୋଇଥିଲେ। ଏମାନେ ରକ୍ଷଣଶୀଳ ହିନ୍ଦୁ ସମାଜର ବହୁ ଅନ୍ଧବିଶ୍ୱାସ ଓ କୁ-ପ୍ରଥା ବିରୋଧରେ ସଂଗ୍ରାମ କରୁଥିଲେ।

ନ'ଅଙ୍କ ଦୁର୍ଭିକ୍ଷ ପରେ ଓଡ଼ିଶାରେ ବ୍ରାହ୍ମଧର୍ମ ଆରମ୍ଭ ହୋଇଥିଲା। ମହର୍ଷି ଦେବେନ୍ଦ୍ରନାଥ ଠାକୁର କଟକରେ ପ୍ରଥମେ ବ୍ରାହ୍ମସମାଜ ପ୍ରତିଷ୍ଠା କରିଥିଲେ। ତାହା କଲିକତା ବ୍ରାହ୍ମସମାଜର ଗୋଟିଏ ଶାଖାରୂପେ ପରିଗଣିତ ହେଉଥିଲା। ସେ ସମୟରେ ଗୌରୀଶଙ୍କର ରାୟ, ବିଚିତ୍ରାନନ୍ଦ ଦାସ, ଜଗନ୍ମୋହନ ରାୟ ପ୍ରଭୃତି ସଂସ୍କାରପ୍ରେମୀ ଶିକ୍ଷିତ ଯୁବକ ସେଥିପ୍ରତି ଆକୃଷ୍ଟ ହୋଇଥିଲେ। ପ୍ରଥମେ ଚାନ୍ଦିନୀଚଉକ ଡାକଘର ପାଖରେ ଗୋଟିଏ ପୁରୁଣା ଘରେ ପ୍ରାର୍ଥନା ସଭା ଅନୁଷ୍ଠିତ ହେଉଥିଲା। ପରେ ଜଗନ୍ମୋହନ ରାୟଙ୍କ ଉଦ୍ୟମରେ ଗଙ୍ଗାମନ୍ଦିର ପୁଷ୍କରଣୀକୂଳରେ ଗୋଟିଏ ବ୍ରାହ୍ମମନ୍ଦିର ନିର୍ମିତ ହୋଇଥିଲା। ମହର୍ଷି ଦେବେନ୍ଦ୍ରନାଥ ସେଥିପାଇଁ ଅର୍ଥ ସାହାଯ୍ୟ ଦେଇଥିଲେ ଏବଂ ଗୌରୀଶଙ୍କର ବ୍ରାହ୍ମସମାଜ କାର୍ଯ୍ୟରେ ଉତ୍ସାହର ସହିତ ଯୋଗଦେଇଥିଲେ।

ତାହା ପରେ କେଶବଚନ୍ଦ୍ର ସେନ୍‌ଙ୍କର ବ୍ରାହ୍ମସମାଜର ଏକ ଦଳ କଟକରେ କାର୍ଯ୍ୟ କରିଥିଲେ। ସେଥିରେ ମଧୁସୂଦନ ରାଓ, ପ୍ୟାରୀମୋହନ ଆଚାର୍ଯ୍ୟ ଏବଂ ବହୁ କଲେଜ ଛାତ୍ର ଯୋଗଦେଇଥିଲେ। ସେମାନଙ୍କୁ ମଧ୍ୟ ଉପରୋକ୍ତ ବ୍ରାହ୍ମମନ୍ଦିରରେ ସପ୍ତାହରେ ଏକଦିନ ପ୍ରାର୍ଥନା ସଭା କରିବାକୁ ଅନୁମତି ମିଳିଥିଲା। ପରେ ଜଗନ୍ମୋହନ ରାୟ ଗୋଟିଏ ଟ୍ରଷ୍ଟଡ଼ିଡ୍ କରି ଉଭୟ ଦଳଙ୍କ ହସ୍ତରେ ମନ୍ଦିରଟି ସମର୍ପଣ କରିଥିଲେ। ଜଗନ୍ମୋହନବାବୁ ଆଦି ବ୍ରାହ୍ମସମାଜର ଅଗ୍ରଣୀ ଥିଲେହେଁ ଗୌରୀଶଙ୍କରବାବୁ ତାହାର ପ୍ରଧାନ ଚାଳକ ଥିଲେ। ସେ ନିୟମିତ ଭାବରେ ସେ ସମାଜର ସାପ୍ତାହିକ ପ୍ରାର୍ଥନା ସଭାରେ ଯୋଗଦେଉଥିଲେ ଏବଂ ମନ୍ଦିରର ରକ୍ଷଣାବେକ୍ଷଣ ଓ ସାପ୍ତାହିକ ଉପାସନା ଖର୍ଚ୍ଚପାଇଁ ନିୟମିତ ଭାବରେ

ଅର୍ଥ ସାହାଯ୍ୟ କରୁଥିଲେ। ଅନ୍ୟ ଦଳର ଉତ୍ସବମାନଙ୍କରେ ମଧ୍ୟ ସେ ନିୟମିତ ଭାବରେ ଯୋଗ ଦେଉଥିଲେ। ମୃତ୍ୟୁ ପର୍ଯ୍ୟନ୍ତ ସେ କଟକ ବ୍ରାହ୍ମମନ୍ଦିରର ଟ୍ରଷ୍ଟୀ ଥିଲେ।

ସେ ବ୍ରାହ୍ମସମାଜର ରକ୍ଷଣଶୀଳ ଗୋଷ୍ଠୀର ଅନ୍ତର୍ଭୁକ୍ତ ଥିଲେ। ସୁତରାଂ ହିନ୍ଦୁସମାଜ ସହ ତାଙ୍କର କେବେ ବିଚ୍ଛେଦ ହୋଇନଥିଲା। ସେ ବ୍ରାହ୍ମଧର୍ମ ଓ ବ୍ରହ୍ମ-ଉପାସନାକୁ ହିନ୍ଦୁଧର୍ମର ସାର ଏବଂ ଶ୍ରେଷ୍ଠ ଅଙ୍ଗ ବୋଲି ମନେ କରୁଥିଲେ। ବ୍ରାହ୍ମ ହେଲେ ସୁଦ୍ଧା ନିଜ ଘରେ ସେ ଜଣେ ନୈଷ୍ଠିକ ହିନ୍ଦୁ ଭାବରେ ଜୀବନ ଯାପନ କରୁଥିଲେ। ଦୁର୍ଗାପୂଜା ଓ ଗଣେଶପୂଜା ସମୟରେ ନିଜର ପରିବାରର ଲୋକମାନଙ୍କୁ ପୂଜା କରିବାକୁ ଉତ୍ସାହିତ କରୁଥିଲେ। ପ୍ରତି ବର୍ଷ ଦୁର୍ଗାପୂଜା ସମୟରେ ନିଜ ଗ୍ରାମର ଲୋକମାନେ ଯେପରି ଗ୍ରାମକୁ ଯାଇ ଉତ୍ସବରେ ଯୋଗଦେଇ ପାରିବେ ତାହାର ବ୍ୟବସ୍ଥା କରୁଥିଲେ। ପୂଜା ସମୟରେ ନିଜେ ଉପବାସ ଆଦି କରି ପୂଜା-ଉପାସନାରେ ଯୋଗଦେଉଥିଲେ।

ତାଙ୍କର ପ୍ରକୃତ ମତ ଥିଲା, ହିନ୍ଦୁଧର୍ମର କୁସଂସ୍କାର ଦୂରୀକରଣ। ସବୁ ପ୍ରକାର ସଂସ୍କାର କାର୍ଯ୍ୟରେ ତାଙ୍କର ସହାନୁଭୂତି ଥିଲା। ସେ 'କାୟସ୍ଥ ସଭା'ର ବହୁବର୍ଷ ସଭାପତି ଥିଲେ। ୧୯୧୦ ମସିହାରେ କଟକ କାଠଗଡ଼ାସାହିରେ ନିଜ ହାତରୁ ୧୪,୦୦୦ ଟଙ୍କା ଦେଇ କାୟସ୍ଥ ଛାତ୍ରାବାସ ନିର୍ମାଣ କରାଇଥିଲେ ଏବଂ ବୋର୍ଡିଂର ସ୍ଥାୟିତ୍ୱ ପାଇଁ ସ୍ଥାୟୀ ବୃତ୍ତି ଖଞ୍ଜିଦେଇଥିଲେ। ୧୯୦୫ ମସିହାରେ ବଙ୍ଗଳାର କାୟସ୍ଥମାନେ ସେମାନଙ୍କର କ୍ଷତ୍ରିୟତ୍ୱ ପ୍ରତିପାଦନପାଇଁ ଆନ୍ଦୋଳନ କଲେ ଏବଂ ଉପବୀତ ଧାରଣ କଲେ। କଲିକତାର କେତେକ କାୟସ୍ଥ ନେତା କଟକ ଆସି ଗୌରୀଶଙ୍କରଙ୍କ ସାହାଯ୍ୟ ଲୋଡ଼ିଲେ। କଟକରେ ତାଙ୍କର ବଙ୍ଗୀୟ କାୟସ୍ଥମାନଙ୍କ ଉପରେ ବିଶେଷ ପ୍ରଭାବ ଥିଲା। ଗୌରୀଶଙ୍କର ନିଜେ ଉପବୀତ ଗ୍ରହଣ କରି ଅନ୍ୟମାନଙ୍କୁ ଉପବୀତ ଗ୍ରହଣ କରିବାକୁ ପ୍ରବର୍ତ୍ତାଇଲେ। ମଫସଲର ରକ୍ଷଣଶୀଳ କାୟସ୍ଥମାନେ ଉପବୀତ ଗ୍ରହଣ କରିବାକୁ ରାଜି ହେଉ ନଥିଲେ। ୧୯୦୮ ମସିହାରେ ଗୌରୀଶଙ୍କରଙ୍କ ମାତାଙ୍କର ଦେହାନ୍ତ ହେଲା। ସେଥିରେ ପୂର୍ବ କାୟସ୍ଥ ରୀତିରେ ଏକମାସ ଶୁଦ୍ଧିକ୍ରିୟା ପରିବର୍ତ୍ତେ କ୍ଷତ୍ରିୟ ରୀତିରେ ତେରଦିନ ଶୁଦ୍ଧିକ୍ରିୟା କରିବାକୁ ସଂକଳ୍ପ କରି ସେହି ଅନୁସାରେ କାର୍ଯ୍ୟ କଲେ। ସେଥିଯୋଗୁଁ ବହୁ ବାଦାନୁବାଦ ହେଲା। ରକ୍ଷଣଶୀଳ କାୟସ୍ଥମାନେ ଗୋଟିଏ ସଭା କରି ଗୌରୀଶଙ୍କରଙ୍କୁ ସମାଜଚ୍ୟୁତ କଲେ; ମାତ୍ର ଗୌରୀଶଙ୍କର ନିଜ ସଂକଳ୍ପରେ ଅଟଳ ରହିଥିଲେ ଏବଂ କାୟସ୍ଥ ସମାଜର ସଭାପତିରୂପେ କାର୍ଯ୍ୟ କରୁଥିଲେ। ବର୍ଷକ ପରେ କାୟସ୍ଥସଭା ତାଙ୍କର ସମାଜଚ୍ୟୁତିକୁ ରଦ୍ଦକରିଥିଲେ।

ସେ ସମୟରେ ନାରୀଶିକ୍ଷା ପାଇଁ ହିନ୍ଦୁସମାଜ ସଂପୂର୍ଣ୍ଣ ଉଦାସୀନ ଥିଲା।

ଗୌରୀଶଙ୍କର ତାହାର ବିରୋଧ କରୁଥିଲେ। ତାଙ୍କର ନାତୁଣୀ ଶୈଳବାଳା କିଶୋର ବୟସରେ ବିଧବା ହେବାରୁ ସେ ତାଙ୍କୁ ନିଜ ଘରକୁ ଆଣି ସ୍କୁଲରେ ପାଠ ପଢ଼ାଇଲେ। ସେତେବେଳେ ପୁଣି ସମାଜରେ ଦ୍ୱନ୍ଦ୍ୱ ଲାଗିଥିଲା; ମାତ୍ର ସେ ସେଥିପ୍ରତି କର୍ଣ୍ଣପାତ କଲେନାହିଁ। ୧୯୧୩ ମସିହାରେ ନିଜ ଗ୍ରାମ ଦୀକ୍ଷିତପଡ଼ାରେ ଗୋଟିଏ ବାଳିକା ବିଦ୍ୟାଳୟ ନିର୍ମାଣ କରାଇ ତାର ଗୃହନିର୍ମାଣ ଓ ସ୍ଥାୟିତ୍ୱ ପାଇଁ ସାତ ହଜାର ଟଙ୍କା ଦାନ କରିଥିଲେ।

ସମାଜ-ସଂସ୍କାର କାର୍ଯ୍ୟ ବ୍ୟତୀତ ଲୋକମାନଙ୍କର ସାମାଜିକ ଏବଂ ଆର୍ଥିକ ଉନ୍ନତି ପାଇଁ ସେ ସର୍ବଦା ଉଦ୍ୟମ କରିଥିଲେ ଏବଂ ସେଥିପାଇଁ ଅର୍ଥ ଦାନ କରୁଥିଲେ। ୧୯୦୯ ମସିହାରେ ୧୧,୦୦୦ ଟଙ୍କା ଦାନ ଦେଇ ସେ କଟକ ଟାଉନ୍ ହଲ୍ ନିର୍ମାଣ କରିଥିଲେ। ତାର ପରବର୍ଷ କାଠଗଡ଼ା ସାହିରେ ୧୪,୦୦୦ ଟଙ୍କା ଦେଇ କାୟସ୍ଥ ଛାତ୍ରାବାସ ନିର୍ମାଣ କରାଇଥିଲେ। ଦୀକ୍ଷିତପଡ଼ାରେ ୧୯୧୩ ମସିହାରେ ଉପରୋକ୍ତ ବାଳିକା ସ୍କୁଲ ନିର୍ମାଣ ବ୍ୟତୀତ ଗୋଟିଏ କବିରାଜୀ ଓ ଡାକ୍ତରୀ ଔଷଧାଳୟ ସ୍ଥାପନ କରିଥିଲେ ଏବଂ ତାର ସ୍ଥାୟିତ୍ୱ ପାଇଁ ବ୍ୟାଙ୍କ୍‌ରେ ଟଙ୍କା ଡିପୋଜିଟ୍ କରିଥିଲେ। ଏତଦ୍‌ବ୍ୟତୀତ ଗାଁରେ ଉନ୍ନତ କୃଷି ପ୍ରଣାଳୀ ପ୍ରଚଳନ, ସମବାୟ ସମିତି ସ୍ଥାପନ ଏବଂ ଜଳସେଚନ ଏବଂ ରାସ୍ତାଘାଟର ଉନ୍ନତି ପାଇଁ ଗାଁଲୋକମାନଙ୍କ ସହିତ କାର୍ଯ୍ୟ କରୁଥିଲେ ଏବଂ ସେମାନଙ୍କୁ ଅର୍ଥ ସାହାଯ୍ୟ କରୁଥିଲେ। ନିଜ ବଗିଚାରେ ନୂତନ କୃଷି ପ୍ରଣାଳୀରେ କୃଷିଜାତ ପଦାର୍ଥ ଉତ୍ପାଦନ କରି କୃଷି-ପ୍ରଦର୍ଶନୀମାନଙ୍କୁ ପଠାଉଥିଲେ। ସ୍ଥୂଳତଃ ଗ୍ରାମ ଓ ସହରବାସୀଙ୍କ ସାମାଜିକ ଏବଂ ଆର୍ଥିକ ଉନ୍ନତି ପାଇଁ ସେ ସର୍ବଦା ଯତ୍ନବାନ୍ ଥିଲେ ଏବଂ ସେଥିପାଇଁ ଅର୍ଥ ଦାନ କରୁଥିଲେ। ବହୁ ଛାତ୍ରଙ୍କୁ ଉଚ୍ଚଶିକ୍ଷା ପାଇଁ ସେ ଅର୍ଥ ସାହାଯ୍ୟ ଦେଉଥିଲେ ଏବଂ ନିଜେ ନିରାଡ଼ମ୍ବର ଓ ସରଳ ଜୀବନ ଯାପନ କରୁଥିଲେ।

## ପାରିବାରିକ ଜୀବନ ଓ ଶେଷଜୀବନ—

ପାରିବାରିକ ଜୀବନରେ ଗୌରୀଶଙ୍କର ବହୁ ଦୁଃଖର ସମ୍ମୁଖୀନ ହୋଇଥିଲେ। ୧୮୫୯ ମସିହାର ଶେଷଭାଗରେ ବାଲେଶ୍ୱରରୁ କଟକ ଫେରି ସେ ସରକାରୀ ଚାକିରି ଆରମ୍ଭ କରିଥିଲେ। ତା'ର ପରବର୍ଷ ତାଙ୍କର ପିତା ତାଙ୍କୁ ରଘୁନାଥପୁରର ମାଣିକରାମ ମିତ୍ରଙ୍କ କନ୍ୟା ସହିତ ବିବାହ କରାଇ ଦେଇଥିଲେ। ବିବାହର ଅଳ୍ପକାଳପରେ ପିତାଙ୍କର ଦେହାନ୍ତ ହେଲା ଏବଂ ଜ୍ୟେଷ୍ଠପୁତ୍ର ହିସାବରେ ପରିବାର ପରିଚାଳନାର ସମସ୍ତ ଦାୟିତ୍ୱ ତାଙ୍କ ଉପରେ ପଡ଼ିଲା। ତାଙ୍କର ତିନି ସାନଭାଇଙ୍କ ଶିକ୍ଷାଦାନ ପାଇଁ ସେ ବିଶେଷ ଯତ୍ନ କରିଥିଲେ। ତାଙ୍କ ତଳ ଭାଇ ଗଙ୍ଗାଶଙ୍କର

ଜଣେ ମେଧାବୀ ଛାତ୍ର ଥିଲେ। କିନ୍ତୁ ଅକାଳରେ ମାତ୍ର ଅଠର ବର୍ଷ ବୟସରେ ତାଙ୍କର ମୃତ୍ୟୁ ହୋଇଥିଲା। ତାଙ୍କ ପରଭାଇ ହରିଶଙ୍କର ବଡ଼ଭାଇଙ୍କୁ ସମସ୍ତ କାର୍ଯ୍ୟରେ ସାହାଯ୍ୟ କରୁଥିଲେ। ମାତ୍ର ୧୮୯୨ ମସିହାରେ ଦୁଇଟି ଶିଶୁ ପୁତ୍ରଙ୍କୁ ଛାଡ଼ି ତାଙ୍କର ଦେହାନ୍ତ ହୋଇଥିଲା। ୧୮୬୧ ମସିହାରେ ଗୌରୀଶଙ୍କରଙ୍କର ଗୋଟିଏ ପୁତ୍ର ଜନ୍ମ ହୋଇଥିଲା। ମାତ୍ର ସେ ପୁତ୍ର ଏଗାର ବର୍ଷ ବୟସରେ ମରିଯାଇଥିଲା। ତାହାପରେ ତାଙ୍କର ତିନିଗୋଟି କନ୍ୟା ସନ୍ତାନ ଜାତ ହୋଇଥିଲେ। ୧୮୭୫ ମସିହାରେ ଗୋଟିଏ ନବଜାତ ଶିଶୁପୁତ୍ର ସହ ତାଙ୍କ ପତ୍ନୀଙ୍କର ଦେହାନ୍ତ ହୋଇଥିଲା। ସେତେବେଳକୁ ଗୌରୀଶଙ୍କରଙ୍କୁ ମାତ୍ର ୩୭ ବର୍ଷ ବୟସ ହୋଇଥିଲା। ସେ ଆଉ ଥରେ ବିବାହ କରିବାକୁ ରାଜି ହେଲେ ନାହିଁ। ତାଙ୍କର କନିଷ୍ଠ ଭାଇ ରାମଶଙ୍କର ରାୟ ତାଙ୍କଠାରୁ ପ୍ରାୟ କୋଡ଼ିଏ ବର୍ଷ ସାନ ଥିଲେ। ସେ ଉଚ୍ଚଶିକ୍ଷା ପାଇ ଜଣେ ଆଇନ୍ ବ୍ୟବସାୟୀ ରୂପେ ଯଥେଷ୍ଟ ଉପାର୍ଜନ କରୁଥିଲେ ଏବଂ ବଡ଼ଭାଇଙ୍କଠାରୁ ପରିବାର-ପରିଚାଳନାର ଗୁରୁଦାୟିତ୍ୱ ବହନ କରିଥିଲେ। ରାମଶଙ୍କର ଜଣେ ସାହିତ୍ୟିକ ଏବଂ ନାଟ୍ୟକାରରୂପେ ଖ୍ୟାତି ଅର୍ଜନ କରିଥିଲେ ଏବଂ ସେ ଗୌରୀଶଙ୍କରଙ୍କୁ ସମସ୍ତପ୍ରକାର ଦେଶସେବା ଓ ସମାଜସେବା କାର୍ଯ୍ୟରେ ସାହାଯ୍ୟ କରୁଥିଲେ। ଗୌରୀଶଙ୍କରଙ୍କ ମା' ବହୁବର୍ଷ ବଞ୍ଚିଥିଲେ। ୧୯୦୮ ମସିହାରେ ୮୫ ବର୍ଷ ବୟସରେ ତାଙ୍କର ମୃତ୍ୟୁ ହୋଇଥିଲା। ଗୌରୀଶଙ୍କର ମାତାଙ୍କୁ ଅତି ସ୍ନେହ ଓ ଭକ୍ତି କରୁଥିଲେ ଏବଂ ମାତାଙ୍କର ଆଦେଶ ତାଙ୍କର ସବୁବେଳେ ଶିରୋଧାର୍ଯ୍ୟ ଥିଲା। ଗୌରୀଶଙ୍କର ନିଜପାଇଁ ବିଶେଷ କିଛି ଖର୍ଚ୍ଚ କରୁନଥିଲେ। ମାତ୍ର ପରିବାର-ପରିଚାଳନାରେ ଉଦାର ଭାବ ଗ୍ରହଣ କରିଥିଲେ। ପରିବାରର ଲୋକମାନଙ୍କର ଅଭାବ ଅସୁବିଧା ଦୂର କରିବାକୁ ସେ ସର୍ବଦା ଯତ୍ନବାନ୍ ଥିଲେ। ପରିବାର-ଖର୍ଚ୍ଚ ପରେ ତାଙ୍କର ସମସ୍ତ ସଞ୍ଚୟ ସାଧାରଣ ଲୋକଙ୍କ ହିତ କାର୍ଯ୍ୟରେ ଦାନ କରୁଥିଲେ। ଛାତ୍ରମାନଙ୍କୁ ଅଧ୍ୟୟନ ପାଇଁ ସାହାଯ୍ୟ ଦେବାଠାରୁ ଆରମ୍ଭକରି ଜୀର୍ଣ୍ଣ ମନ୍ଦିର ଓ ପୁଷ୍କରିଣୀର ପୁନରୁଦ୍ଧାର, ବିଦ୍ୟାଳୟ ଏବଂ ଡାକ୍ତରଖାନା ସ୍ଥାପନ, କଟକ ଟାଉନ୍ ହଲ୍ ଓ କାୟସ୍ଥ ଛାତ୍ରାବାସ ପ୍ରଭୃତି ନିର୍ମାଣ ପର୍ଯ୍ୟନ୍ତ ତାଙ୍କର ମହତ୍ ଦାନର କ୍ଷେତ୍ର ପ୍ରଶସ୍ତ ଥିଲା। ମାତ୍ର ସେ ଅବିଚାରିତ ଭାବେ କିମ୍ବା ଅପାତ୍ରରେ ଦାନ ଦେବାକୁ ଇଚ୍ଛା କରୁନଥିଲେ।

ତାଙ୍କର କର୍ମମୟ ଜୀବନ ମୃତ୍ୟୁ ପର୍ଯ୍ୟନ୍ତ ବ୍ୟାପିଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ। ମୃତ୍ୟୁର ଦୁଇବର୍ଷ ପୂର୍ବ ପର୍ଯ୍ୟନ୍ତ ସେ ପ୍ରିଣ୍ଟିଂ କମ୍ପାନୀର ପରିଚାଳନା ଏବଂ ଉତ୍କଳ-ଦୀପିକାର ସମ୍ପାଦନା କାର୍ଯ୍ୟ ଚଳାଉଥିଲେ। ୧୮୯୨ ମସିହାରେ ସରକାରୀ ଚାକିରିରୁ ଅବସର ଗ୍ରହଣ ପରେ ଅନ୍ୟ ସମାଜସେବା

କାର୍ଯ୍ୟ ସହ ଏହି ଦୁଇଟି କାର୍ଯ୍ୟ ତାଙ୍କର ପ୍ରଧାନ ଦାୟିତ୍ୱ ଥିଲା । ଦୀର୍ଘ ପଚାଶ ବର୍ଷ କାଳ ସେ ଏହି ଦୁଇଟି କାର୍ଯ୍ୟ କରିଥିଲେ । ତାଙ୍କର ସରକାରୀ ଚାକିରିରୁ ଅବ୍ୟାହତି ପରେ ପ୍ରିଣ୍ଟିଂ କମ୍ପାନୀର ବିଶେଷ ଉନ୍ନତି ହୋଇଥିଲା । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ପ୍ରିଣ୍ଟିଂ କମ୍ପାନୀକୁ ନିଜ ଘରତୁଲ୍ୟ ମନେକରି ସେହିଠାରେ ଅଧିକାଂଶ ସମୟ ଅତିବାହିତ କରୁଥିଲେ । ୧୯୧୫ ମସିହାରେ ସେ ସୁଦାମଚରଣ ନାୟକଙ୍କୁ ପ୍ରେସ୍‌ର ସମସ୍ତ ହିସାବପତ୍ର ବୁଝାଇଦେଇ ଦୀପିକାର ସଂପାଦକ ଭାର ପରିତ୍ୟାଗ କରିଥିଲେ । ତାହାପରେ ମଧ୍ୟ ଏକପ୍ରକାର ନିର୍ଲିପ୍ତ-ଭାବରେ ସେ ସେହିଠାରେ ରହୁଥିଲେ । ୧୮୧୬ ମସିହାରେ ସରକାର ତାଙ୍କୁ ରାୟବାହାଦୁର ପଦ ଦେଇଥିଲେ; ମାତ୍ର ସେ ସେଥିରେ କୌଣସି ଆନନ୍ଦ ବା ଉତ୍ସାହ ଅନୁଭବ କରିନଥିଲେ ।

୧୯୧୭ ମସିହା ମାର୍ଚ୍ଚ ମାସ ୫ ତାରିଖ ଦିନ ସେ ପ୍ରେସ୍ ଘରେ ବସିଥିବା ସମୟରେ ହଠାତ୍ ସଂଜ୍ଞାହୀନ ହୋଇପଡ଼ିଥିଲେ । ଅଜ୍ଞାନ ଅବସ୍ଥାରେ ତିନିଦିନ ରହି କିଛି ସମୟ ସଂଜ୍ଞା ଲାଭକରି ନିଜର ଚରମ ପତ୍ରିକା ରେଜିଷ୍ଟ୍ରି କରାଇଥିଲେ । ତାହାପରେ ପୁଣି ଅଜ୍ଞାନ ହୋଇଯାଇଥିଲେ । ୧୯୧୭ ମସିହା ମାର୍ଚ୍ଚ ମାସ ୭ ତାରିଖ ଦିନ ରାତି ପ୍ରାୟ ସାଢ଼େ ନ'ଅଟା ସମୟରେ ତାଙ୍କର ତିରୋଧାନ ହୋଇଥିଲା । ତାଙ୍କର ମୃତ୍ୟୁ-ସମ୍ବାଦ ପାଇ କଟକର ସବୁ ଶ୍ରେଣୀର ଲୋକ ତାଙ୍କର ଶେଷ ଦର୍ଶନ ପାଇଁ ତାଙ୍କ ଘରେ ସମବେତ ହୋଇଥିଲେ । ୧୮୮୧ ମସିହାରେ ମଧୁସୂଦନ ଦାସ କଟକ ଆସିବା ପରେ ସେ ଗୌରୀଶଙ୍କରଙ୍କୁ ବଡ଼ଭାଇ ଏବଂ ମୁଖ୍ୟ ପରାମର୍ଶଦାତା ଭାବରେ ଗ୍ରହଣ କରିଥିଲେ । ସେ ତାଙ୍କୁ ମାଷ୍ଟରଦାଦା ବୋଲି ଡାକୁଥିଲେ ଏବଂ ଉଭୟେ ମିଶି ପ୍ରାୟ ୩୫ ବର୍ଷକାଳ ଦେଶ ଓ ସମାଜର ସେବା କରୁଥିଲେ । ତାଙ୍କର ମୃତ୍ୟୁପରେ ମଧୁବାବୁ ଖାଲିପାଦରେ ଶବଯାତ୍ରାରେ ଖାନ୍‌ନଗର ଶ୍ମଶାନ ପର୍ଯ୍ୟନ୍ତ ଯାଇଥିଲେ । ସେହି ୧୭ ତାରିଖ ଦିନ ରାତିରେ ଖାନ୍‌ନଗରଠାରେ ଗୌରୀଶଙ୍କର-ଙ୍କର ଶବ ସତ୍କାର ହୋଇଥିଲା । ବହୁ ଶୋକାକୁଳ ଲୋକ ଶ୍ମଶାନରେ ଜମା-ହୋଇଥିଲେ ।

ଗୌରୀଶଙ୍କର ନିଜ ସୁଖରେ ଜଳାଞ୍ଜଳି ଦେଇ ଦେଶ ଓ ସମାଜ ସେବାରେ ଜୀବନ ଉତ୍ସର୍ଗ କରିଥିଲେ । ନିରାଡ଼ମ୍ବର ଜୀବନଯାପନ, କର୍ତ୍ତବ୍ୟପରାୟଣତା ଏବଂ ନିର୍ଲିପ୍ତତା ତାଙ୍କ ଜୀବନର ମହତ୍ ଗୁଣମାନ ଥିଲା । ନିଜେ ଦେଶୀ ଲୁଗା ଓ ନାମାବଳୀ ଚଦର ବ୍ୟବହାର କରି, ମୋଟା ଚାଉଳର ଭାତ ଖାଇ, ପରର ହିତ ଓ ଦେଶର କାର୍ଯ୍ୟ ପାଇଁ ମୁକ୍ତହସ୍ତରେ ଦାନ କରୁଥିଲେ । ଓଡ଼ିଆ ଭାଷା ରକ୍ଷା, ଓଡ଼ିଆ ସାହିତ୍ୟ ଓ ସଂଗୀତର ଉନ୍ନତି ଏବଂ ଓଡ଼ିଆ ଲୋକମାନଙ୍କର

ସର୍ବାଙ୍ଗୀନ ଉନ୍ନତି କରିବା ତାଙ୍କ ଜୀବନର ବ୍ରତ ଥିଲା। ଉନବିଂଶ ଶତାବ୍ଦୀରେ ଓଡ଼ିଆଜାତି ନବଜାଗରଣର ପ୍ରଥମ ଆଲୋକବର୍ତ୍ତିକା ସେ ଜାଳିଥିଲେ।

ସ୍ମୃତି-ଚିହ୍ନ ଓ ସମାଧି-ସ୍ତମ୍ଭ ପ୍ରଭୃତି ଗଠନରେ ତାଙ୍କର ବିଶ୍ୱାସ ନଥିଲା। ତାଙ୍କ ନିର୍ମିତ କଟକ ଟାଉନ୍‌ହଲ୍ ତାଙ୍କ ମା'ଙ୍କ ନାମରେ ନାମିତ କରିବାକୁ ମଧ ସେ ରାଜି ହୋଇନଥିଲେ କିମ୍ବା ମା'ଙ୍କ ପାଇଁ ଶ୍ମଶାନରେ ସମାଧି-ସ୍ତମ୍ଭ କରିବାକୁ ଇଚ୍ଛା କରିନଥିଲେ। ତାଙ୍କ ମୃତ୍ୟୁପରେ ଓଡ଼ିଆ ଜାତି ତାଙ୍କୁ ଭୁଲି ନାହିଁ; ତାଙ୍କର ଆବିର୍ଭାବ ଓ ତିରୋଧାନ ଦିବସ ପାଳନ କରୁଛି। କଟକର ଗୌରୀଶଙ୍କର ପାର୍କ ଏବଂ ଆଉ କେତେକ ସାଧାରଣ ଅନୁଷ୍ଠାନ ତାଙ୍କ ନାମରେ ନାମିତ ହୋଇଛି। ଓଡ଼ିଆ ଜାତି ପାଇଁ ତାଙ୍କର ସ୍ୱାର୍ଥତ୍ୟାଗ ଓ ସଂଗ୍ରାମ ପାଇଁ ସେ ଜାତିର ଚିରନମସ୍ୟ ରହିବେ ଏବଂ ଓଡ଼ିଶାର ନବଜାଗରଣର ପ୍ରଥମ ଜନନାୟକରୂପେ ଓଡ଼ିଶାର ଲୋକମାନଙ୍କର ସ୍ମୃତିରେ ସେ ଚିରଜୀବିତ ରହିବେ। *

□ □ □

[ଏ ପ୍ରବନ୍ଧର ପ୍ରାୟ ସମସ୍ତ ତଥ୍ୟ ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ରଚିତ ଉତ୍କଳ ସାହିତ୍ୟ ପ୍ରେସ୍ ଦ୍ୱାରା ପ୍ରକାଶିତ ଏବଂ ଲାର୍କ ପ୍ରେସ୍ ଦ୍ୱାରା ୧୯୭୭ ମସିହାରେ ପୁନର୍ମୁଦ୍ରିତ 'କର୍ମଯୋଗୀ ଗୌରୀଶଙ୍କର' ପୁସ୍ତକରୁ ସଂଗୃହୀତ।]

# ତୃତୀୟ ପରିଚ୍ଛେଦ

## ବ୍ୟାସକବି ଫକୀରମୋହନ ସେନାପତି

### ଫକୀରମୋହନଙ୍କ ସମୟ ଏବଂ ତାଙ୍କ ବାଲ୍ୟ-ଜୀବନ –

ବ୍ୟାସକବି ଫକୀର ମୋହନ ସେନାପତି ୧୮୪୩ ମସିହା ଜାନୁଆରୀ ମାସରେ ମକର ସଂକ୍ରାନ୍ତି ଦିନ ବାଲେଶ୍ୱର ସହରର ମଲ୍ଲିକାଶପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପୂର୍ବ-ପୁରୁଷମାନଙ୍କ ସଂଜ୍ଞା ମଲ୍ଲ ଥିଲା ଏବଂ ସେମାନେ ବର୍ତ୍ତମାନର କେନ୍ଦ୍ରାପଡ଼ା ଜିଲ୍ଲାର କୁଶିଦା ଗ୍ରାମରେ ଓଡ଼ିଶାର ସ୍ୱାଧୀନ ରାଜାଙ୍କ ଦତ୍ତ ବହୁ ଭୂ-ସମ୍ପତ୍ତି ସହ ଗୋଟିଏ ଖଣ୍ଡାୟତ ବଂଶରେ ବାସ କରୁଥିଲେ । ମରହଟ୍ଟାମାନେ ଓଡ଼ିଶା ଅଧିକାର କଲାପରେ ସେ ଖଣ୍ଡାୟତ ଚୌପାଢ଼ୀର ଭୂସମ୍ପତ୍ତି ଛିନ୍ନଭିନ୍ନ ହୋଇଯାଇଥିଲା । ଫକୀରମୋହନଙ୍କ ବୃଦ୍ଧ-ପ୍ରପିତାମହ (ପଞ୍ଚମ ପୂର୍ବପୁରୁଷ) ହନୁମଲ୍ଲ ବାଲେଶ୍ୱର ଜିଲ୍ଲାରେ ମରହଟ୍ଟାମାନଙ୍କ ଅଧୀନରେ ପାଇକରୂପେ କାର୍ଯ୍ୟ କରିଥିଲେ ଏବଂ ତାଙ୍କର କାର୍ଯ୍ୟ-ଦକ୍ଷତା ହେତୁ ମରହଟ୍ଟାମାନେ ତାଙ୍କୁ ଫୁଲବାର୍ ଘାଟରେ ପଠାଣ ସୈନ୍ୟମାନଙ୍କୁ ପ୍ରତିରୋଧ କରୁଥିବା ସୈନ୍ୟମାନଙ୍କର ସେନାପତିରୂପେ ନିଯୁକ୍ତ କରି ତାଙ୍କର ବେତନ ସ୍ୱରୂପ ତାଙ୍କୁ ବାଲେଶ୍ୱରରେ ପଇଁଚାଳିଶ ବାଟି ନିଷ୍କର ଭୂ-ସମ୍ପତ୍ତି ଦେଇଥିଲେ । ସେହି ସମୟଠାରୁ ତାଙ୍କ ପରିବାର 'ମଲ୍ଲ' ପରିବର୍ତ୍ତେ 'ସେନାପତି' ସଂଜ୍ଞା ବ୍ୟବହାର କରୁଥିଲେ ଏବଂ ଜାଗିରି ଭୂ-ସମ୍ପତ୍ତି ଭୋଗ କରୁଥିଲେ । ଫକୀରମୋହନଙ୍କ ପିତାମହ କୁଶ ସେନାପତିଙ୍କର ଅକାଳ ବିୟୋଗ ପରେ ତାଙ୍କର ପିତାମହୀ ଇଂରେଜ ଶାସନର ପ୍ରଥମ ବନ୍ଦୋବସ୍ତରେ ତାଙ୍କର ସ୍ୱତ୍ୱ ସାବ୍ୟସ୍ତ କରିନପାରିବାରୁ ସେନାପତି ପରିବାର ଜାଗିରି ଜମି ହରାଇଥିଲେ ।

ଫକୀରମୋହନଙ୍କ ଜନ୍ମର ମାତ୍ର ଏକ ବର୍ଷ ପାଞ୍ଚମାସ ପରେ ତାଙ୍କର ପିତା ଲକ୍ଷ୍ମଣ ଚରଣ ସେନାପତି ରଥଯାତ୍ରା ଦେଖିବାପାଇଁ ପୁରୀ ଯାଇଥିଲେ । ଫେରିବା ବାଟରେ ଭୁବନେଶ୍ୱରଠାରେ ହଇଜା ରୋଗରେ ତାଙ୍କର ମୃତ୍ୟୁ ହୋଇଥିଲା । ପିତାଙ୍କ ମୃତ୍ୟୁ ପରେ ମାତା ତୁଳସୀ ଦେଈ ଶୋକ ହେତୁ ରୋଗରେ ପଡ଼ି

ବର୍ଷକ ପରେ ମରିଯାଇଥିଲେ। ପିତୃମାତୃହୀନ ଫକୀରମୋହନଙ୍କୁ ଦେଢ଼ବର୍ଷ ବୟସରୁ ତାଙ୍କର ପିତାମହୀ କୁଢ଼ିଳା ଦେଇ ପାଳିଥିଲେ। ଜନ୍ମଠାରୁ ପ୍ରାୟ ସାତ ଆଠବର୍ଷ ବୟସ ପର୍ଯ୍ୟନ୍ତ ସେ ଗ୍ରହଣୀ, ଅର୍ଶ ପ୍ରଭୃତି ଯନ୍ତ୍ରଣାଦାୟକ ରୋଗରେ ବରାବର ପୀଡ଼ିତ ହେଉଥିଲେ ଏବଂ ଠାକୁରମା'ଙ୍କ ସେବା ଓ ଯତ୍ନ ଯୋଗୁଁ ବଞ୍ଚିରହିଥିଲେ। ପ୍ରଥମେ ତାଙ୍କର ନାମ ବ୍ରଜମୋହନ ଥିଲା। ଅତିଶୟ ରୁଗ୍ଣ ଅବସ୍ଥାରେ ତାଙ୍କର ଜୀବନରକ୍ଷାପାଇଁ ଠାକୁରମା' ଅତି ଆକୁଳରେ ବାଲେଶ୍ୱରରେ ଥିବା ଦୁଇଟି ପୀରଙ୍କୁ ପ୍ରାର୍ଥନା କରି ତାଙ୍କର ସନ୍ତୋଷ ନିମିତ୍ତ ନାତିର ନାମ ବଦଳାଇ ବ୍ରଜମୋହନ ପରିବର୍ତ୍ତେ ଫକୀରମୋହନ କରିଥିଲେ। ସେହି ସମୟରୁ ପିଲାର ନାମ ଫକୀରମୋହନ ହୋଇଥିଲା ଏବଂ ପିଲାଦିନେ ପ୍ରତିବର୍ଷ ମହରମ ସମୟରେ ସେ ଫକୀରବେଶ ଧରି ନିକଟବର୍ତ୍ତୀ ଘରମାନଙ୍କରେ ଭିକ ମାଗୁଥିଲେ। ତାଙ୍କର ଭିକ୍ଷାଲବ୍ଧ ଚାଉଳ ବିକି ଠାକୁରମା' ସେହି ପଇସାରେ ପୀରଙ୍କୁ ଶିରିଣି ଭୋଗ ଦେଉଥିଲେ।

ଫକୀରମୋହନଙ୍କ ଜନ୍ମ ସମୟର ମାତ୍ର ଚାଳିଶ ବର୍ଷ ପୂର୍ବରୁ ୧୮୦୩ ମସିହାରେ ଇଂରେଜମାନେ ମରହଟ୍ଟାମାନଙ୍କଠାରୁ ଓଡ଼ିଶା ଡିଭିଜନ୍ ଅଧିକାର କରିଥିଲେ। ଓଡ଼ିଶା ଡିଭିଜନ୍‌ରେ ସେତେବେଳେ ମାତ୍ର ତିନିଗୋଟି ଜିଲ୍ଲା କଟକ, ପୁରୀ ଓ ବାଲେଶ୍ୱର ଥିଲା। ସେ ଡିଭିଜନ୍‌କୁ ଇଂରେଜମାନେ ବଙ୍ଗ ପ୍ରେସିଡେନ୍‌ସିର ଶାସନ ଅଧୀନରେ ରଖିଥିଲେ। ଫକୀରମୋହନଙ୍କ ଜନ୍ମବେଳକୁ ମରହଟ୍ଟା ରାଜତ୍ୱ ସମୟର ମରହଟ୍ଟା ଓ ମୁସଲମାନ ଶାସକଙ୍କ ମଧ୍ୟରେ ଯୁଦ୍ଧ, ମରହଟ୍ଟା-ବର୍ଗୀମାନଙ୍କର ଓଡ଼ିଶାର ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ଧନସମ୍ପତ୍ତି ଲୁଣ୍ଠନ, ଲୋକମାନଙ୍କଠାରୁ ଚଉଥ କର ଆଦାୟ, ସାଧାରଣ ଶାସନରେ ଅରାଜକତା ଜନସାଧାରଣଙ୍କ ସ୍ମୃତିରେ ପୂର୍ଣ୍ଣ ଜାଗ୍ରତ ଥିଲା।

ଇଂରେଜମାନେ ପ୍ରଥମେ ଦେଶରେ ଆଇନ୍-ଶୃଙ୍ଖଳା ପ୍ରତିଷ୍ଠା ଉପରେ ସର୍ବାଧିକ ଧ୍ୟାନ ଦେଉଥିଲେ। ସେମାନେ ଲୋକମାନଙ୍କର ଧର୍ମ ଓ ସାମାଜିକ ଜୀବନ ଉପରେ ହସ୍ତକ୍ଷେପ କରିବାକୁ ଚାହୁଁନଥିଲେ; ଯଦିଓ ଇଂରେଜ ଖ୍ରୀଷ୍ଟିଆନ୍ ପାଦ୍ରିମାନେ ଲୋକମାନଙ୍କ ମଧ୍ୟରେ ଖ୍ରୀଷ୍ଟଧର୍ମ ପ୍ରଚାର କରିବାପାଇଁ ବିଶେଷ ସୁବିଧା ପାଉଥିଲେ। ସେତେବେଳେ ଇଂରେଜ ଶାସକମାନେ ଲୋକମାନଙ୍କର ଆର୍ଥିକ ଅବସ୍ଥା ଉପରେ କୌଣସି ଧ୍ୟାନ ନ ଦେଇ ସେମାନଙ୍କଠାରୁ ନିୟମିତ ଭାବରେ ଭୂ-ରାଜସ୍ୱ ଆଦାୟ କରିବାକୁ ଯତ୍ନବାନ୍ ଥିଲେ। ରାଜ୍ୟରେ ବନ୍ଦୋବସ୍ତ କରି ଲୋକମାନଙ୍କର ଭୂ-ସମ୍ପତ୍ତିରେ ସ୍ୱତ୍ୱ ସ୍ଥିର କରିବା ଏବଂ ଜମି ମାପ କରାଇ ଜମିର ଖଜଣା ପରିମାଣ ଧାର୍ଯ୍ୟ କରିବାପାଇଁ ସେମାନେ ପ୍ରଥମେ ଉଦ୍ୟମ କରିଥିଲେ। ସେତେବେଳକୁ ଗାଁମାନଙ୍କରେ ବହୁଲୋକ ମୁସଲମାନ

ଓ ମରହଟ୍ଟା ଶାସକମାନଙ୍କଠାରୁ ସନନ୍ଦ ପାଇ ଜମିଦାରି, ଜାଗିରି, ମକଦ୍ଦମୀ, ମାଫିଦାରୀ ପ୍ରଭୃତି ଜମିରେ ବିଭିନ୍ନ ପ୍ରକାର ସ୍ୱତ୍ୱ ଭୋଗକରୁଥିଲେ । ସେଥିଯୋଗୁଁ ଇଂରେଜମାନେ ସେମାନଙ୍କ ପ୍ରଥମ ଚାଳିଶ ବର୍ଷ ରାଜତ୍ୱ ସମୟରେ ବିଭିନ୍ନ ଅଞ୍ଚଳରେ ବନ୍ଦୋବସ୍ତ କରାଇ ଲୋକମାନଙ୍କର ଜମିରେ ବିଭିନ୍ନ ପ୍ରକାର ସ୍ୱତ୍ୱ ଏବଂ ଖଜଣାର ପରିମାଣ ପ୍ରଭୃତି ଧାର୍ଯ୍ୟ କରିବାକୁ କାର୍ଯ୍ୟାନୁଷ୍ଠାନ କରିଥିଲେ । ଗାଁମାନଙ୍କରେ ଲୋକମାନେ ସାଧାରଣତଃ ଚାଷବାସ, କୁଟୀରଶିଳ୍ପ ଓ କୌଳିକ ବ୍ୟବସାୟ ପ୍ରଭୃତି କରି ଜୀବିକା ନିର୍ବାହ କରୁଥିଲେ । ମାତ୍ର ଇଂରେଜ କମ୍ପାନୀଙ୍କ ସାମୂହିକ, ଆର୍ଥିକ ଓ ବାଣିଜ୍ୟିକ ନୀତି ହେତୁ କୁଟୀରଶିଳ୍ପଗୁଡ଼ିକ କ୍ଷତିଗ୍ରସ୍ତ ହୋଇ କ୍ରମେ ଲୋପ ପାଇବାକୁ ଆରମ୍ଭ କରିଥିଲା । ଅନ୍ୟ ଦିଗରେ ବ୍ରିଟିଶ୍ ରାଜତ୍ୱ କାଳରେ ପାରମ୍ପରିକ ମହାଜନ ଓ ଜମିଦାରମାନଙ୍କ ଅତ୍ୟାଚାର ବୃଦ୍ଧି ପାଇଥିଲା ।

ବ୍ରିଟିଶ୍ ଶାସନର ପ୍ରଥମ ପଚାଶ ବର୍ଷ ମଧ୍ୟରେ ଓଡ଼ିଶାରେ ଶିକ୍ଷାର କିଛି ପ୍ରସାର ହୋଇନଥିଲା । ୧୮୫୮ ମସିହାରେ କଲିକତାରେ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇଥିଲା ଏବଂ ଓଡ଼ିଶାରେ କଟକ, ପୁରୀ ଏବଂ ବାଲେଶ୍ୱରରେ ଗୋଟିଏ ଲେଖାଏଁ ଇଂରାଜୀ ଶିକ୍ଷାଦାନ ହାଇସ୍କୁଲ୍ ପ୍ରତିଷ୍ଠିତ ହୋଇଥିଲା । ଗାଁମାନଙ୍କରେ ପ୍ରାଥମିକ ଶିକ୍ଷା ଲୋକମାନଙ୍କର ଘରୋଇ ଉଦ୍ୟମରେ ଚାଟ-ଶାଳୀମାନଙ୍କରେ ଅବଧାନମାନଙ୍କଦ୍ୱାରା ଦିଆଯାଉଥିଲା । ଲୋକମାନେ ସେମାନଙ୍କ ପିଲାମାନଙ୍କୁ ପଢ଼ାଇବା ପାଇଁ ଅବଧାନମାନଙ୍କୁ ମାସିକ ଅଳ୍ପମାତ୍ରାରେ ପାରିଶ୍ରମିକ ଦେଉଥିଲେ । ପୂନିଅଁ-ପର୍ବରେ ଏବଂ ଚାଟଶାଳୀରେ ବିଭିନ୍ନ ସ୍ତରରେ ପାଠ ଆରମ୍ଭ କଲାବେଳକୁ ପିଲାମାନେ ଅବଧାନଙ୍କୁ ଚାଉଳ, ଡାଲି, ପରିବା ପ୍ରଭୃତି ସିଦା ଦେଉଥିଲେ । କଟକ ଜିଲ୍ଲାର ଝଙ୍କଡ଼ ପ୍ରଗଣାରୁ ଏବଂ ପୁରୀ ଜିଲ୍ଲାର ଖୋର୍ଦ୍ଧା ଅଞ୍ଚଳରୁ କରଣ ଓ ମାଟିବଂଶ ଓଝା ଜାତିର ଅବଧାନମାନେ କଟକ ପୁରୀ, ବାଲେଶ୍ୱର ଜିଲ୍ଲା ଏବଂ ସୁଦୂର ଗଡ଼ଜାତ ଅଞ୍ଚଳମାନଙ୍କର ଚାଟଶାଳୀ-ମାନଙ୍କରେ ଉଚ୍ଚ ଜାତିମାନଙ୍କର ପୁଅପିଲାମାନଙ୍କୁ ପାଠ ପଢ଼ାଉଥିଲେ । ପ୍ରାଥମିକ ଶିକ୍ଷାଦାନ କରିବାକୁ ଅବଧାନମାନଙ୍କର ଯଥୋଚିତ ଜ୍ଞାନ ଥିଲା ।

ଊନବିଂଶ ଶତାବ୍ଦୀର ସପ୍ତମ ଦଶନ୍ଧି ପର୍ଯ୍ୟନ୍ତ ଇଂରାଜୀ ଶିକ୍ଷା ଓଡ଼ିଶାର ପୁରପଲ୍ଲୀମାନଙ୍କରେ ପ୍ରବେଶ କରିପାରିନଥିଲା । ୧୮୬୮ ଖ୍ରୀଷ୍ଟାବ୍ଦରେ ରେଭେନ୍ସା କଲେଜିଏଟ୍ ସ୍କୁଲରେ ଏଫ୍.ଏ. କ୍ଲାସ୍ ଆରମ୍ଭ ହୋଇଥିଲା । ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ଓଡ଼ିଶାରେ ମାଟ୍ରିକ୍ୟୁଲେସନ୍ ପାସ୍ କରିଥିବା ଏବଂ କଲେଜରେ ପଢୁଥିବା ଛାତ୍ରମାନଙ୍କର ସଂଖ୍ୟା ମୁଷ୍ଟିମେୟ ଥିଲା । ଓଡ଼ିଆମାନେ ଇଂରାଜୀ ଶିକ୍ଷା ପାଇ ନଥିବାରୁ ଏବଂ ଓଡ଼ିଶା ଡିଭିଜନ୍‌ର ଶାସନ ବଙ୍ଗପ୍ରେସିଡେନ୍ସି ଅଧୀନରେ

ରହିଥିବା ହେତୁ ଓଡ଼ିଶାର ସମସ୍ତ ସରକାରୀ ବିଭାଗର ଚାକିରି ବଙ୍ଗାଳୀମାନେ ଅଧିକାର କରିଥିଲେ। ଜିଲ୍ଲା କଲେକ୍ଟରଙ୍କଠାରୁ ଆରମ୍ଭ କରି ସବୁ ବିଭାଗର ସର୍ବୋଚ୍ଚ କର୍ତ୍ତା ଇଂରେଜ ସାହେବ ଥିଲେ। ତାଙ୍କ ତଳ ବିଭାଗର ନିମ୍ନସ୍ତର ପର୍ଯ୍ୟନ୍ତ ସମସ୍ତ ଚାକିରି ବଙ୍ଗାଳୀମାନେ ଅଧିକାର କରିଥିଲେ। ଉନବିଂଶ ଶତାବ୍ଦୀର ମଧ୍ୟଭାଗରୁ ବଙ୍ଗାଳୀମାନେ ଓଡ଼ିଶାର ସ୍କୁଲ ଏବଂ କଚେରିମାନଙ୍କରୁ ଓଡ଼ିଆଭାଷା ଉଠାଇଦେବାକୁ ଉଦ୍ୟମ କରୁଥିଲେ। କଚେରିମାନଙ୍କରେ ନିମ୍ନସ୍ତରରେ ଯେଉଁ ଅତି ଅଳ୍ପସଂଖ୍ୟକ ଓଡ଼ିଆ ଲୋକ ଅମଲା କାମ କରୁଥିଲେ, ସେମାନଙ୍କର ଚାଲିଚଳଣି ବଙ୍ଗାଳୀ କର୍ମଚାରୀମାନଙ୍କଦ୍ୱାରା ପ୍ରଭାବିତ ହେଉଥିଲା ଏବଂ ତାହା ଓଡ଼ିଶାର ପାରମ୍ପରିକ ଚାଲିଚଳଣିଠାରୁ ଭିନ୍ନ ହୋଇଯାଉଥିଲା। ସେହିପରି ଯେଉଁ ଅତି ଅଳ୍ପ ସଂଖ୍ୟକ ଓଡ଼ିଆ ପିଲା ସ୍କୁଲ-କଲେଜରେ ଇଂରାଜୀ ଶିକ୍ଷା ପାଉଥିଲେ, ସେମାନେ ଗାଁଲୋକଙ୍କ ମୂଲ୍ୟବୋଧ ସହିତ ଭାରସାମ୍ୟ ରଖିପାରୁନଥିଲେ। କଟକରୁ କେବଳ ଉତ୍କଳ ଦୀପିକା ସାପ୍ତାହିକ ଖବରକାଗଜ ବାହାରୁଥିଲା। ବହି ଓ ଖବରକାଗଜ ପ୍ରଭୃତିର ମୋଟେ କାରବାର ନଥିଲା। ଶତାବ୍ଦୀର ପ୍ରଥମ ଭାଗରେ କେବଳ ଖ୍ରୀଷ୍ଟିଆନ୍ ମିସନାରୀମାନେ ବାଇବେଲ୍‌କୁ ଓଡ଼ିଆରେ ଅନୁବାଦ କରି ଛାପି ଲୋକମାନଙ୍କ ମଧ୍ୟରେ ଚଳାଇବାକୁ ଉଦ୍ୟମ କରୁଥିଲେ।

ଇଂରେଜମାନେ ଓଡ଼ିଶା ଅଧିକାର କରିବା ସମୟକୁ ବାଲେଶ୍ୱର ଗୋଟିଏ ସୁପ୍ରସିଦ୍ଧ ବନ୍ଦର ଥିଲା। ସେଠାରୁ ଶହ ଶହ ପାଲଟଣା ଜାହାଜ ୟୁରୋପ ଏବଂ ଦକ୍ଷିଣ-ପୂର୍ବ ଏସିଆର ବିଭିନ୍ନ ଦେଶମାନଙ୍କ ସହିତ ଆମଦାନୀ ଓ ରପ୍ତାନୀ ମାଲ ପରିବହନ କରୁଥିଲେ। ବାଲେଶ୍ୱରର ସୁବର୍ଣ୍ଣରେଖା ମୁହାଣଠାରୁ ବୈତରଣୀର ଧାମରା ମୁହାଣ ପର୍ଯ୍ୟନ୍ତ ସମୁଦ୍ର ଉପକୂଳ ଅଞ୍ଚଳମାନଙ୍କରେ ପଙ୍ଗାଲୁଣ ମରାହେଉଥିଲା ଏବଂ ଓଡ଼ିଶା ଉପକୂଳର ପଙ୍ଗାଲୁଣ ବଙ୍ଗଦେଶ ଏବଂ ଭାରତର ଅନ୍ୟ ପ୍ରଦେଶମାନଙ୍କରେ ବିକ୍ରି ହେଉଥିଲା। ବହୁ ପରିମାଣରେ ଲୁଣ ମଧ୍ୟ ୟୁରୋପୀୟ ଦେଶମାନଙ୍କରେ ବିକ୍ରି ହେଉଥିଲା। ଲୁଣ ଓ ଜାହାଜ କାରବାରରେ ବହୁଲୋକ କାମ ପାଉଥିଲେ; ମାତ୍ର ଇଂରେଜ ଶାସନର ଷାଠିଏ ବର୍ଷ ମଧ୍ୟରେ ବାଲେଶ୍ୱର ବନ୍ଦରରେ ଜାହାଜ ଚଳାଚଳ ବସ୍ତୁତଃ ବନ୍ଦହୋଇଯାଇଥିଲା। ଇଂରେଜମାନେ ମଧ୍ୟ ଲୋକମାନଙ୍କର ଲୁଣମରା ବ୍ୟବସାୟ ବନ୍ଦ କରିଦେଇ ଇଂଲଣ୍ଡର ଲିଭରପୁଲ୍ ବନ୍ଦରରେ ପ୍ରସ୍ତୁତ ଲୁଣ ଭାରତବର୍ଷକୁ ଆମଦାନି କରି ବିକ୍ରୟ କଲେ। ବନ୍ଦର କାମ ଓ ଲୁଣମରା ବନ୍ଦହେବାରୁ ହଜାର ହଜାର ଲୋକ ବେକାର ହେଲେ ଏବଂ ଗଣ-ଦାରିଦ୍ର୍ୟ ବୃଦ୍ଧିପାଇଲା।

ଉନବିଂଶ ଶତାବ୍ଦୀ ଶେଷସୁଦ୍ଧା ଓଡ଼ିଶାର ଉପକୂଳବର୍ତ୍ତୀ ଜିଲ୍ଲା ଓ ଗଡ଼ଜାତ ରାଜ୍ୟମାନଙ୍କର ଗ୍ରାମମାନଙ୍କରେ ଗମନାଗମନର ସୁବିଧା ନଥିଲା। ଉପକୂଳବର୍ତ୍ତୀ

ଅଞ୍ଚଳର ଗାଁମାନଙ୍କରେ ଗୋହିରି ରାସ୍ତା ଯିବାଆସିବା କରିବାର ବାଟ ଥିଲା। ଲମ୍ବା ସଡ଼କପଥ ନଥିଲା କିମ୍ବା ନଦୀମାନଙ୍କରେ ପୋଲ ନଥିଲା। ମୁଷ୍ଟିମେୟ ଧନୀଲୋକ ସୁଆରି ପାଲିକିରେ ଯିବାଆସିବା କରୁଥିଲେ। ସାଧାରଣ ଲୋକ ପାଦରେ ଚାଲି କିମ୍ବା ବଳଦଗାଡ଼ିରେ ଯିବାଆସିବା କରୁଥିଲେ। ମାଲ-ପରିବହନ ଭାର କିମ୍ବା ବଳଦଗାଡ଼ିରେ ହେଉଥିଲା। ନଦୀମାନଙ୍କରେ ଦଉଡ଼ିଟଣା ଓ କାତମରା ଡଙ୍ଗା ଦୂରବାଟ ଯିବାଆସିବା କରି ମାଲ୍ ପରିବହନ କରୁଥିଲେ। କଲିକତା ଯିବାପାଇଁ ଏକମାତ୍ର ପଥ ଜଗନ୍ନାଥ ସଡ଼କର ନଈମାନଙ୍କରେ ପୋଲ ନଥିଲା। ବର୍ଷାଦିନେ ସଡ଼କର ବହୁଅଂଶ ପାଣିରେ ବୁଡ଼ିଯାଉଥିଲା। ରାସ୍ତାରେ ବହୁସ୍ଥାନରେ ଡକାୟତମାନେ ଯାତ୍ରୀମାନଙ୍କଠାରୁ ଟଙ୍କାପଇସା ଲୁଟି ନେଉଥିଲେ। ଓଡ଼ିଶାର କଲିକତାଠାରୁ ସବୁଠାରୁ ନିକଟତମ ଅଞ୍ଚଳ ବାଲେଶ୍ୱର ଜିଲ୍ଲାରୁ କଲିକତାକୁ ବଳଦଗାଡ଼ିରେ ଯିବାକୁ ସାଧାରଣତଃ ଆଠ-ଦଶ ଦିନ ଲାଗିଯାଉଥିଲା। କୌଣସି ଅସୁବିଧା ହେଲେ କୋଡ଼ିଏ-ବାଇଶ ଦିନ ମଧ୍ୟ ଲାଗିଯାଉଥିଲା। କଲିକତାରୁ ବାଲେଶ୍ୱର ଏବଂ କଟକ ମଧ୍ୟରେ ଷ୍ଟିମର୍ ଚାଲୁଥିଲା। ସେଥିରେ ଯାତ୍ରୀ ଏବଂ ମାଲ୍ ପରିବହନ କରାଯାଉଥିଲା। ୧୮୯୫ ମସିହାଠାରୁ ୧୯୦୦ ମସିହା ମଧ୍ୟରେ ଓଡ଼ିଶା ମଧ୍ୟଦେଇ କଲିକତା ଓ ମାନ୍ଦ୍ରାଜ ମଧ୍ୟରେ ରେଳଗାଡ଼ି ଚଳାଚଳ ଆରମ୍ଭ ହୋଇଥିଲା।

ଓଡ଼ିଶାର ସବୁ ଜିଲ୍ଲାରେ ଧାନଚାଷ ଲୋକମାନଙ୍କର ଜୀବିକା ଅର୍ଜନର ପ୍ରଧାନ ପନ୍ଥା ଥିଲା। ଜଳସେଚନର ଅଭାବ ହେତୁ ସବୁଆଡ଼େ ଧାନଚାଷ ମୌସୁମୀବାୟୁଜନିତ ବର୍ଷା ଉପରେ ନିର୍ଭର କରୁଥିଲା। ବନ୍ୟା, ମରୁଡ଼ି, ବାତ୍ୟା, ଧାନଚାଷ ଓ ଲୋକମାନଙ୍କର ସାଧାରଣ ଆର୍ଥିକ ଅବସ୍ଥା ପ୍ରତି ପ୍ରଧାନ ବିପତ୍ତି ଥିଲା ଏବଂ ବହୁବର୍ଷ ବନ୍ୟା ଓ ମରୁଡ଼ିରେ ଫସଲ ନଷ୍ଟହେବା ହେତୁ ଖଣ୍ଡ-ଦୁର୍ଭିକ୍ଷ ବା ପୂର୍ଣ୍ଣ-ଦୁର୍ଭିକ୍ଷ ପଡୁଥିଲା। ଖାଦ୍ୟାଭାବ ସହିତ ହଇଜା, ବସନ୍ତ ପ୍ରଭୃତି ମହାମାରୀରେ ସବୁ ଜିଲ୍ଲାରେ ପ୍ରତିବର୍ଷ ବହୁଲୋକ ମରିଯାଉଥିଲେ ୧୮୬୬ ମସିହାରେ ଫକୀରମୋହନଙ୍କୁ ୨୩ ବର୍ଷ ବୟସ ହୋଇଥିବାବେଳେ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାରେ ଓଡ଼ିଶାର ପାଞ୍ଚଶହ ବର୍ଷ ଇତିହାସର ସବୁଠାରୁ ବଡ଼ ଦୁର୍ଭିକ୍ଷ, ନ'ଅଙ୍କ ଦୁର୍ଭିକ୍ଷ ହୋଇଥିଲା। ସେଥିରେ ଓଡ଼ିଶା ଡିଭିଜନ୍‌ରେ ଦଶଲକ୍ଷରୁ ଅଧିକ ଲୋକ ଅନାହାରରେ ମରିଯାଇଥିଲେ। ନ'ଅଙ୍କ ଦୁର୍ଭିକ୍ଷ ବ୍ରିଟିଶ୍ ରାଜତ୍ୱର ପ୍ରଥମ ଷାଠିଏ ବର୍ଷର ଜନସାଧାରଣଙ୍କର କ୍ରମବର୍ଦ୍ଧମାନ ଦାରିଦ୍ର୍ୟର ଶେଷ ପରିଣାମ ଥିଲା। ନ'ଅଙ୍କ ଦୁର୍ଭିକ୍ଷ ପରେ ଶତାବ୍ଦୀର ଶେଷ ଦୁଇ-ତିନି ଦଶନ୍ଧିରେ ସରକାର ରାସ୍ତାଘାଟ ନିର୍ମାଣ, ଜଳସେଚନ କେନାଲ ଖନନ ଓ ନଦୀବନ୍ଧ ନିର୍ମାଣ ପ୍ରଭୃତି ଉନ୍ନୟନମୂଳକ କାର୍ଯ୍ୟ ଆରମ୍ଭ କରିଥିଲେ।

ଶତାବ୍ଦୀର ଶେଷ ଦଶନ୍ଧିରେ ୧୮୯୫ ମସିହା ଓ ୧୯୦୦ ମସିହା ମଧ୍ୟରେ ଓଡ଼ିଶା ଉପକୂଳ ଦେଇ କଲିକତାଠାରୁ ମାନ୍ଦ୍ରାଜ ସହର ପର୍ଯ୍ୟନ୍ତ ରେଳଗାଡ଼ି ଚଳାଚଳ ଆରମ୍ଭ ହୋଇଥିଲା । ମାତ୍ର ନ'ଅଙ୍କ ଦୁର୍ଭିକ୍ଷ ପରେ ଯେଉଁ ରାସ୍ତାଘାଟ, କେନାଲ, ନଦୀବନ୍ଧ ଓ ରେଳପଥ ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଥିଲା, ତାହା ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ଶେଷ ହୋଇପାରିନଥିଲା ।

ବ୍ରିଟିଶ୍-ଶାସିତ ଓଡ଼ିଶା ଡିଭିଜନ୍ ବ୍ୟତୀତ ଓଡ଼ିଶାର ଲୋକମାନେ ୨୬ଟି ଛୋଟବଡ଼ ଗଡ଼ଜାତ ରାଜ୍ୟରେ ବାସକରୁଥିଲେ । ସେ ଅଞ୍ଚଳମାନଙ୍କର ଲୋକମାନଙ୍କ ଅବସ୍ଥା ବ୍ରିଟିଶ୍-ଶାସିତ ଅଞ୍ଚଳର ଲୋକମାନଙ୍କ ଅବସ୍ଥା ଅପେକ୍ଷା ଅଧିକ ଶୋଚନୀୟ ଥିଲା । ଅନେକ ରାଜ୍ୟରେ ରାଜାମାନେ ଅଜ୍ଞ, ଅଶିକ୍ଷିତ ଓ ଯଥେଚ୍ଛାଚାରୀ ଥିଲେ । ରାଜ୍ୟଗୁଡ଼ିକ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା ଏବଂ ରାସ୍ତାଘାଟ କିଛି ନଥିଲା । ରାଜାମାନେ ତୋଷାମଦକାରୀ ରାଜକର୍ମଚାରୀ ଓ ପାଖଲୋକଙ୍କଦ୍ୱାରା ପରିବେଷ୍ଟିତ ହୋଇ ମନୋମୁଖି ଶାସନ କରୁଥିଲେ । ରାଜପରିବାରମାନଙ୍କରେ ବହୁ ମତଭେଦ ଓ ବାଦାନୁବାଦ ଥିଲା । ସବୁ ରାଜ୍ୟରେ ପ୍ରଜାମାନଙ୍କର ବେଠି ଖଟିବା ପ୍ରଥା ପ୍ରଚଳିତ ଥିଲା । ପ୍ରଜାମାନେ ଦରିଦ୍ର, ନିରକ୍ଷର ହୋଇ ଗାଁପଧାନ, ରାଜକର୍ମଚାରୀ ଓ ରାଜାଙ୍କ ମନୋମୁଖି ଶାସନ ମଧ୍ୟରେ ଦୁଃସ୍ଥ ଅବସ୍ଥାରେ ବାସକରୁଥିଲେ । ବ୍ରିଟିଶ୍ ସରକାରଙ୍କର ରାଜାମାନଙ୍କ ଉପରେ ପୂର୍ଣ୍ଣ କର୍ତ୍ତୃତ୍ୱ ଥିଲା । ଓଡ଼ିଶା ଡିଭିଜନ୍‌ର କମିସନର୍ ଓ ଜିଲ୍ଲା କଲେକ୍ଟର୍‌ମାନେ ଗଡ଼ଜାତ ରାଜ୍ୟମାନଙ୍କର ସୁପରିଣ୍ଟେଣ୍ଡେଣ୍ଟରୂପେ ରାଜାମାନଙ୍କୁ ଶାସନକାର୍ଯ୍ୟରେ ସାହାଯ୍ୟ କରିବାପାଇଁ ବ୍ରିଟିଶ୍ ଓଡ଼ିଶାରୁ ଦେଓ୍ୱାନ ଓ ମାନେଜର ପ୍ରଭୃତି ନିଯୁକ୍ତ କରି ଗଡ଼ଜାତ ରାଜ୍ୟମାନଙ୍କୁ ପଠାଉଥିଲେ । କୌଣସି ରାଜ୍ୟରେ ରାଜାଙ୍କର ଅତ୍ୟାଚାର ହେତୁ ପ୍ରଜାମେଳି ହେଲେ ବ୍ରିଟିଶ୍ ସରକାର ସୈନ୍ୟ ଓ ପୁଲିସ ଫୋର୍ସ ପଠାଇ ତାହା ଦମନ କରୁଥିଲେ । ଅନେକ ସ୍ଥଳରେ ବ୍ରିଟିଶ୍ ସରକାର ଅତ୍ୟାଚାରୀ ରାଜାଙ୍କୁ ଗାଦିଚ୍ୟୁତ କରି ନୂତନ ରାଜାଙ୍କୁ ରାଜ୍ୟଭାର ଅର୍ପଣ କରୁଥିଲେ ।

ଓଡ଼ିଶାରେ ଉନବିଂଶ ଶତାବ୍ଦୀରେ ଏବଂ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ବ୍ରିଟିଶ୍ ରାଜତ୍ୱର ଏହି ରାଜନୈତିକ, ଅର୍ଥନୈତିକ ଓ ସାମାଜିକ ପରିବେଶ ମଧ୍ୟରେ ଫକୀରମୋହନ ପୂର୍ଣ୍ଣ ପଞ୍ଚସ୍ତରି ବର୍ଷ ଜୀବନ ଯାପନ କରିଥିଲେ । ପିଲାଦିନେ ବର୍ଷେ-ଦେଢ଼ବର୍ଷରୁ ଅଧିକ ସମୟ ଆଧୁନିକ ସ୍କୁଲରେ ପଢ଼ିପାରିନଥିଲେ । ଓଡ଼ିଆ, ସଂସ୍କୃତ, ବଙ୍ଗଳା, ଇଂରାଜୀ, ପାର୍ସି, ତେଲଗୁ ଭାଷାରେ ସେ ନିଜ ଚେଷ୍ଟାରେ ଜ୍ଞାନ ଅର୍ଜନ କରିଥିଲେ । ଯୌବନରେ ପ୍ରଥମେ ଦଶ-ବାର ବର୍ଷ ସେ ବାଲେଶ୍ୱରରେ ସ୍କୁଲ ଶିକ୍ଷକରୂପେ କାର୍ଯ୍ୟ କରିଥିଲେ । ତା'ପରେ ପ୍ରାୟ ପଚିଶ ବର୍ଷ ଓଡ଼ିଶାର ବିଭିନ୍ନ ଗଡ଼ଜାତ ରାଜ୍ୟରେ ଦେଓ୍ୱାନ ବା ମାନେଜରରୂପେ

କାର୍ଯ୍ୟ କରି ଶେଷଜୀବନରେ କଟକରେ ନଅବର୍ଷ ଏବଂ ବାଲେଶ୍ୱରରେ ତେରବର୍ଷ ଅବସର ସମୟ କଟାଇଥିଲେ। ତାଙ୍କ ଜୀବନର ଏହି ଅନୁଭୂତି ଘେନି ସେ ବିଭିନ୍ନ ସ୍ଥାନରେ ରହିଥିବା ସମୟରେ ତାଙ୍କର କାବ୍ୟ, କବିତା, ଗଳ୍ପ ଓ ଉପନ୍ୟାସମାନ ଲେଖିଥିଲେ। ତାଙ୍କର କାବ୍ୟ, କବିତା, ଗଳ୍ପ ଓ ଉପନ୍ୟାସମାନଙ୍କର ବିଷୟବସ୍ତୁ ଏବଂ ଚରିତ୍ରମାନ ତାଙ୍କର ଏହି ପରିବେଶ ଓ ଅନୁଭୂତିରୁ ଉଦ୍ଭୂତ।

ଜନ୍ମର ଅଢ଼େଇବର୍ଷ ମଧ୍ୟରେ ଉଭୟ ବାପା ଓ ମା'ଙ୍କୁ ହରାଇ ଫକୀରମୋହନ ଆଠ-ନଅବର୍ଷ ବୟସ ପର୍ଯ୍ୟନ୍ତ ଅତି ରୁଗ୍ଣ ଅବସ୍ଥାରେ ଠାକୁରମା'ଙ୍କ ଯତ୍ନରେ ବଢ଼ିଥିଲେ। ତାଙ୍କର ଜ୍ୟେଷ୍ଠତାତ ପୁରୁଷୋତ୍ତମ ସେନାପତି ଏବଂ ଜେଠାଇ ମା' ତାଙ୍କପ୍ରତି ସହାନୁଭୂତିଶୀଳ ନଥିଲେ। ୧୮୫୨ ମସିହାରେ ଚାଟଶାଳୀ ପାଠ ଆରମ୍ଭ କଲାବେଳକୁ ତାଙ୍କୁ ନଅବର୍ଷ ବୟସ ହୋଇଥିଲା। ସେ ସମୟରେ ବାଲେଶ୍ୱର ଏବଂ ମେଦିନୀପୁର ଜିଲ୍ଲାର ଗ୍ରାମମାନଙ୍କରେ ଲୋକମାନେ ଘରୋଇ ଚାଟଶାଳୀ ବସାଇ କଟକ ଜିଲ୍ଲାରୁ ଆସୁଥିବା କରଣ ଓ ମାଟିବଂଶ ଓଝା ଜାତିର ଅବଧାନମାନଙ୍କଦ୍ୱାରା ତାଙ୍କର ପିଲାମାନଙ୍କୁ ପାଠ ପଢ଼ାଉଥିଲେ। ଅବଧାନମାନଙ୍କର ଦରିଦ୍ର ଅବସ୍ଥା, ପାଠ ପଢ଼ାଇବା ଏବଂ ଅଭିଭାବକମାନଙ୍କଠାରୁ ପିଲାମାନଙ୍କ ପାଇଁ ଦରମା ଆଦାୟ ପ୍ରଣାଳୀ, ଚାଟଶାଳୀମାନଙ୍କରେ ଶୃଙ୍ଖଳାରକ୍ଷା ଓ ପିଲାମାନଙ୍କୁ ବିଭିନ୍ନ ପ୍ରକାର ଶାରୀରିକ ଦଣ୍ଡ ଦେବାର ରୀତି ଏବଂ ସେ ନିଜେ କିପରି ସ୍କୁଲ ସମୟରେ ଅବଧାନଙ୍କୁ ରୋଷେଇବାସ କାମରେ ସାହାଯ୍ୟ କରୁଥିଲେ – ଏ ସମସ୍ତ ବିଷୟ ଫକୀରମୋହନ ତାଙ୍କ ଆତ୍ମଜୀବନଚରିତ ବହିରେ ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି। ଚାଟଶାଳୀରେ ପଢ଼ିବା ସମୟରେ ସେ ମଧ୍ୟ ଗୋଟିଏ ଅବୈତନିକ ପାର୍ସି ସ୍କୁଲରେ ପଢ଼ିଥିଲେ। ସେ ଲେଖିଛନ୍ତି ଯେ, ସେ ସମୟରେ ବାଇବେଲ୍ ଛଡ଼ା ଓଡ଼ିଆରେ ଅନ୍ୟ କୌଣସି ଛାପା ବହି ନଥିଲା ଏବଂ କଟକ ମିସନ୍ ପ୍ରେସ୍ ଛଡ଼ା ଓଡ଼ିଶାରେ ଅନ୍ୟ କୌଣସି ଛାପାଖାନା ନଥିଲା। ବାଲେଶ୍ୱରରେ ପାଦ୍ରି ସାହେବମାନଙ୍କର ଗୋଟିଏ ସ୍କୁଲ ଥିଲା। ସେଥିରେ ବାଇବେଲ୍ ବ୍ୟତୀତ ଅନ୍ୟ କୌଣସି ବହି ପଢ଼ାହେଉନଥିଲା। ଜାତିଯିବା ଭୟରେ ହିନ୍ଦୁ ପିଲାମାନେ ସେ ସ୍କୁଲରେ ପଢୁନଥିଲେ।

ଚାଟଶାଳୀ ଶିକ୍ଷା ପରେ ଆଉ ଉପରକୁ ପାଠ ନ ପଢ଼ାଇ ତାଙ୍କର ବଡ଼ବାପା ତାଙ୍କୁ ବାଲେଶ୍ୱର ବନ୍ଦରରେ ଜାହାଜମାନଙ୍କର ପାଲ ଯୋଗାଣ ଏବଂ ସିଲାଇ ପ୍ରଭୃତି କାର୍ଯ୍ୟରେ କାମ ଶିଖିବାପାଇଁ ନିଯୁକ୍ତ କଲେ। ପୁରାତନ ବାଲେଶ୍ୱର ବନ୍ଦର ସେ ସମୟରେ ଶେଷ ପର୍ଯ୍ୟାୟରେ ପହଞ୍ଚିଥିଲା। ଇଂରେଜମାନେ ଭାରତବର୍ଷରେ ବାଣିଜ୍ୟ କରିବାକୁ ଆସିବା ସମୟରେ ବାଲେଶ୍ୱର ବନ୍ଦର କେବଳ ଭାରତବର୍ଷରେ ନୁହେଁ, ୟୁରୋପର ବିଭିନ୍ନ ଦେଶରେ ମଧ୍ୟ ଜଣାଶୁଣା

ଥିଲା । ବଙ୍ଗଳାରେ ବ୍ୟବସାୟ ଆରମ୍ଭ କରିବା ପୂର୍ବରୁ ଇଂରେଜ, ଫରାସୀ, ଓଲନ୍ଦାଜ ଏବଂ ଦୀନାମାର୍ ଜାତିର ବଣିକମାନେ ବାଲେଶ୍ୱରରେ ବାଣିଜ୍ୟ ଆରମ୍ଭ କରିଥିଲେ । ଫକୀରମୋହନଙ୍କ ପିଲା ସମୟରେ ତଥାପି ପାଞ୍ଚ-ଛଅ ଶହ ପାଲଟଣା ଜାହାଜ ବାଲେଶ୍ୱର ବନ୍ଦରରୁ ଯିବାଆସିବା କରୁଥିଲେ । ଅଧିକାଂଶ ଜାହାଜ ଲୁହା ବୋହିବା କାର୍ଯ୍ୟରେ ନିଯୁକ୍ତ ଥିଲା । ଅବଶିଷ୍ଟ ଜାହାଜ ରେଙ୍ଗୁନ୍, ମାନ୍ଦ୍ରାଜ, କଲମ୍ବୋ ଏବଂ ଦକ୍ଷିଣ-ପୂର୍ବ ଏସିଆର ଦ୍ୱୀପମାନଙ୍କୁ ବିଭିନ୍ନ ପ୍ରକାର ଦ୍ରବ୍ୟ ପରିବହନ କରୁଥିଲେ । ମାପ ଅନୁସାରେ ପାଲ ତିଆରି କରି ଠିକାଦାରମାନେ ଜାହାଜ କମ୍ପାନୀମାନଙ୍କୁ ଯୋଗାଉଥିଲେ । ଫକୀରମୋହନଙ୍କ ବାପା ଓ ବଡ଼ବାପା ସେହି ଠିକାଦାର କାମ କରୁଥିଲେ ଏବଂ ଦରଜିମାନଙ୍କଦ୍ୱାରା ପାଲ ସିଲାଇ କରାଇ ଜାହାଜ କମ୍ପାନୀମାନଙ୍କୁ ଯୋଗାଉଥିଲେ । ଦରଜିମାନଙ୍କୁ ସିଲାଇପାଇଁ ଦିଆଯାଉଥିବା ବରାଦ, ସେମାନଙ୍କଠାରୁ କାମ ଆଦାୟ ପ୍ରଭୃତିର ହିସାବ ରଖିବା ପାଇଁ ସେମାନେ ଗୁମାସ୍ତାମାନ ରଖିଥିଲେ । ସେହି ଗୁମାସ୍ତାମାନଙ୍କ ଅଧୀନରେ କାମ ଶିଖିବାପାଇଁ ଫକୀରମୋହନ ନିଯୁକ୍ତ ହୋଇଥିଲେ । ସେ କାର୍ଯ୍ୟର ବଳକା ସମୟରେ ସେ ନିଜେ ପାଲ ସିଲାଇ କାମ କରୁଥିଲେ ।

ଅଳ୍ପକାଳ ପରେ ବନ୍ଦରର ଜାହାଜ ଚଳାଚଳ କାମ ବନ୍ଦ ହୋଇଗଲା । ସେ କାମରେ ଲାଗିଥିବା ଠିକାଦାର, କାରିଗର, ମାଝି, ଖଲାସୀ ଏବଂ ଅନ୍ୟପ୍ରକାର କର୍ମଚାରୀମାନେ ସମସ୍ତେ ବେକାର ହୋଇଗଲେ । ଜାହାଜକାମ ବନ୍ଦହୋଇଯିବାରୁ ଫକୀରମୋହନଙ୍କ ବଡ଼ବାପା ତାଙ୍କୁ ନିକଟବର୍ତ୍ତୀ ଗୋଟିଏ ନିମକମାହାଲ ସିରସ୍ତାରେ କାମ ଶିଖିବାକୁ ରଖାଇଲେ । ଉପରେ କୁହାଯାଇଛି ଯେ, ସେ ସମୟରେ ସୁବର୍ଣ୍ଣରେଖା ମୁହାଣଠାରୁ ଧାମରାମୁହାଣ ପର୍ଯ୍ୟନ୍ତ ବାଲେଶ୍ୱରର ସମୁଦ୍ର ଉପକୂଳରେ ପ୍ରଚୁର ପରିମାଣରେ ପଙ୍ଗାଲୁଣ ମରାଯାଉଥିଲା ଏବଂ ସେଥିରୁ ବହୁପରିମାଣର ଲୁଣ ଦେଶର ବିଭିନ୍ନ ଅଞ୍ଚଳକୁ ଏବଂ ବିଦେଶକୁ ଜାହାଜରେ ରପ୍ତାନି ହେଉଥିଲା । ବାଲେଶ୍ୱରର ବହୁଲୋକ ଏହି ନିମକମାହାଲମାନଙ୍କର ବିଭିନ୍ନ କାମରେ ନିଯୁକ୍ତ ହୋଇ ଜୀବିକା ଅର୍ଜନ କରୁଥିଲେ । ମାତ୍ର ଫକୀରମୋହନ ନିମକମାହାଲରେ ଅଳ୍ପ କାଳ କାର୍ଯ୍ୟ କଲାପରେ ତାହା ମଧ୍ୟ ବନ୍ଦ ହୋଇଗଲା ଏବଂ ସେ କାମରେ ନିଯୁକ୍ତ ଥିବା ବହୁଲୋକ ବେକାର ହୋଇଗଲେ ।

ନିମକମାହାଲ ଉଠିଯିବାପରେ ଫକୀରମୋହନ ବାଲେଶ୍ୱର ସହରର ବାରବାଟୀ ସ୍କୁଲରେ ଦେଢ଼ବର୍ଷ ପଢ଼ିଥିଲେ । ସେ ସ୍କୁଲ ଗୋଟିଏ ଘରୋଇ ସ୍କୁଲ ଥିଲା ଏବଂ ବାଲେଶ୍ୱର ସରକାରୀ ହାଇସ୍କୁଲର ସେକେଣ୍ଡ୍ ମାଷ୍ଟର ସେ ସ୍କୁଲ ପ୍ରତିଷ୍ଠା କରିଥିଲେ । ପ୍ରଥମ ବର୍ଷ ଶେଷରେ ପରୀକ୍ଷାରେ ଫକୀରମୋହନ ପ୍ରଥମ ସ୍ଥାନ ଅଧିକାର କରି ଉପରଶ୍ରେଣୀକୁ ଉନ୍ନୀତ ହୋଇଥିଲେ । ସ୍କୁଲର ଦରମା ସେତେବେଳେ

ମାସକୁ ଚାରିଅଣା ମାତ୍ର ଥିଲା। ସେତିକିମାତ୍ର ଦରମା ଦେଇନପାରିବାରୁ ଛ'ମାସ ପରେ ସେ ସ୍କୁଲରେ ତାଙ୍କର ପଢ଼ା ଶେଷ ହୋଇଥିଲା। ତାଙ୍କ ଜୀବନରେ ସେ ମାତ୍ର ଦେଢ଼ବର୍ଷ ଆଧୁନିକ ସ୍କୁଲରେ ପଢ଼ିଥିଲେ। ପଢ଼ା ଛାଡ଼ିବାପରେ ସ୍କୁଲର ସମ୍ପାଦକ ବାଲେଶ୍ୱର ଜିଲ୍ଲା ସ୍କୁଲର ସେକେଣ୍ଡମାଷ୍ଟର ବାବୁ ଶିବଚନ୍ଦ୍ର ସୋମ ତାଙ୍କୁ ସେ ସ୍କୁଲରେ ମାସକୁ ଅଢ଼େଇଟଙ୍କା ଦରମାରେ ତୃତୀୟ ଶିକ୍ଷକରୂପେ ନିଯୁକ୍ତ କରିଥିଲେ। ସେତେବେଳେ ସବୁ ଜିନିଷପତ୍ର ଅତି ଶସ୍ତା ଥିଲା। ଟଙ୍କାକୁ ଦେଢ଼ମହଣ ଚାଉଳ ଏବଂ ସେହି ଅନୁପାତରେ ଅନ୍ୟ ଜିନିଷମାନ ମଧ୍ୟ ଶସ୍ତାରେ ମିଳୁଥିଲା। କଚେରିରେ ଅମଲାମାନେ ମାସକୁ ତିନିଟଙ୍କାରୁ ଦଶଟଙ୍କା ପର୍ଯ୍ୟନ୍ତ ଦରମା ପାଇ ସ୍ୱଚ୍ଛନ୍ଦରେ ଚଳିପାରୁଥିଲେ। ଫକୀରମୋହନ ମାସିକ ଅଢ଼େଇ ଟଙ୍କାରେ ଚାକିରି ପାଇବାରୁ ତାଙ୍କର ଠାକୁରମା' ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ। ଦୁଇ ମାସ ପରେ ତାଙ୍କର ଦରମା ମାସକୁ ଚାରିଟଙ୍କାକୁ ବୃଦ୍ଧି ପାଇଥିଲା। ସେହି ସ୍କୁଲରେ ଚାକିରି କରୁଥିବାବେଳେ ସେ ଘରୋଇ ଭାବରେ ସଂସ୍କୃତ ଶିକ୍ଷା କରିଥିଲେ।

## ବାଲେଶ୍ୱରର ବାରବାଟୀ ଏବଂ ମିସନ୍ ସ୍କୁଲରେ ଶିକ୍ଷକତା –

୧୮୬୨ ମସିହାରୁ ବାରବାଟୀ ସ୍କୁଲରେ ଦୁଇବର୍ଷ ଶିକ୍ଷାଦାନ କାର୍ଯ୍ୟ କରିବାପରେ ଫକୀରମୋହନ ୧୮୬୪ ମସିହାରେ ବାଲେଶ୍ୱର ମିସନ୍ ସ୍କୁଲରେ ପ୍ରଧାନ ଶିକ୍ଷକ ରୂପେ ନିଯୁକ୍ତ ହୋଇଥିଲେ। ରେଭରେଣ୍ଡ ଏ. ମିଲର୍ ନାମରେ ଜଣେ ସାହେବ ସେତେବେଳେ ସେ ସ୍କୁଲର ସମ୍ପାଦକ ଥିଲେ। ଖ୍ରୀଷ୍ଟିଆନ ଶିକ୍ଷକ ଅଭାବରୁ ସେ ସ୍କୁଲରେ ଦୁଇଜଣ ହିନ୍ଦୁ ଶିକ୍ଷକଙ୍କୁ ନିଯୁକ୍ତ କରିଥିଲେ। ସେ ନିଜେ ପଣ୍ଡିତ ଲୋକ ନଥିଲେ ଏବଂ ହିନ୍ଦୁମାନଙ୍କୁ ଅତ୍ୟନ୍ତ ଘୃଣା କରୁଥିଲେ। ସେ ଫକୀରମୋହନଙ୍କ ଜ୍ଞାନ ଓ କାର୍ଯ୍ୟଦକ୍ଷତା ଜାଣିପାରିଥିଲେ ସୁଦ୍ଧା ଦେବପୂଜକ ହିନ୍ଦୁ ହୋଇଥିବାରୁ ତାଙ୍କୁ ବିଶ୍ୱାସ କରୁନଥିଲେ।

ମିସନ୍ ସ୍କୁଲରେ ଶିକ୍ଷକ ପଦରେ ଥିବା ସମୟରେ ଫକୀରମୋହନ ବାଲେଶ୍ୱରର ଜିଲ୍ଲା କଲେକ୍ଟର ଓ ଅନ୍ୟ ମାଜିଷ୍ଟ୍ରେଟ୍ ପ୍ରଭୃତି ପଦରେ ନିଯୁକ୍ତ ଥିବା ସାହେବମାନଙ୍କ ସଂସ୍ପର୍ଶରେ ଆସିଥିଲେ। ପ୍ରଥମେ ସେ ବାଲେଶ୍ୱରର ଅସ୍ଥାୟୀ କଲେକ୍ଟର ପଣି ସାହେବ ଏବଂ ଜଏଣ୍ଟ ମାଜିଷ୍ଟ୍ରେଟ୍ ମେୟରସ୍ ସାହେବଙ୍କୁ ବଙ୍ଗଳା ପଢ଼ାଉଥିଲେ। ଆର୍ଥିକ ଉନ୍ନତି ନିମିତ୍ତ ପଣି ସାହେବ ତାଙ୍କୁ ବାଲେଶ୍ୱର କଲେକ୍ଟରୀ ସିରସ୍ତାରେ ମୁନ୍‌ସି କାର୍ଯ୍ୟରେ ନିଯୁକ୍ତ କରିଥିଲେ; ମାତ୍ର ତା ପରେ ଇ.ସି.ବି. ହାଲମ୍ ନାମରେ ଜଣେ ସାହେବ ମିସନ୍ ସ୍କୁଲର ସମ୍ପାଦକରୂପେ ନିଯୁକ୍ତ ହେବାରୁ ଫକୀରମୋହନ ମିସନ୍ ସ୍କୁଲରେ ତାଙ୍କର ପୂର୍ବ ପଦକୁ ଫେରିଆସିଲେ। ହାଲମ୍

ସାହେବ ଜଣେ ବିଦ୍ୱାନ୍ ବ୍ୟକ୍ତି ଥିଲେ ଏବଂ ଓଡ଼ିଆ ଭାଷାରେ ବିଶେଷ ପାରଦର୍ଶିତା ଲାଭ କରିଥିଲେ। ଇଂରେଜମାନଙ୍କର ଓଡ଼ିଆ ଶିକ୍ଷାର ସୁବିଧା ନିମିତ୍ତ ସେ ଖଣ୍ଡିଏ ଓଡ଼ିଆ-ଇଂରାଜୀ ବ୍ୟାକରଣ ରଚନା କରିଥିଲେ। ସେହି ପୁସ୍ତକ ପ୍ରଣୟନ ସମୟରେ ଫକୀରମୋହନ ତାଙ୍କୁ ସାହାଯ୍ୟ କରିଥିଲେ। ସେ ସମୟରେ ଓଡ଼ିଶାରେ ବର୍ଣ୍ଣାକୁଲର ବିଦ୍ୟାଳୟର ଶେଷ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରମାନଙ୍କୁ ମାସିକ ଚାରିଟଙ୍କା ବୃତ୍ତି ଦିଆଯାଇ ଚାରିବର୍ଷ ଇଂରାଜୀ ସ୍କୁଲରେ ପଢ଼ାଇବାର ନିୟମ ପ୍ରଚଳିତ ଥିଲା। ପ୍ରଥମ ବର୍ଷରେ ବାଲେଶ୍ୱର ମିସନ୍ ସ୍କୁଲରୁ ଚାରିଜଣ ଛାତ୍ର ଉତ୍ତୀର୍ଣ୍ଣ ହୋଇଥିଲେ ଏବଂ ସେମାନଙ୍କ ମଧ୍ୟରୁ ତିନିଜଣ ଚାରିଟଙ୍କା ହିସାବରେ ବୃତ୍ତି ପାଇଥିଲେ। ସମଗ୍ର ଓଡ଼ିଶାରେ ବାଲେଶ୍ୱର ମିସନ୍ ସ୍କୁଲ ସର୍ବଶ୍ରେଷ୍ଠ ସ୍ଥାନ ଅଧିକାର କରିଥିଲା। ସେଥିପାଇଁ ହାଲମ୍ ସାହେବ ଫକୀରମୋହନଙ୍କ ଉପରେ ଖୁସିହୋଇ ତାଙ୍କର ମାସିକ ଦରମା ପଚିଶ ଟଙ୍କାକୁ ବୃଦ୍ଧି କରିଦେଇଥିଲେ।

ଏହି ସମୟରେ ଜନ୍ ବୀମ୍ସ୍ ନାମରେ ଜଣେ ସାହେବ ବାଲେଶ୍ୱର ଜିଲ୍ଲାର କଲେକ୍ଟର ହୋଇ ଆସିଲେ। ସେ ଜଣେ ଅସାଧାରଣ ପଣ୍ଡିତ ବ୍ୟକ୍ତି ବୋଲି ସେସମୟର ସିଭିଲିଆନ୍ ଏବଂ ଭାରତୀୟ ପଣ୍ଡିତମାନଙ୍କ ମଧ୍ୟରେ ଖ୍ୟାତିଲାଭ କରିଥିଲେ। ତାଙ୍କର ଏଗାରଟା ଭାଷାରେ ପାରଦର୍ଶିତା ଥିଲା ଏବଂ ସେ ସମୟରେ ସେ ଆର୍ଯ୍ୟଭାଷା ସମ୍ବନ୍ଧୀ ବ୍ୟାକରଣ (Comparative Grammar of Indian Languages) ଲେଖୁଥିଲେ। ସେଥିନିମିତ୍ତ ତାଙ୍କର ସଂସ୍କୃତ, ବଙ୍ଗଳା ଓ ଓଡ଼ିଆ ଭାଷାରେ ଜ୍ଞାନ ଥିବା ଜଣେ ପଣ୍ଡିତ ଆବଶ୍ୟକ ହେଲା। ମିସନ୍ ସ୍କୁଲର ସମ୍ପାଦକ ହାଲମ୍ ସାହେବ ଫକୀରମୋହନଙ୍କୁ ସଙ୍ଗରେ ନେଇ ବୀମ୍ସ୍ ସାହେବଙ୍କ ସହିତ ସାକ୍ଷାତ କରାଇଦେଇଥିଲେ। ପ୍ରଥମ ସାକ୍ଷାତରେ ବୀମ୍ସ୍ ସାହେବ ଫକୀରମୋହନଙ୍କୁ ଜଣେ ପଣ୍ଡିତ ଲୋକ ବୋଲି ଜାଣିପାରିଲେ ଏବଂ ପ୍ରତି ସପ୍ତାହରେ ଦିନେ ତାଙ୍କ ସହିତ ଚର୍ଚ୍ଚା କରିବାକୁ ଆଦେଶ ଦେଲେ। ସେହି ଆଦେଶ ଅନୁସାରେ ଫକୀରମୋହନ ତାଙ୍କ ସହିତ ସଂସ୍କୃତ ଶ୍ଲୋକ, ବଙ୍ଗଳା ପଦ୍ୟ ଏବଂ ଓଡ଼ିଆ ପୁରାତନ କାବ୍ୟ ପ୍ରଭୃତି ଆଲୋଚନା କରୁଥିଲେ। ସେତେବେଳେ ବାଲେଶ୍ୱରରେ ନିମ୍ନଶ୍ରେଣୀର ହାକିମ ଏବଂ ଉଚ୍ଚ ବେତନଭୋଗୀ କର୍ମଚାରୀ ସବୁ ବଙ୍ଗାଳୀ ଥିଲେ ଏବଂ ଓଡ଼ିଆ ଓ ବଙ୍ଗାଳୀମାନଙ୍କ ମଧ୍ୟରେ ବିଶେଷ ବିବାଦ ଥିଲା। ଇଂରେଜ ହାକିମମାନେ ଫକୀରମୋହନଙ୍କ ସପକ୍ଷ ଥିବାରୁ ତାଙ୍କୁ ବଙ୍ଗାଳୀ ହାକିମ ଓ କର୍ମଚାରୀମାନେ ଭୟକରୁଥିଲେ। ଜନ୍ ବୀମ୍ସ୍ ସ୍ତ୍ରୀ-ଶିକ୍ଷାର ପ୍ରସାର ଏବଂ ଓଡ଼ିଆ ଭାଷାର ରକ୍ଷା ଓ ଉନ୍ନତି ବିଷୟରେ ଫକୀରମୋହନଙ୍କୁ ଯଥେଷ୍ଟ ସାହାଯ୍ୟ କରିଥିଲେ। ବ୍ୟକ୍ତିଗତ ଭାବରେ ମଧ୍ୟ ସେ ଫକୀରମୋହନଙ୍କୁ

ଜଣେ ଦେଶହିତୈଷୀ ପଣ୍ଡିତ ଲୋକ ବୋଲି ପ୍ରଶଂସା କରୁଥିଲେ ଏବଂ ଓଡ଼ିଶାରେ ଥିବାପର୍ଯ୍ୟନ୍ତ ତାଙ୍କର ଜଣେ ପରମ ଉପକାରୀ ବନ୍ଧୁଭାବରେ ତାଙ୍କୁ ସବୁବେଳେ ସାହାଯ୍ୟ କରୁଥିଲେ ।

ମିସନ୍ ସ୍କୁଲରେ ଚାକିରି କରୁଥିବାବେଳେ ଫକୀରମୋହନ କଟକ ନର୍ମାଲ ସ୍କୁଲରେ ମାସିକ ତିରିଶ ଟଙ୍କା ବେତନରେ ଦ୍ୱିତୀୟ ଶିକ୍ଷକରୂପେ ନିଯୁକ୍ତି ପାଇଥିଲେ । ମାତ୍ର ହାଲମ୍ ସାହେବ ତାଙ୍କର ଦରମା ମାସିକ ତିରିଶଟଙ୍କାକୁ ବଢ଼ାଇଦେଇ ମିସନ୍‌ସ୍କୁଲ ଛାଡ଼ିବାକୁ ମନାକରିଥିଲେ ।

ଫକୀରମୋହନ ମିସନ୍‌ସ୍କୁଲରେ ଚାକିରି କରୁଥିବା ସମୟରେ ୧୮୬୬ ମସିହାରେ ଓଡ଼ିଶା ଡିଭିଜନରେ ଭୟଙ୍କର ନ'ଅଙ୍କ ଦୁର୍ଭିକ୍ଷ ହୋଇଥିଲା । ସେ ଦୁର୍ଭିକ୍ଷରେ ବାଲେଶ୍ୱରରେ ଗଣମୃତ୍ୟୁର ସେ ପ୍ରତ୍ୟକ୍ଷଦର୍ଶୀ ଥିଲେ । ରେଭେନ୍‌ସା ସାହେବ ସେତେବେଳେ ଅଳ୍ପଦିନ ପୂର୍ବରୁ ଓଡ଼ିଶା ଡିଭିଜନ୍‌ର କମିସନର୍ ହୋଇ ଆସିଥାନ୍ତି । ବର୍ଷା ଅଭାବରୁ ଦୁର୍ଭିକ୍ଷର ଆଶଙ୍କା ଦେଖାଦେଲାବେଳେ ଅମଲାମାନେ କିପରି କମିସନର୍‌ଙ୍କୁ ଗ୍ରାମମାନଙ୍କରେ ବହୁ ଧାନ ମହଜୁଦ୍ ଥିବା ବିଷୟରେ ଭୁଲ ତଥ୍ୟ ଦେଲେ, ଶେଷରେ ଦୁର୍ଭିକ୍ଷ ପଡ଼ିଲାବେଳେ ବଙ୍ଗ ଦେଶରୁ ଓ ରେଙ୍ଗୁନ୍‌ରୁ କିପରି ଚାଉଳ ଆସିପାରିଲାନାହିଁ ଏବଂ ଅନାହାରରେ ଓଡ଼ିଶାରେ କିପରି ଦଶ ଲକ୍ଷରୁ ଊର୍ଦ୍ଧ୍ୱ ଲୋକ ପୋକମାଛି ପରି ମରିଗଲେ, ତାହା ଜଣେ ପ୍ରତ୍ୟକ୍ଷଦର୍ଶୀଭାବରେ ଫକୀରମୋହନ ତାଙ୍କ 'ଆତ୍ମଜୀବନଚରିତ' ବହିରେ ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି ।

ମିସନ୍‌ସ୍କୁଲରେ ପଢ଼ାଉଥିବାବେଳେ ଫକୀରମୋହନ ଓଡ଼ିଆ ଭାଷାରେ ପାଠ୍ୟପୁସ୍ତକର ଅଭାବ ଅନୁଭବ କରି ପିଲାଙ୍କ ପଢ଼ାର ସୁବିଧା ନିମିତ୍ତ ସାହିତ୍ୟ, ଇତିହାସ ଓ ଗଣିତରେ କେତେ ଖଣ୍ଡି ପାଠ୍ୟପୁସ୍ତକ ଲେଖିଥିଲେ । ଓଡ଼ିଆ ଭାଷାରେ ସ୍କୁଲ ପାଠ୍ୟପୁସ୍ତକ ଅଭାବହେତୁ ବଙ୍ଗାଳୀମାନେ ସ୍କୁଲମାନଙ୍କରୁ ଓଡ଼ିଆ ଭାଷା ଉଠାଇଦେଇ କେବଳ ବଙ୍ଗଳାଭାଷାରେ ପାଠ ପଢ଼ାଇବାକୁ ଆନ୍ଦୋଳନ କରୁଥିଲେ । ତାହା ବିରୁଦ୍ଧରେ କଟକରେ ଉତ୍କଳ-ଦୀପିକା ପତ୍ରିକା ଦୃଢ଼ମତ ପ୍ରକାଶ କରୁଥିଲେ ଏବଂ ସରକାର ବଙ୍ଗଳା ଓ ହିନ୍ଦୀଭାଷାରେ ପାଠ୍ୟପୁସ୍ତକ ରଚନାକୁ ଯେପରି ପ୍ରୋତ୍ସାହନ ଦେଉଥିଲେ, ସେହିପରି ଓଡ଼ିଆରେ ପାଠ୍ୟପୁସ୍ତକ ଲେଖିବାକୁ ପ୍ରୋତ୍ସାହନ ଦେବାକୁ ଯୁକ୍ତି କରୁଥିଲେ । ସେତେବେଳେ ଓଡ଼ିଶାର ସ୍କୁଲମାନଙ୍କରେ କେବଳ ବଙ୍ଗଳା ଭାଷାରେ ଲିଖିତ ପାଠ୍ୟପୁସ୍ତକ ସବୁ ପଢ଼ାହେଉଥିଲା । ୧୮୬୬ ମସିହାରେ ଫକୀରମୋହନ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ଲିଖିତ 'ଜୀବନଚରିତ' ବହିର ଓଡ଼ିଆ ଅନୁବାଦ କରି ପ୍ରକାଶ କରିଥିଲେ । ତାହାପରେ ୧୮୬୯ ଏବଂ ୧୮୭୦ ମସିହାରେ 'ଭାରତବର୍ଷର ଇତିହାସ'

ପ୍ରଥମଭାଗ ଓ ଦ୍ୱିତୀୟଭାଗ ଏବଂ ଅଙ୍କମାଳା ଦ୍ୱିତୀୟଭାଗ ପ୍ରକାଶ କରିଥିଲେ। ସେଗୁଡ଼ିକ ବ୍ୟତୀତ ଖଣ୍ଡିଏ ବ୍ୟାକରଣ ବହି ମଧ୍ୟ ସେ ଲେଖିଥିଲେ। ସେସବୁ ବହି ଅନୁମୋଦିତ ପାଠ୍ୟପୁସ୍ତକ ରୂପେ ସ୍କୁଲମାନଙ୍କରେ ପ୍ରଚଳିତ ହୋଇଥିଲା। ପାଠ୍ୟପୁସ୍ତକ ରଚନାରୁ ଫକୀରମୋହନ ବହିଲେଖା କାମ ଆରମ୍ଭ କରିଥିଲେ। ସେ ସମୟରେ ସେ ଓଡ଼ିଆ ଭାଷାର ଉନ୍ନତି ଓ ପ୍ରସାର ନିମିତ୍ତ ସର୍ବଦା ଚେଷ୍ଟା କରୁଥିଲେ। ସେତେବେଳେ ସେ 'ରାଜପୁତ୍ରର ଇତିହାସ' ନାମକ ଖଣ୍ଡିଏ ଗଦ୍ୟପୁସ୍ତକ ଲେଖିଥିଲେ। ସେ ପୁସ୍ତକ ଛପାଇବାକୁ ଚାରି ଶହ ଟଙ୍କା ଖର୍ଚ୍ଚ ହେବ ବୋଲି କଟକ ମିସନ୍‌ପ୍ରେସ୍ କହିଲା। କଟକ ମିସନ୍‌ପ୍ରେସ୍ ସେତେବେଳେ ଓଡ଼ିଶାରେ ଏକମାତ୍ର ପ୍ରେସ୍ ଥିଲା। କଟକର ପ୍ରିଣ୍ଟିଂ କମ୍ପାନୀ ପ୍ରେସ୍ ସେତେବେଳେ ନୂଆକରି କାମ ଆରମ୍ଭ କରିଥାଏ। ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତି ନିମିତ୍ତ ଫକୀରମୋହନ, ରାଧାନାଥ ରାୟ ପ୍ରଭୃତି ଗୋଟିଏ ସଭା ସ୍ଥାପନ କଲେ। ସେ ସଭାରେ ଉତ୍କଳର ସମସ୍ତ ପ୍ରାଚୀନ କାବ୍ୟ ଛାପିବାର ସ୍ଥିର ହେଲା। କଟକ ପ୍ରିଣ୍ଟିଂ କମ୍ପାନୀ ପରି ଦୁଇଟଙ୍କା ଅଂଶ ଦାମ୍‌ରେ ଗୋଟିଏ କମ୍ପାନୀ ମଧ୍ୟ ଗଢ଼ାଗଲା। ପ୍ରାଚୀନ କାବ୍ୟମାନ ଛାପି ସେଗୁଡ଼ିକର ବିକ୍ରୟ-ଲବ୍ଧ ଅର୍ଥରେ ଅନ୍ୟ ପୁସ୍ତକମାନ ଛାପିବାର ସ୍ଥିର ହେଲା। ପ୍ରଥମେ 'ରସକଲ୍ଲୋଳ' କାବ୍ୟ ଛାପିବା ପାଇଁ ତାହାର ଟୀକା ପ୍ରସ୍ତୁତ କରାହେଉଥିଲା। ପରେ ସଭାର ସଭ୍ୟମାନେ ଜାଣିପାରିଲେ ଯେ ସେ ବହି ବିକ୍ରି ହେବାପାଇଁ ବହୁସମୟ ଲାଗିଯିବ ଏବଂ ସେ ସମୟ ପର୍ଯ୍ୟନ୍ତ ଅନ୍ୟ ବହି ଛପାଯାଇ ପାରିବ ନାହିଁ। ସେଥିପାଇଁ ସେ ସଭା ସ୍ଥିର କଲା ଯେ କଟକ ପ୍ରିଣ୍ଟିଂ କମ୍ପାନୀ ପରି ଗୋଟିଏ କମ୍ପାନୀ କରି ଗୋଟିଏ ପ୍ରେସ୍ ସ୍ଥାପନ କରାଯିବ। ମାତ୍ର ସେ କମ୍ପାନୀର କାମ ଆଗେଇପାରିଲାନାହିଁ।

୧୮୬୮ ମସିହାରେ ଫକୀରମୋହନଙ୍କ ଉଦ୍ୟମରେ 'ପି.ଏମ୍. ସେନାପତି ଆଣ୍ଡ କୋ' ନାମରେ ଗୋଟିଏ କମ୍ପାନୀ ସ୍ଥାପିତ ହେଲା ଏବଂ ତାର ପ୍ରତ୍ୟେକ ଅଂଶର ଦାମ୍ ପାଞ୍ଚଟଙ୍କା ହେଲା। ସେହି କମ୍ପାନୀ ଦ୍ୱାରା ବାଲେଶ୍ୱରରେ ଗୋଟିଏ ପ୍ରେସ୍ ସ୍ଥାପନ କରିବାପାଇଁ ସ୍ଥିର ହେଲା। ସେଥିପାଇଁ ୧୨୦୦ ଟଙ୍କା ସଂଗୃହୀତ ହେଲା। ଫକୀରମୋହନ ନିଜ ହାତରୁ ମାସକୁ ୧୫ଟଙ୍କା ଦେଇ କଲିକତାରେ ଛପାକାର୍ଯ୍ୟ ଶିଖିବାପାଇଁ ତାଙ୍କର ଜଣେ ମାମୁପୁଅ ଭାଇକୁ ପଠାଇଲେ। ପ୍ରଥମେ ପ୍ରେସ କିଣିବାରେ ସେ ଠକେଇରେ ପଡ଼ିଲେ। ମେଦିନୀପୁର ମିସନ୍‌ପ୍ରେସ୍ ତାଙ୍କୁ ଗୋଟିଏ ଅକର୍ମଣ୍ୟ ପୁରୁଣା ପ୍ରେସ୍ ଠକେଇରେ ବିକ୍ରି କରିଥିଲା। ପରେ ମନମୋହନ ଦାସ ନାମରେ ବାଲେଶ୍ୱରର ଜଣେ ଜମିଦାରଙ୍କଠାରୁ ୮୦୦ ଟଙ୍କା ଧାର କରି ସେ କଲିକତାରୁ ଗୋଟିଏ ନୂତନ ପ୍ରେସ୍ କିଣିଲେ

ଏବଂ ତାହା ବାଲେଶ୍ୱର ମୋତିଗଞ୍ଜରେ ସ୍ଥାପିତ ହେଲା। ବାଲେଶ୍ୱର ଜିଲ୍ଲା କଲେକ୍ଟର ମଧ୍ୟ ସେ କାର୍ଯ୍ୟରେ ତାଙ୍କୁ ସାହାଯ୍ୟ କଲେ ଏବଂ କଚେରିର ଅନେକ ଗୁଡ଼ିଏ ଫରମ୍ ସେ ପ୍ରେସରେ ଛପାଇବାକୁ ଦେଲେ। ଛପାଖାନା ସୁଚାରୁରୂପେ ଚାଲିଥିଲା ଏବଂ ଆଶାନୁରୂପ ଲାଭ ମଧ୍ୟ ହୋଇଥିଲା। କଟକର ପ୍ରିଣ୍ଟିଂ କମ୍ପାନୀର ସାପ୍ତାହିକ ପତ୍ରିକା 'ଉତ୍କଳ-ଦୀପିକା' ଢାଞ୍ଚାରେ ପି.ଏମ୍. ପ୍ରିଣ୍ଟିଂ କମ୍ପାନୀ 'ବୋଧଦାୟିନୀ ଏବଂ ବାଲେଶ୍ୱର ସମ୍ବାଦବାହିକା' ନାମରେ ଗୋଟିଏ ପାକ୍ଷିକ ପତ୍ରିକା ପ୍ରକାଶ ଆରମ୍ଭ କଲେ। ବୋଧଦାୟିନୀ ଅଂଶ ସାହିତ୍ୟ-ବିଷୟକ ଏବଂ ସମ୍ବାଦବାହିକା ଅଂଶ ସମ୍ବାଦ-ବିଷୟକ ଥିଲା। ଲେଖକ ଅଭାବରୁ ଅଧିକାଂଶ ଲେଖା ଫକୀରମୋହନ ନିଜେ ଲେଖୁଥିଲେ। ମୋଟେ ଚାଳିଶ-ପଚାଶ ଲୋକ ପତ୍ରିକାର ଗ୍ରାହକ ଥିଲେ; ସେଥିରୁ କେବଳ ଆଠ-ଦଶ ଜଣଙ୍କଠାରୁ ପତ୍ରିକାର ମୂଲ୍ୟ ଆଦାୟ ହୋଇପାରୁଥିଲା। ଛାପାଖାନା ଆରମ୍ଭର ଛ'ମାସ ପରେ ବାଲେଶ୍ୱରର କଲେକ୍ଟର ଜନ୍ ବୀମସ୍ ଓଡ଼ିଶାର କମିସନର୍ ରେଭେନ୍‌ସା ସାହେବଙ୍କ ସହିତ ତାହାକୁ ଦେଖିବାକୁ ଆସିଥିଲେ। ରେଭେନ୍‌ସା ସାହେବ ଖୁସି ହୋଇ ଦଶଟଙ୍କା ପାରିତୋଷିକ ଦେଇଥିଲେ। ସେ ଟଙ୍କା ତାଙ୍କ ନାମରେ ଦୁଇଗୋଟି ଅଂଶ ଧନରୂପେ ଜମାହୋଇଥିଲା। କମ୍ପାନୀ ଭାଙ୍ଗିଯିବା ପରେ ଲାଭ ସହିତ ତାଙ୍କୁ ୩୦ ଟଙ୍କା ଫେରାଇଦିଆଯାଇଥିଲା।

ସେ ସମୟରେ ଓଡ଼ିଆ ଭାଷାର ପ୍ରସାର ନିମିତ୍ତ ଗ୍ରାମାଞ୍ଚଳରେ ସ୍କୁଲମାନ ସ୍ଥାପନ କରିବା ପାଇଁ ଉପରୋକ୍ତ ସମିତିର ଗୋଟିଏ ସଭାରେ ସ୍ଥିର ହୋଇଥିଲା। ସେହି କାର୍ଯ୍ୟକ୍ରମରେ ରେମୁଣା କାୟସ୍ଥପଲ୍ଲୀ ନିକଟରେ ଗୋଟିଏ ସ୍କୁଲ ସ୍ଥାପିତ ହୋଇଥିଲା। ରାଜା ବୈକୁଣ୍ଠନାଥ ଦେ ସ୍କୁଲର ବର୍ଷକର ସମସ୍ତ ବ୍ୟୟ ତିନି ଶହ ଟଙ୍କା ଏକକାଳୀନ ଅଗ୍ରିମ ଭାବରେ ଦାନକରିଥିଲେ। ବାଲେଶ୍ୱରର ମୋତିଗଞ୍ଜ ବଜାର ନିକଟରେ ଗଡ଼ଗଡ଼ିଆ ପୁଷ୍କରିଣୀ ପାହାଚ ପାଖରେ ପ୍ରତିଦିନ ଫକୀରମୋହନ, ରାଧାନାଥ ରାୟ, ମଧୁସୂଦନ ଦାସ ପ୍ରଭୃତି ଏକତ୍ର ହୋଇ ଓଡ଼ିଆ ସାହିତ୍ୟର ଉନ୍ନତି ଓ ପ୍ରସାର ବିଷୟରେ ଆଲୋଚନା କରୁଥିଲେ। ସେହି ସମୟରେ ଫକୀରମୋହନ ନିଜ ଉଦ୍ୟମରେ କେତେକ ଇଂରାଜୀ ବହି ପଢ଼ି ଇଂରାଜୀଭାଷା ଶିକ୍ଷାକରୁଥିଲେ।

୧୮୬୦ ମସିହାଠାରୁ ୧୮୭୦ ମସିହା ପର୍ଯ୍ୟନ୍ତ କଟକରେ ଓ ବାଲେଶ୍ୱରରେ ଓଡ଼ିଆ ଓ ବଙ୍ଗାଳୀମାନଙ୍କ ମଧ୍ୟରେ ଭୀଷଣ ବିବାଦ ଚାଲିଥିଲା। ଓଡ଼ିଶାର ସବୁ ସରକାରୀ ମହକୁମାରେ ପ୍ରଧାନ କର୍ମଚାରୀମାନେ ବଙ୍ଗାଳୀ ଥିଲେ। ସ୍କୁଲ ଏବଂ ଅଫିସ୍‌ମାନଙ୍କରୁ ଓଡ଼ିଆ ଭାଷା ଉଠାଇଦେଇ ବଙ୍ଗଳା ଭାଷା ଚଳାଇବାକୁ ସେମାନେ ଚେଷ୍ଟା କରୁଥିଲେ। ଫକୀରମୋହନ ଲେଖିଛନ୍ତି– 'ପବ୍ଲିକ୍ ଓ୍ୟାର୍କସ୍

ଏବଂ ଡାକ ବିଭାଗରେ ଜଣେ ମାତ୍ର ଓଡ଼ିଆର ପ୍ରବେଶ ଅଧିକାର ନଥିଲା। କଟକରେ ବଙ୍ଗାଳୀମାନେ ସ୍କୁଲ ଏବଂ କଚେରିମାନଙ୍କରୁ ଓଡ଼ିଆ ଭାଷା ଉଠାଇଦେଇ ବଙ୍ଗଳା ପ୍ରଚଳନ କରିବାକୁ ବହୁବାର ଚେଷ୍ଟା କରିଥିଲେ। କଲିକତାରେ ସରକାରଙ୍କ ପାଖକୁ ଦରଖାସ୍ତ କରି ଏବଂ କେତେକ ଖବରକାଗଜରେ ଲେଖି ସେମାନେ ଏ ଦିଗରେ ସଫଳ ହେବାକୁ ଯତ୍ନ କରୁଥିଲେ। ଗୌରୀଶଙ୍କର ପ୍ରଭୃତି ଉତ୍କଳ-ଦୀପିକା ମାଧମରେ ତାହାର ଦୃଢ଼ ପ୍ରତିରୋଧ କରୁଥିଲେ। କେତେକ ବଙ୍ଗାଳୀ ଲୋକ ମଧ ଓଡ଼ିଆ ଭାଷାକୁ ବଙ୍ଗଳା ଅକ୍ଷରରେ ଲେଖିବାକୁ ପ୍ରସ୍ତାବ କରୁଥିଲେ। ତାହାକୁ ମଧ ଗୌରୀଶଙ୍କର ପ୍ରଭୃତି ଘୋର ବିରୋଧ କରୁଥିଲେ।' ଫକୀରମୋହନ ଲେଖିଛନ୍ତି ଯେ, 'ସେ ସମୟରେ ବାଲେଶ୍ୱରରେ ବୃନ୍ଦାବନଚନ୍ଦ୍ର ମଣ୍ଡଳ ନାମରେ ଜଣେ ପ୍ରଧାନ ଜମିଦାର ସମସ୍ତ ବଙ୍ଗାଳୀ କର୍ମଚାରୀଙ୍କର ମୁରବିରୂପେ କାର୍ଯ୍ୟ କରୁଥିଲେ ଏବଂ ବହୁ ବଙ୍ଗାଳୀ କର୍ମଚାରୀ ସବୁଦିନେ ସନ୍ଧ୍ୟାବେଳେ ତାଙ୍କ ବୈଠକଖାନାରେ ଏକତ୍ର ହେଉଥିଲେ। ସେ ବୈଠକମାନଙ୍କରେ କି ଉପାୟରେ ସରକାରୀ ଅଫିସ୍‌ମାନଙ୍କରୁ ଓଡ଼ିଆ ଭାଷା ଉଠାଇଦେଇ ବଙ୍ଗଳା ଭାଷା ପ୍ରଚଳନ କରାଯିବ, ତାହାହିଁ ପ୍ରଧାନ ଆଲୋଚ୍ୟ ବିଷୟ ଥିଲା।' ଫକୀରମୋହନ ବିଭିନ୍ନ ସଭା-ସମିତିରେ ଏବଂ ସମ୍ବାଦବାହିକା ପତ୍ରିକାରେ ଏହାର ବିରୋଧ କରୁଥିବାରୁ ସେ ବଙ୍ଗାଳୀ ସମ୍ପ୍ରଦାୟର ପରମ ଶତ୍ରୁ ହୋଇଯାଇଥିଲେ।

ଏହି ସମୟରେ, ୧୮୬୯-୭୦ ମସିହାରେ, ବାଲେଶ୍ୱର ଜିଲ୍ଲାସ୍କୁଲର ହେଡ୍ ପଣ୍ଡିତ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ବଙ୍ଗଳାରେ ଖଣ୍ଡିଏ ବହି ଲେଖିଲେ। ସେ ବହିର ନାମ ଥିଲା 'ଉଡ଼ିୟା ସ୍ୱତନ୍ତ୍ର ଭାଷା ନୟ'। ତାଙ୍କ ମତରେ ବଙ୍ଗଳା ଓ ଓଡ଼ିଆ ଭାଷା ମଧରେ ବହୁ କ୍ଷେତ୍ରରେ ସମତା ଅଛି। ଯେଉଁ ସ୍ଥାନରେ ସମତା ନାହିଁ, ତାହା ବଙ୍ଗଳାଭାଷାର କେବଳ ଅପଭ୍ରଂଶ ମାତ୍ର, ସୁତରାଂ ଓଡ଼ିଆ ଗୋଟିଏ ସ୍ୱତନ୍ତ୍ର ଭାଷା ନୁହେଁ। ତାକୁ ସ୍କୁଲମାନଙ୍କରୁ ଉଠାଇ ଦିଆଯାଇ ଛାତ୍ରମାନଙ୍କୁ କେବଳ ବଙ୍ଗଳାଭାଷାରେ ବିଭିନ୍ନ ବିଷୟ ଶିକ୍ଷା ଦିଆଯାଉ। ସେ ବହି ପ୍ରକାଶ ପରେ କଟକରେ ଏବଂ ବାଲେଶ୍ୱରରେ ବହୁ ବଙ୍ଗାଳୀ ଲୋକ ସରକାରଙ୍କୁ ଦରଖାସ୍ତ କଲେ ଯେ ସରକାର ତାଙ୍କର ଭାଷାନୀତିର ପୁନର୍ବିଚାର କରି ଓଡ଼ିଶାର ସ୍କୁଲ ଓ କଚେରିମାନଙ୍କରେ ଓଡ଼ିଆ ଭାଷା ଉଠାଇଦେଇ କେବଳ ବଙ୍ଗଳାଭାଷା ପ୍ରଚଳନ କରନ୍ତୁ। ଏ ମତ ବିରୁଦ୍ଧରେ ଗୌରୀଶଙ୍କର ଉତ୍କଳ-ଦୀପିକାରେ ତୀବ୍ର ସମାଲୋଚନା କରିଥିଲେ। ତତ୍କାଳୀନ ସ୍କୁଲ ଇନସ୍‌ପେକ୍ଟର ଭୂଦେବ ମୁଖୋପାଧାୟ ଏବଂ 'କଲିକତା ରିଭ୍ୟୁ' ପତ୍ରିକା ମଧ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ଯୁକ୍ତି ଖଣ୍ଡନ କରି ତାଙ୍କ ମତର ବିରୋଧ କରିଥିଲେ। ଓଡ଼ିଶା ଡିଭିଜନର ସବୁ ସ୍କୁଲ ସେତେବେଳେ ଗୋଟିଏ ସାର୍କଲ ଅଧୀନରେ

ଥିଲା ଏବଂ ତାହାର ମହକୁମା ମେଦିନୀପୁରଠାରେ ଥିଲା । ଯଦିଓ ସାର୍କଲର ଇନସ୍‌ପେକ୍ଟର ଆର.ଏଲ୍.ମାର୍ଟିନ୍ ସାହେବଲୋକ ଥିଲେ, ତାଙ୍କ ଅଧୀନରେ ସାର୍କଲର ସମସ୍ତ କର୍ମଚାରୀ ବଙ୍ଗାଳୀ ଥିଲେ । ଅଳ୍ପଦିନ ପରେ ସାର୍କଲ ଅଫିସ୍‌ରୁ ବାଲେଶ୍ୱର ଜିଲ୍ଲା ସ୍କୁଲକୁ ଅର୍ଡର ଆସିଲା ଯେ ତାହା ପରଠାରୁ ସେ ସ୍କୁଲରେ କେବଳ ସଂସ୍କୃତ ଓ ବଙ୍ଗଳା ପଢ଼ାହେବ – ଓଡ଼ିଆ ମୋଟେ ପଢ଼ାହେବ ନାହିଁ ।

ଫକୀରମୋହନ ପ୍ରଭୃତି ବାଲେଶ୍ୱର ମୁଷ୍ଟିମେୟ ଶିକ୍ଷିତ ଲୋକ ସେ ଅର୍ଡ଼ର ଦେଖି ବିବ୍ରତ ହେଲେ ଏବଂ ମାତୃଭାଷାକୁ ରକ୍ଷାକରିବା ପାଇଁ ଯପ୍ରୋନାସ୍ତି ଚେଷ୍ଟା କଲେ । ସେମାନେ ବାଲେଶ୍ୱରର କଚେରି ଏବଂ ଅଫିସ୍‌ମାନଙ୍କରେ କାମ କରୁଥିବା ଅମଲାମାନଙ୍କୁ ସେ ଅର୍ଡ଼ରକୁ ବିରୋଧ କରିବାକୁ ବୁଝାଇଲେ । ଅମଲାମାନେ ପ୍ରଥମେ ସରକାରଙ୍କର ଆଦେଶର ବିରୋଧ କରିବାକୁ ଦ୍ୱିଧାବୋଧ କରୁଥିଲେ । ମାତ୍ର ଫକୀରମୋହନ ପ୍ରଭୃତି ସେମାନଙ୍କୁ ବୁଝାଇଲେ ଯେ ସେ ଆଦେଶ ପ୍ରକୃତରେ ସରକାରଙ୍କର ଗୋଟିଏ ଆଦେଶ ନୁହେଁ; ଏହା ବଙ୍ଗାଳୀ କର୍ମଚାରୀମାନଙ୍କର ଓଡ଼ିଆମାନଙ୍କ ବିରୁଦ୍ଧରେ ଗୋଟିଏ ଷଡ଼ଯନ୍ତ୍ର, ବଙ୍ଗାଳୀମାନେ ଇନସ୍‌ପେକ୍ଟରଙ୍କୁ ଭୁଲ୍ ତଥ୍ୟ ଯୋଗାଇ ବିଭ୍ରାନ୍ତ କରିଛନ୍ତି । ଏହା ପରେ ସେମାନେ କଚେରି ଏବଂ ଅଫିସମାନଙ୍କରୁ ମଧ୍ୟ ଓଡ଼ିଆ ଭାଷା ଉଠାଇଦେବେ । ଓଡ଼ିଶାର ସବୁ କଚେରି ଓ ଅଫିସ୍‌ମାନଙ୍କରେ କେବଳ ବଙ୍ଗାଳୀମାନେ ଚାକିରି କରିବେ ଏବଂ ଓଡ଼ିଆମାନେ କୌଣସି ଅଫିସ୍‌ରେ ଆଉ ଚାକିରି କରି ପାରିବେ ନାହିଁ । ଏହାଦ୍ୱାରା ଓଡ଼ିଆମାନଙ୍କର ଭବିଷ୍ୟତ ଅନ୍ଧକାରମୟ ହେବ । ଏ କଥା ସମସ୍ତେ ଭଲଭାବରେ ବୁଝିଗଲେ ଏବଂ ସ୍କୁଲମାନଙ୍କରେ ଓଡ଼ିଆ ପିଲାମାନେ ଓଡ଼ିଆଭାଷାରେ ପଢ଼ିବାପାଇଁ ବହୁଲୋକଙ୍କ ସ୍ୱାକ୍ଷର ସହ ଗୋଟିଏ ଦରଖାସ୍ତ ବାଲେଶ୍ୱରର କଲେକ୍ଟରଙ୍କ ପାଖକୁ ପଠାଗଲା । ସେତେବେଳେ ବାଲେଶ୍ୱରର ସବୁ ସାହେବ ଅଫିସର ଓଡ଼ିଆମାନଙ୍କ ସପକ୍ଷରେ ମତ ଦେଇଥିଲେ । କଲେକ୍ଟର ବୀମସ୍ ସାହେବ ନିଜେ ଓଡ଼ିଆ ଭାଷା ସପକ୍ଷରେ ମତ ବ୍ୟକ୍ତ କରି ସେ ଦରଖାସ୍ତକୁ କମିସନର୍ ରେଭେନ୍‌ସା ସାହେବଙ୍କ ନିକଟକୁ ପଠାଇଲେ । ବିଦ୍ୱାନ ବୀମ୍‌ସ୍ ସାହେବ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ଏବଂ ଐତିହ୍ୟ ଦେଖାଇ ଗୋଟିଏ ପତ୍ର ପ୍ରସ୍ତୁତ କରି ଓଡ଼ିଆ ଭାଷାର ଉନ୍ନତିପାଇଁ ତାହା ବଙ୍ଗ ସରକାରଙ୍କ ନିକଟକୁ ପଠାଇଲେ । କମିସନର୍ ରେଭେନ୍‌ସା ସାହେବ ମଧ୍ୟ ଓଡ଼ିଶାର ସବୁ ସ୍କୁଲରେ ବଙ୍ଗଳା ପଢ଼ାନଯାଇ ଓଡ଼ିଆ ପଢ଼ାଯିବାକୁ ସୁପାରିସ୍ କଲେ ଏବଂ ଓଡ଼ିଆ ଭାଷାର ଉନ୍ନତିପାଇଁ ଓଡ଼ିଶାରେ ଅଧିକରୁ ଅଧିକ ସ୍କୁଲ ସ୍ଥାପନ ପାଇଁ ସୁପାରିସ୍ କଲେ । ଓଡ଼ିଶାର କମିସନର୍‌ଙ୍କ ସୁପାରିସ୍ ଏବଂ ଓଡ଼ିଆ ଭାଷାରକ୍ଷା ପାଇଁ ଓଡ଼ିଶା ଡିଭିଜନ୍‌ରେ ଆନ୍ଦୋଳନ ବିଚାର କରି ବଙ୍ଗସରକାର ଓଡ଼ିଶାର ସବୁ

ସ୍କୁଲରେ ବିଭିନ୍ନ ବିଷୟ ଓଡ଼ିଆରେ ପଢ଼ାଯିବା ଚୂଡ଼ାନ୍ତ ଭାବରେ ସିଦ୍ଧାନ୍ତ କଲେ। ୧୮୭୦ ମସିହା ସୁଦ୍ଧା ଓଡ଼ିଶାରେ ଭାଷା-ଆନ୍ଦୋଳନର ସମାଧାନ ହେଲା।

ସେହି ସମୟରେ ଫକୀରମୋହନ ଖ୍ରୀଷ୍ଟିଆନ ପାଦ୍ରୀମାନଙ୍କ ସମ୍ପର୍କରେ ଆସି ଏକେଶ୍ୱରବାଦରେ ବିଶ୍ୱାସ କରୁଥିଲେ। କିଛିଦିନ ସେ ଖ୍ରୀଷ୍ଟଧର୍ମ ଗ୍ରହଣ କରିବାକୁ ଇଚ୍ଛା କରୁଥିଲେ; ମାତ୍ର ଅବଶେଷରେ ତାହା କରିନଥିଲେ। ସେତେବେଳେ କେତେକ ବ୍ରାହ୍ମଧର୍ମାବଲମ୍ବୀ ବଙ୍ଗବାସୀ ବାଲେଶ୍ୱରର ଅଫିସ୍‌ମାନଙ୍କରେ ଚାକିରି କରିବାକୁ ଆସିଥିଲେ। ସେମାନଙ୍କ ପ୍ରଭାବରେ ଫକୀରମୋହନ ବହୁ ସମୟରେ ବ୍ରାହ୍ମଧର୍ମାବଲମ୍ବୀମାନଙ୍କ ପ୍ରାର୍ଥନା ସଭାରେ ଯୋଗଦେଉଥିଲେ। ଅବସର ଗ୍ରହଣ ପର୍ଯ୍ୟନ୍ତ ଏକେଶ୍ୱରବାଦରେ ତାଙ୍କର ବିଶ୍ୱାସ ଦୃଢ଼ ଥିଲା ଏବଂ ଭଣ୍ଡ ସନ୍ନ୍ୟାସୀମାନଙ୍କୁ ସେ ସର୍ବଦା ଘୃଣାକରୁଥିଲେ। ଅବସର ଗ୍ରହଣ ପରେ ୧୮୯୮ ମସିହାରେ ବାଲେଶ୍ୱର ବ୍ରାହ୍ମସମାଜର ପ୍ରତିନିଧି ହୋଇ ସେ ମାନ୍ଦ୍ରାଜଠାରେ ଅନୁଷ୍ଠିତ ହେଉଥିବା ଭାରତର ଏକେଶ୍ୱରବାଦୀଙ୍କ ମହାସଭାରେ ଯୋଗଦେଇଥିଲେ। ତଥାପି ତାଙ୍କ 'ଆତ୍ମଜୀବନଚରିତ' ବହିରେ ସେ ବିଦ୍ରୂପ କରି ଲେଖିଛନ୍ତି ଯେ, ଏ ସମୟରେ ଥୋକେ ବ୍ରାହ୍ମଙ୍କ ମଧ୍ୟରେ ମଦ୍ୟପାନଟା ଉପାସନାର ଅଙ୍ଗୀଭୂତ ହୋଇପଡ଼ିଥିଲା। ବଙ୍ଗଦେଶର ଋଷିତୁଲ୍ୟ ପ୍ରଧାନ ପ୍ରଧାନ ବ୍ରାହ୍ମ ମହାତ୍ମାମାନେ ମଧ୍ୟ ମଦ୍ୟପାନରୁ ବିରତ ହେଉନଥିଲେ।

## ବୈବାହିକ ଜୀବନ –

ବାଲେଶ୍ୱର ମିସନ୍‌ସ୍କୁଲରେ ଚାକିରି କରୁଥିବା ସମୟରେ ୧୮୬୭ ମସିହାରେ ଫକୀରମୋହନଙ୍କର ପୃଥିବୀରେ ସବୁଠାରୁ ପ୍ରିୟତମ ବ୍ୟକ୍ତି ଠାକୁରମା'ଙ୍କର ଦେହାନ୍ତ ହୋଇଥିଲା। ଅଢ଼େଇବର୍ଷ ବୟସରୁ ମା'ଙ୍କୁ ହରାଇ ଠାକୁରମା'ଙ୍କ ଯତ୍ନରେ ସେ ବଞ୍ଚିଥିଲେ। ଠାକୁରମା'ଙ୍କୁ ସେ ଅତ୍ୟନ୍ତ ଭଲପାଉଥିଲେ ଏବଂ ତାଙ୍କୁ ଜଣେ ଧର୍ମପରାୟଣା, ସ୍ନେହଶୀଳା, କୋମଳଭାଷିଣୀ, ଧୀରସ୍ଥିର ନାରୀ ବୋଲି ବର୍ଣ୍ଣନା କରିଛନ୍ତି। ବାରବାଟୀ ସ୍କୁଲରେ ଚାକିରି ଆରମ୍ଭର ବହୁ ପୂର୍ବରୁ ୧୮୫୬ ମସିହାରେ ତେରବର୍ଷ ବୟସରେ ଫକୀରମୋହନଙ୍କ ବିବାହ ହୋଇଥିଲା। ତାଙ୍କର ପ୍ରଥମା ସ୍ତ୍ରୀଙ୍କ ନାମ ଲୀଳାବତୀ ଦେବୀ ଥିଲା। ଫକୀରମୋହନଙ୍କ ସହିତ ତାଙ୍କର ସର୍ବଦା ମନାନ୍ତର ହେଉଥିଲା। ଫକୀରମୋହନ ଲେଖିଛନ୍ତି– "ସେ ଅତ୍ୟନ୍ତ ନିଷ୍ଠୁରା, ଦାମ୍ଭିକା, କର୍କଶଭାଷିଣୀ ଥିଲେ ଏବଂ ତାଙ୍କ ସହିତ ଦାମ୍ପତ୍ୟ ଜୀବନଯାପନ ମୋ ପକ୍ଷରେ ଅତ୍ୟନ୍ତ ଦୁଃଖଦାୟକ ଥିଲା।" ପ୍ରଥମ ବିବାହରୁ ଫକୀରମୋହନଙ୍କର ଗୋଟିଏ କନ୍ୟା ସନ୍ତାନ ଜନ୍ମହୋଇଥିଲା। ମାତ୍ର ଅଳ୍ପ

ବୟସରେ ତାଙ୍କର ପ୍ରଥମା ସ୍ତ୍ରୀଙ୍କର ମୃତ୍ୟୁ ହୋଇଥିଲା। ସେତେବେଳକୁ ଫକୀରମୋହନଙ୍କୁ ମୋଟେ ଅଣତିରିଶ ବର୍ଷ ବୟସ ହୋଇଥିଲା। ତାହାପରେ ୧୮୭୧ ମସିହାରେ ମାତ୍ର ୧୧ ବର୍ଷ ବୟସ୍କା କୃଷ୍ଣକୁମାରୀଙ୍କ ସହିତ ତାଙ୍କର ଦ୍ୱିତୀୟ ବିବାହ ହୋଇଥିଲା। କୃଷ୍ଣକୁମାରୀଙ୍କ ସହିତ ତାଙ୍କର ଦାମ୍ପତ୍ୟଜୀବନ ଅତ୍ୟନ୍ତ ସୁଖମୟ ଥିଲା। ଫକୀରମୋହନ ତାଙ୍କର 'ଆତ୍ମଜୀବନଚରିତ'ରେ ଲେଖିଛନ୍ତି – ''ସାଂସାରିକ ସମସ୍ତ ପ୍ରକାର ଦୁଃଖ-ଦୁର୍ଦ୍ଦଶା ମୋଚନ, ସୌଭାଗ୍ୟ ସୁଖ ସମ୍ପତ୍ତି ବର୍ଦ୍ଧନ ନିମନ୍ତେ ଦୟାମୟ ପରମେଶ୍ୱର କୃଷ୍ଣକୁମାରୀଙ୍କୁ ଭାର୍ଯ୍ୟାରୂପେ ମୋହ ନିକଟକୁ ପଠାଇଥିଲେ। ସତ୍ୟନିଷ୍ଠା, ପତିପରାୟଣତା, ଧାର୍ମିକତା ସମସ୍ତ ପ୍ରକାର ସଦ୍‌ଗୁଣ ତାଙ୍କଠାରେ ପୂର୍ଣ୍ଣମାତ୍ରାରେ ବିଦ୍ୟମାନ ଥିଲା।'' ସେ ସର୍ବଦା ଫକୀରମୋହନଙ୍କର ସେବାଶୁଶ୍ରୂଷା କରୁଥିଲେ ଏବଂ ତାଙ୍କର ଆଜ୍ଞାନୁବର୍ତ୍ତିନୀ ହୋଇଥିଲେ। କୃଷ୍ଣକୁମାରୀଙ୍କ ପ୍ରଥମ ପୁତ୍ର ସନ୍ତାନଟି ଜନ୍ମର ଅଳ୍ପ କେତେ ମାସ ପରେ ମରିଯାଇଥିଲା। ପରେ ତାଙ୍କର ଆଉ ଗୋଟିଏ ପୁଅ ଏବଂ ଗୋଟିଏ ଝିଅ ହୋଇଥିଲା। କୃଷ୍ଣକୁମାରୀ ମଧ୍ୟ ମାତ୍ର ୩୪ ବର୍ଷ ବୟସରେ ୧୮୯୪ ମସିହାରେ ମରିଯାଇଥିଲେ। ଫକୀରମୋହନ ତାଙ୍କୁ ଅତ୍ୟନ୍ତ ଭଲପାଉଥିଲେ ଏବଂ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ତାଙ୍କପାଇଁ ଶୋକକରୁଥିଲେ। ତାଙ୍କ ଘରର ପଛପଟ ଉଦ୍ୟାନରେ କୃଷ୍ଣକୁମାରୀଙ୍କର ଗୋଟିଏ ସମାଧିମନ୍ଦିର ନିର୍ମିତ ହୋଇଥିଲା ଏବଂ ଦୁଃଖ ଓ ଶୋକ ସମୟରେ ଫକୀରମୋହନ ସେ ସମାଧି ପାଖରେ ବସି ଶାନ୍ତିଲାଭକରୁଥିଲେ।

## ଗଡ଼ଜାତ ରାଜ୍ୟମାନଙ୍କରେ ଚାକିରି –

ବାଲେଶ୍ୱର ଜିଲ୍ଲା କଲେକ୍ଟର ଜନ୍ ବୀମ୍‌ସ୍ ସାହେବ ଫକୀରମୋହନଙ୍କୁ ଅତି ଭଲପାଉଥିଲେ ଏବଂ ତାଙ୍କର ଜଣେ ପରମ ହିତୈଷୀ ବନ୍ଧୁ ଥିଲେ। ୧୮୭୧ ମସିହାରେ ନୀଳଗିରି ରାଜ୍ୟର ଦେବାନ୍ ପଦ ଖାଲି ହୋଇଥିଲାବେଳେ ବୀମ୍‌ସ୍ ସାହେବଙ୍କ ସୁପାରିସ୍‌କ୍ରମେ ଓଡ଼ିଶାର ଗଡ଼ଜାତ ରାଜ୍ୟମାନଙ୍କର ସୁପରିଣ୍ଟେଣ୍ଡେଣ୍ଟ ତଥା ଓଡ଼ିଶା ଡିଭିଜନର କମିସନର୍ ଫକୀରମୋହନଙ୍କୁ ମାସିକ ୧୦୦ ଟଙ୍କା ଦରମାରେ ନୀଳଗିରି ରାଜ୍ୟର ଦେବାନ୍‌ରୂପେ ନିଯୁକ୍ତ କଲେ। ସେହିଦିନଠାରୁ ଫୀକରମୋହନଙ୍କ ଜୀବନ ଏକ ଭିନ୍ନ ଦିଗରେ ଗତିକଲା। ସେ ବାଲେଶ୍ୱରରେ ଶିକ୍ଷକ, ଖବରକାଗଜ ଓ ସାହିତ୍ୟ ପତ୍ରିକାର ସମ୍ପାଦକ ଓ ପ୍ରକାଶକ, ପ୍ରେସ୍‌ର ପରିଚାଳକ ପ୍ରଭୃତି କାର୍ଯ୍ୟ ପରିତ୍ୟାଗକରି ଗଡ଼ଜାତ ରାଜ୍ୟମାନଙ୍କରେ ପ୍ରଶାସକ କାର୍ଯ୍ୟରେ ଯୋଗଦେଲେ। ଫଳରେ ତାଙ୍କ ସମ୍ପାଦନାରେ ଚାଲୁଥିବା ଖବରକାଗଜ ବନ୍ଦହୋଇଗଲା ଏବଂ ଛାପାଖାନା ଓ ତାହାକୁ ଚଳାଉଥିବା

କମ୍ପାନୀ ମଧ୍ୟ ଭାଙ୍ଗିଗଲା। ବ୍ୟକ୍ତିବିଶେଷଙ୍କ ନିଷ୍ଠା ଉପରେ ଅନୁଷ୍ଠାନମାନଙ୍କର ସ୍ଥାୟିତ୍ୱ ଓ ଉନ୍ନତି ନିର୍ଭରକରେ। କଟକରେ ଗୌରୀଶଙ୍କରଙ୍କ ନିଷ୍ଠା ଓ କାର୍ଯ୍ୟଦକ୍ଷତା ହେତୁ ପ୍ରିଣ୍ଟିଂ କମ୍ପାନୀ ଏବଂ ଉତ୍କଳ-ଦୀପିକା ସାପ୍ତାହିକ ପତ୍ରିକା ପଚାଶ ବର୍ଷରୁ ଊର୍ଦ୍ଧ୍ୱ ସମୟ ସୁଚାରୁରୂପେ ଚାଲିଥିଲା।

ଫକୀରମୋହନ ୧୮୭୧ ମସିହା ଅକ୍ଟୋବର ମାସରୁ ୧୮୯୬ ମସିହା ପର୍ଯ୍ୟନ୍ତ ପଚିଶବର୍ଷ ଓଡ଼ିଶାର ବିଭିନ୍ନ ଗଡ଼ଜାତ ଓ ଜମିଦାରୀ ମାହାଲମାନଙ୍କରେ ଦେଓ୍ୱାନ୍ ଓ ମାନେଜରରୂପେ କାର୍ଯ୍ୟ କରିଥିଲେ। ଏହି ପଚିଶବର୍ଷକାଳ ସେ ନିରବଚ୍ଛିନ୍ନ ଭାବରେ କୌଣସି ଗୋଟିଏ ରାଜ୍ୟରେ କାର୍ଯ୍ୟ କରିନଥିଲେ କିମ୍ବା ସେ ରାଜ୍ୟମାନଙ୍କର ସୁପରିଣ୍ଟେଣ୍ଡେଣ୍ଟଙ୍କ ଅଧୀନରେ ସ୍ଥାୟୀ ପ୍ରଶାସକରୂପେ କାର୍ଯ୍ୟ କରିନଥିଲେ। ସେ ନୀଳଗିରି, ଡୋମପଡ଼ା, ଢେଙ୍କାନାଳ, ଦଶପଲ୍ଲା, କେନ୍ଦୁଝର ଏବଂ ପାଲଲହଡ଼ା ପ୍ରଭୃତି ରାଜ୍ୟମାନଙ୍କରେ ପ୍ରତ୍ୟକରେ ଅଳ୍ପ କେତେ ବର୍ଷ ପାଇଁ ଚାକିରି କରିଥିଲେ ଏବଂ ଗୋଟିଏ ରାଜ୍ୟର ଚାକିରି ପରିତ୍ୟାଗ କରି ଅନ୍ୟ ରାଜ୍ୟରେ ଚାକିରି ପାଇବାର ମଧ୍ୟବର୍ତ୍ତୀ ସମୟରେ କର୍ମହୀନ ଭାବରେ ରହୁଥିଲେ। ବ୍ରିଟିଶ ସୁପରିଣ୍ଟେଣ୍ଡେଣ୍ଟଙ୍କ ଅଧୀନରେ ବିଭିନ୍ନ ଗଡ଼ଜାତ ରାଜ୍ୟମାନଙ୍କର ଶାସନ ସ୍ୱତନ୍ତ୍ର ଥିଲା। ବିଭିନ୍ନ ରାଜ୍ୟର ପରିବେଶ ଓ ପରିସ୍ଥିତି, ରାଜାମାନଙ୍କର ଶିକ୍ଷାଦୀକ୍ଷା, ପ୍ରକୃତି ଓ ବ୍ୟବହାର ପ୍ରଭୃତି ଭିନ୍ନ ଥିଲା। ମାତ୍ର ସବୁ ରାଜ୍ୟରେ ରାଜାମାନଙ୍କର ମନୋମୁଖି ଶାସନ ଥିଲା। ରାଜ୍ୟର ଆବଶ୍ୟକତା ଅନୁସାରେ ସୁପରିଣ୍ଟେଣ୍ଡେଣ୍ଟ ଦେଓ୍ୱାନ୍ କିମ୍ବା ମ୍ୟାନେଜର ନିଯୁକ୍ତ କରୁଥିଲେ। ମାତ୍ର ସେଥିରେ ରାଜାମାନଙ୍କର ସମ୍ମତି ପ୍ରଦାନ ଆବଶ୍ୟକ ପଡୁଥିଲା। ରାଜାମାନେ ଆପତ୍ତି କଲେ ନିଯୁକ୍ତି ଶେଷ କରିଦିଆଯାଉଥିଲା।

ଫକୀରମୋହନ ନୀଳଗିରି ରାଜ୍ୟରେ ୧୮୭୧ ମସିହାରୁ ୧୮୭୫ ମସିହା ପର୍ଯ୍ୟନ୍ତ ଚାରିବର୍ଷ ଦେଓ୍ୱାନ କାର୍ଯ୍ୟ କରିଥିଲେ। ସେତେବେଳେ ନୀଳଗିରିର ରାଜା ଓ ତାଙ୍କ ସାନଭାଇଙ୍କ ମଧ୍ୟରେ ଘୋର ବିବାଦ ଲାଗିଥିଲା। ଅପୁତ୍ରକ ରାଜା ପ୍ରଥମେ ତାଙ୍କର ସାନଭାଇଙ୍କ ପୁଅକୁ ତାଙ୍କର ଉତ୍ତରାଧିକାରୀ କରିବାକୁ ମନସ୍ଥ କରିଥିଲେ; ପରେ ମତ ପରିବର୍ତ୍ତନ କରି ତାଙ୍କର ଜଣେ ଫୁଲବିବାହୀ ସ୍ତ୍ରୀର ପୁତ୍ରକୁ ରାଜ୍ୟର ଉତ୍ତରାଧିକାରୀ କରିବାକୁ ଚେଷ୍ଟା କଲେ। ରାଜା ଓ ତାଙ୍କ ସାନଭାଇଙ୍କ ମଧ୍ୟରେ କଳହର ଏହା ଥିଲା ମୂଳ କାରଣ। ରାଜା ତାଙ୍କ ସାନଭାଇଙ୍କ ପରିବାର ଉପରେ ବିଭିନ୍ନ ପ୍ରକାର ଅତ୍ୟାଚାର କରୁଥିଲେ। ଫକୀରମୋହନ ସାନଭାଇର ପୁଅ ରାଜ୍ୟର ଉତ୍ତରାଧିକାରୀ ହେବା ନ୍ୟାୟସଙ୍ଗତ ବୋଲି ମତ ଦେବାରୁ ରାଜା ତାଙ୍କ ଉପରେ ଅସନ୍ତୁଷ୍ଟ ହୋଇଥିଲେ। ଫକୀରମୋହନ ରାଜ୍ୟର ଆୟ ବୃଦ୍ଧି କରି ରାଜ୍ୟରେ ଶିକ୍ଷା, କୃଷି ଓ ରାସ୍ତାଘାଟର ଉନ୍ନତି

କରିବାପାଇଁ ଚେଷ୍ଟା କଲେ। ସେ ନୀଳଗିରି ଗଡ଼ଠାରୁ ଚାରିମାଇଲ ରାସ୍ତା ତିଆରି କରି ବାଲେଶ୍ୱରକୁ ଯାଇଥିବା ମୁଖ୍ୟ ସଡ଼କ ପଥ ସଙ୍ଗେ ଯୋଗକରିବାକୁ କାର୍ଯ୍ୟ ଆରମ୍ଭକଲେ। ନୀଳଗିରିରେ ହାଟ-ବଜାର ନଥିଲା। ଲୋକମାନେ ୧୧ ମାଇଲ ଦୂର ବାଲେଶ୍ୱର ମୋତିଗଞ୍ଜ ବଜାର କିମ୍ବା ୬ ମାଇଲ ଦୂର ରେମୁଣା ବଜାରରୁ ଜିନିଷପତ୍ର କିଣିବାକୁ ବାଧହେଉଥିଲେ। ଫକୀରମୋହନ ନୀଳଗିରି ରାଣୀଙ୍କ ନାମରେ ଗୋଟିଏ ହାଟ ବସାଇଲେ। ସେ ହାଟ କ୍ରମେ ବୃଦ୍ଧିପାଇ ବାଲେଶ୍ୱର ଓ ନୀଳଗିରି ଅଞ୍ଚଳର ଗୋଟିଏ ବଡ଼ ହାଟ ହୋଇଗଲା। ସେ ନୀଳଗିରିରେ କୋବି ଏବଂ ବିଲାତି ଆଳୁ ପ୍ରଭୃତି ଚାଷ କରାଇବାକୁ ଉଦ୍ୟମ କଲେ ଏବଂ ନୀଳଗିରିରେ ଚାହା ବଗିଚା ଆରମ୍ଭ କରିବାକୁ ଚେଷ୍ଟାକଲେ। ସେ ନୀଳଗିରି ଗଡ଼ଠାରେ ଗୋଟିଏ ସଂସ୍କୃତ ଟୋଲ ବସାଇଲେ ଏବଂ ଗ୍ରାମାଞ୍ଚଳରେ ବହୁତ ସଂସ୍କୃତ ଟୋଲ ବସାଇବା ଉଦ୍ଦେଶ୍ୟରେ ପ୍ରତି ଜମି ମାଣ ଉପରେ ଦୁଇ ପଇସା ଭେଦା ଆଦାୟ ପାଇଁ ଚେଷ୍ଟା କଲେ। ମାତ୍ର ଲୋକମାନେ ତାଙ୍କର ଉଦ୍ଦେଶ୍ୟ ବୁଝିନପାରି ଜମି ଉପରେ ଅଧିକ କର ଆଦାୟକୁ ବିରୋଧକଲେ। ରାଜ୍ୟର ଆୟ-ବୃଦ୍ଧି ପାଇଁ ପଥର ଖଣିମାନଙ୍କରେ ବେଆଇନ ପଥରକଟା ବନ୍ଦକରିବା ଏବଂ ଅଧିକ ହାରରେ ଖଣି ପଟାଦେବାପାଇଁ ତାଙ୍କର ଉଦ୍ୟମକୁ ମଧ ଲୋକମାନେ ଘୋର ବିରୋଧ କଲେ। ଏହିସବୁ କାର୍ଯ୍ୟ ପାଇଁ ୧୮୭୫ ମସିହାରେ ନୀଳଗିରିରେ ଗୋଟିଏ ବଡ଼ ପ୍ରଜାମେଳି ହେଲା। ପ୍ରଜାମାନେ ରାଜ୍ୟ ସରକାରଙ୍କର ସମସ୍ତ ହୁକୁମ ଅମାନ୍ୟ କଲେ ଏବଂ ସୁପରିଣ୍ଟେଣ୍ଡେଣ୍ଟ ରେଭେନ୍‌ସା ସାହେବଙ୍କ ପାଖରେ ଆପତ୍ତି କଲେ। ରେଭେନ୍‌ସା ସାହେବ ଇନ୍‌କ୍ୱାରୀ କରି ବୁଝିଲେ ଯେ ପଥରଖଣିର ଖଜଣା ବୃଦ୍ଧି ମେଳିର ପ୍ରଧାନ କାରଣ। ସେ ତାର ପ୍ରତିକାର କଲେ ଏବଂ ପ୍ରଜାମାନଙ୍କୁ ବିଦ୍ରୋହରୁ ନିବର୍ତ୍ତାଇ ପାରିନଥିବାରୁ ଫକୀରମୋହନଙ୍କୁ ଭର୍ତ୍ସନା କଲେ। ରାଜ୍ୟର ଉନ୍ନତିପାଇଁ ବଳପୂର୍ବକ ପ୍ରଜାମାନଙ୍କଠାରୁ ଅଧିକ କର ଆଦାୟ କରିବା ତାଙ୍କର ଅପରିଣାମଦର୍ଶୀ କାର୍ଯ୍ୟ ଥିଲା। ରାଜାଙ୍କ ଅସନ୍ତୋଷ ଏବଂ ପ୍ରଜାମେଳି ଘଟଣା ହେତୁ ୧୮୭୫ ମସିହାରେ ସେ ନୀଳଗିରି ତ୍ୟାଗ କରିବାକୁ ବାଧହୋଇଥିଲେ।

ନୀଳଗିରିରୁ ଚାଲିଆସି ସେ ବେକାର ହୋଇ ବାଲେଶ୍ୱରରେ କେତେ ମାସ ରହିଲେ। ତାଙ୍କର ହିତୈଷୀ ଜନ୍ ବୀମ୍‌ସ୍ ସାହେବ ସେତେବେଳେ ବାଲେଶ୍ୱରରୁ ଯାଇ କଟକର କଲେକ୍ଟର ହୋଇଥିଲେ। ତାଙ୍କୁ ଦେଖାକରିବାପାଇଁ ଫକୀରମୋହନ କଟକ ଗଲେ। ସେତେବେଳେ ଡୋମପଡ଼ା ରାଜ୍ୟର ଦେୱାନ୍ ପଦ ଖାଲିଥିଲା। ବୀମ୍‌ସ୍‌ଙ୍କ ଅନୁଗ୍ରହରେ ସେ ୧୮୭୬ ମସିହା ଜୁଲାଇ ମାସରେ ଡୋମପଡ଼ାର ଦେବାନ୍ ପଦରେ ନିଯୁକ୍ତି ପାଇଲେ। ଡୋମପଡ଼ାରେ

ସେତେବେଳେ ଗୋଟିଏ ପ୍ରଜାମେଳି ଚାଲୁଥିଲା। ରାଜା ନାବାଳକ ଥିଲାବେଳେ ଇଷ୍ଟେଟ୍‌ର ତତ୍‌କାଳୀନ ମାନେଜର କୋହଳ ଭାବରେ ଜମି ବନ୍ଦୋବସ୍ତ କରି ପ୍ରଜାମାନଙ୍କ ଜମିର ଖଜଣା ଧାର୍ଯ୍ୟ କରିଥିଲେ। ରାଜା ରଘୁନାଥ ମାନସିଂହ ଭ୍ରମରବର ରାୟ କିଲ୍ଲାର ଦାୟିତ୍ୱ ନେବା ପରେ ଜମିର ସାନି ବନ୍ଦୋବସ୍ତ କରି କିଲ୍ଲାର ଚାରିପାଖରେ ଥିବା ଇଷ୍ଟେଟ୍‌ମାନଙ୍କରେ ପ୍ରଚଳିତ ଖଜଣା ହାର ଅନୁସାରେ ବିଭିନ୍ନ ପ୍ରକାର ଜମିର ଖଜଣା ଧାର୍ଯ୍ୟ କରିବାକୁ ଇଚ୍ଛା କରୁଥିଲେ। ମାତ୍ର ରାଜ୍ୟର ପୂର୍ବତନ ଦେଓ୍ୱାନ୍ ଓ ଗ୍ରାମ ପଧାନମାନଙ୍କର ନେତୃତ୍ୱରେ ପ୍ରଜାମାନେ ମେଳି କରି ଜମିର ଖଜଣା କିଞ୍ଚିତ୍ ମାତ୍ର ବଢ଼ାଇ ନଦେବାକୁ ଦାବିକରିଥିଲେ। ରାଜା ତାଙ୍କ ନିଷ୍ପତ୍ତିରେ ଅଟଳ ରହିବାରୁ ପ୍ରଜାମାନେ ରାଜପରିବାର ଏବଂ ରାଜ ନଅରକୁ ବାସନ୍ଦ କରିଥିଲେ ଏବଂ କୌଣସି ଖଜଣା ଦେଉନଥିଲେ।

ଆୟ ଅଭାବରେ ରାଜା ନିଜର ଖର୍ଚ୍ଚ ସୁଦ୍ଧା ଚଳାଇ ନପାରି ବହୁତ ଋଣ କରି କଟକ ଓ କଲିକତା ପ୍ରଭୃତି ସହରମାନଙ୍କରେ ରହୁଥିଲେ। ରାଜପରିବାରର ଅନ୍ୟ ଲୋକମାନେ ସେମାନଙ୍କ ଦୈନନ୍ଦିନ ଖର୍ଚ୍ଚ ନ ପାଇ ଦୁଃଖରେ ଚଳୁଥିଲେ ଏବଂ ସେଥିପାଇଁ କଟକ ଅଦାଲତରେ ଖୋରାକ-ପୋଷାକ ପାଇଁ ମକଦ୍ଦମା କରିଥିଲେ। ରାଜାଙ୍କର ନିଜ ଖର୍ଚ୍ଚ ଓ ମକଦ୍ଦମା ଖର୍ଚ୍ଚ ପାଇଁ ଋଣ ବେଳକୁବେଳ ବଢ଼ିଯାଉଥିଲା। ରାଜା ପ୍ରଜାମେଳି ଓ ସାମାଜିକ ବାସନ୍ଦ ହେତୁ ହତାଶ ହୋଇ କାହାରିକୁ ବିଶ୍ୱାସ କରୁନଥିଲେ। ତଥାପି କିଲ୍ଲାରେ ନୂତନ ବନ୍ଦୋବସ୍ତ କରିବା ନିଷ୍ପତ୍ତିରେ ଅଟଳ ଥିଲେ।

ଫକୀରମୋହନ ଦେଓ୍ୱାନ୍ ହୋଇ ରାଜ୍ୟରେ ପହଞ୍ଚିଲାବେଳକୁ ପାଞ୍ଚବର୍ଷ ହେଲା ଖଜଣା ଆଦାୟ ହୋଇନଥିଲା। ରାଜା ଓ ପ୍ରଜା ତାଙ୍କୁ କେହି ବିଶ୍ୱାସ କରୁନଥିଲେ। ଅନ୍ୟ ଦିଗରେ ବ୍ରିଟିଶ୍ ସରକାର ଯେକୌଣସି ମତେ କିଲ୍ଲାର ଗୋଳମାଳ ନିଷ୍ପତ୍ତି କରିବାକୁ ଚାହୁଁଥିଲେ; ନଚେତ୍ ରାଜାଙ୍କୁ ଗାଦିଚ୍ୟୁତ କରି କିଲ୍ଲାକୁ ସରକାରଙ୍କ ଖାସ୍ ଦଖଲକୁ ନେବାକୁ ବାଧ୍ୟ ହେବେ ବୋଲି ମନେକରୁଥିଲେ। ସେହି ବର୍ଷ ଶେଷରେ ବୀମ୍‌ସ୍ ସାହେବ ସରଜମିନ୍ ଇନ୍‌କ୍ୱାରୀ କରିବାକୁ ଯାଇଥିଲେ ଏବଂ ସରକାର ଜମା ବୃଦ୍ଧି ନକରିବାପାଇଁ ପ୍ରଜାମାନଙ୍କୁ ପ୍ରତିଶ୍ରୁତି ଦେଇଥିଲେ। ରାଜା କିନ୍ତୁ ମାଣପ୍ରତି ଦୁଇପଇସା ହିସାବରେ ଜମା ବୃଦ୍ଧି କରି ସାନି ବନ୍ଦୋବସ୍ତ କରିବାକୁ ଚାହୁଁଥିଲେ। ଫକୀରମୋହନ କୌଶଳ ଓ କୂଟନୀତି କରି ଗାଁ ପଧାନମାନଙ୍କ ମଧ୍ୟରୁ ନେତୃସ୍ଥାନୀୟ ଲୋକଙ୍କୁ ଗିରଫ କରାଇ ଓ ପୂର୍ବତନ ଦେଓ୍ୱାନ୍‌ଙ୍କୁ ଭୟଭୀତ କରାଇ ପାଞ୍ଚବର୍ଷର ବାକୀ ଖଜଣା ଦୁଇ କିସ୍ତିରେ ଆଦାୟ କରାଇଲେ ଏବଂ ଜମିର ଜରିପ କରାଇ ମାଣପ୍ରତି ଚାରିଅଣା ଖଜଣା ବୃଦ୍ଧି କରାଇଲେ। ଡୋମପଡ଼ା ରାଜା ତାଙ୍କୁ ସ୍ଥାୟୀ ଦେଓ୍ୱାନ୍ ଭାବରେ

ରଖିବାକୁ ଆଗ୍ରହୀ ଥିଲେ; ମାତ୍ର ବୀମ୍‌ସ୍ ସାହେବ ତାଙ୍କୁ ବୁଝାଇ ଢେଙ୍କାନାଳର ଆସିଷ୍ଟାଣ୍ଟ ମାନେଜର ପଦରେ ନିଯୁକ୍ତ କଲେ। ଡୋମପଡ଼ା ଛାଡ଼ିଲାବେଳେ ରାଜା ସାହେବ ତାଙ୍କୁ ପାଞ୍ଚହଜାର ଟଙ୍କା ଓ ନିଜର କାଳି ଦୁଆତ ଉପହାର ଦେଇଥିଲେ। ଫକୀରମୋହନ ସେ ଦୁଆତଟି ମୃତ୍ୟୁ ପର୍ଯ୍ୟନ୍ତ ପାଖରେ ରଖିଥିଲେ। ଡୋମପଡ଼ାର ପୂର୍ବତନ ଦେୱାନ୍ ନିଧି ପଟ୍ଟନାୟକଙ୍କ ସହିତ କୂଟ ବ୍ୟବହାରର ପ୍ରାୟଶ୍ଚିତ୍ତ ସ୍ୱରୂପ ସେ ନିଜ ହାତରୁ ୯୬ ଟଙ୍କା ତାଙ୍କର ବାକୀ ଖଜଣା ବାବତକୁ ଦେଇ ତାଙ୍କର ସମସ୍ତ ଚାଷଜମି ତାଙ୍କ ନାମରେ ବନ୍ଦୋବସ୍ତ କରାଇଥିଲେ। ନିଧି ପଟ୍ଟନାୟକ ପାଞ୍ଚବର୍ଷ ଖଜଣା ଦେଇନଥିବାରୁ ଜମିରୁ ବେଦଖଲ ହୋଇଥିଲେ ଏବଂ ସାନି ବନ୍ଦୋବସ୍ତ ବେଳେ ବାକୀ ଖଜଣା ଦେବାକୁ ତାଙ୍କର ସମ୍ବଳ ନଥିଲା।

ଫକୀରମୋହନ ଡୋମପଡ଼ାରେ ମାତ୍ର ଏକ ବର୍ଷ ତିନି ମାସ ରହିଥିଲେ। ତାହାପରେ ଢେଙ୍କାନାଳରେ ୧୮୭୭ ମସିହାଠାରୁ ୧୮୮୩ ମସିହା ପର୍ଯ୍ୟନ୍ତ ଛଅ ବର୍ଷ ଆସିଷ୍ଟାଣ୍ଟ ମାନେଜରରୂପେ କାର୍ଯ୍ୟ କରିଥିଲେ। ଢେଙ୍କାନାଳରେ ପ୍ରଶାସନ କାର୍ଯ୍ୟରେ ସେ ସଫଳ ହୋଇପାରିନଥିଲେ। ସେ ଢେଙ୍କାନାଳରେ ପହଞ୍ଚିବାର ଅଳ୍ପକାଳ ପୂର୍ବରୁ ସେଠାକାର ଆଦର୍ଶ ରାଜା ଭଗୀରଥ ମହେନ୍ଦ୍ର ବାହାଦୁର ଇହଧାମ ତ୍ୟାଗକରିଥିଲେ। ସେ ଅପୁତ୍ରକ ଥିବାରୁ ବୌଦ ରାଜାଙ୍କର ତୃତୀୟ ପୁତ୍ର ଦୀନବନ୍ଧୁ ମହେନ୍ଦ୍ର ବାହାଦୁରଙ୍କୁ ପୋଷ୍ୟପୁତ୍ର କରିଥିଲେ। ଫକୀରମୋହନ ଢେଙ୍କାନାଳ ଯିବାବେଳକୁ ଦୀନବନ୍ଧୁ ମହେନ୍ଦ୍ର ବାହାଦୁର ରାଜା ହୋଇଥିଲେ; ମାତ୍ର ସେ ନାବାଳକ ଥିଲେ। ଫକୀରମୋହନ ଢେଙ୍କାନାଳରେ ପରିବାର ସହ ରହିଥିଲେ। ସେଠାରେ ତାଙ୍କର ଗୋଟିଏ ପୁତ୍ର ସନ୍ତାନ ଜାତ ହୋଇ ଛଅ ମାସ ପରେ ମରିଯାଇଥିଲା। ତାଙ୍କ ସ୍ତ୍ରୀଙ୍କୁ ସାନ୍ତ୍ୱନା ଦେବାପାଇଁ ସେ ପ୍ରଥମେ ବ୍ରାହ୍ମଣ ଡକାଇ ରାମାୟଣ ଶୁଣାଉଥିଲେ; ମାତ୍ର ତାହା ସନ୍ତୋଷଜନକ ନହେବାରୁ ସେ ନିଜେ ସଂସ୍କୃତ ବାଲ୍ମୀକି ରାମାୟଣର ଓଡ଼ିଆ ପଦ୍ୟାନୁବାଦ ଆରମ୍ଭ କଲେ। ରାମାୟଣର ବାଳକାଣ୍ଡ ପୁସ୍ତକଟି ସେ ଜନ୍ ବୀମ୍‌ସଙ୍କ ନାମରେ ଉତ୍ସର୍ଗ କରିଥିଲେ। ତାହାପରେ ୧୮୮୧ ମସିହାରେ ସେହିଠାରେ ତାଙ୍କର ଦ୍ୱିତୀୟ ପୁତ୍ର ଜାତହୋଇଥିଲା। ଢେଙ୍କାନାଳରେ ତାଙ୍କର କେତେକ ଶତ୍ରୁ ସ୍ଥାନୀୟ ବ୍ୟକ୍ତି ତାଙ୍କ ବିରୋଧରେ ଗଡ଼ଜାତ ରାଜ୍ୟର ସୁପରିଣ୍ଟେଣ୍ଡେଣ୍ଟଙ୍କ ପାଖକୁ ଦରଖାସ୍ତ କଲେ। ସେତେବେଳକୁ ଉଭୟ ଜନ୍ ବୀମ୍‌ସ୍ ସାହେବ ଏବଂ ରେଭେନ୍‌ସା ସାହେବ ଓଡ଼ିଶାରୁ ବଦଳି ହୋଇ ଯାଇଥିଲେ। ସେ ଦୁହିଁଙ୍କ ମଧ୍ୟରେ ବିବାଦ ବିଷୟ ବଙ୍ଗ ସରକାର ଜାଣିପାରି ରେଭେନ୍‌ସା ସାହେବଙ୍କୁ ବର୍ଦ୍ଧମାନର କମିସନର୍ ଏବଂ ବୀମସ୍ ସାହେବଙ୍କୁ ଶ୍ରୀହଟ୍ଟର ଜଜ୍ ଓ କମିସନର୍ ରୂପେ ବଦଳି

କରିଦେଇଥିଲେ। ବୀମ୍‌ସ୍‌ଙ୍କ ପରେ ଫକୀରମୋହନଙ୍କୁ ଉପରିସ୍ଥ କର୍ମକର୍ତ୍ତାଙ୍କଠାରୁ ସମର୍ଥନ ମିଳିଲା ନାହିଁ। ସେ ପୀଡ଼ିତ ହୋଇ ଛୁଟିରେ ଥିବାବେଳେ ତାଙ୍କ ବିରୁଦ୍ଧରେ ହୋଇଥିବା ଗୋଟିଏ ଦରଖାସ୍ତ ପ୍ରମାଣିତ ହେବାକୁ ଯାଉଥିବାରୁ ତାଙ୍କର ବନ୍ଧୁ ଗଡ଼ଜାତ ମାହାଲମାନଙ୍କର ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ନନ୍ଦ କିଶୋର ଦାସଙ୍କ ପରାମର୍ଶରେ ସେ ଢେଙ୍କାନାଳ ଚାକିରିରୁ ୧୮୮୩ ମସିହା ସେପ୍ଟେମ୍ବର ମାସ ଶେଷରେ ଇସ୍ତଫାଦେଲେ। ଢେଙ୍କାନାଳରେ ଛଅବର୍ଷ ଚାକିରି କାଳରେ ସେ ପ୍ରଶାସନ କ୍ଷେତ୍ରରେ କୌଣସି ସଫଳତା ଅର୍ଜନ କରିପାରିନଥିଲେ; ମାତ୍ର ରାମାୟଣର ସାତକାଣ୍ଡଯାକର ପଦ୍ୟାନୁବାଦ କରିଥିଲେ।

ଢେଙ୍କାନାଳରୁ ବିଦାୟ ନେଇ ପ୍ରାୟ ଦଶମାସ କାଳ ବାଲେଶ୍ୱରରେ ବେକାର ହୋଇ ରହି ଅନ୍ୟ କୌଣସି ଗଡ଼ଜାତ ରାଜ୍ୟରେ ଚାକିରି ପାଇଁ ଚେଷ୍ଟା କରୁଥିଲେ। ସେହି ସମୟରେ ସେ ମହାଭାରତର ପଦ୍ୟାନୁବାଦ କରିବାକୁ ଆରମ୍ଭ କରିଥିଲେ। ତାହା ପରେ ୧୮୮୪ ମସିହା ଅଗଷ୍ଟ ମାସରେ ନନ୍ଦକିଶୋର ଦାସଙ୍କ ଚେଷ୍ଟାରେ ଦଶପଲ୍ଲା ରାଜ୍ୟର ଦେୱାନରୂପେ ନିଯୁକ୍ତ ହୋଇଥିଲେ। ସେ ବର୍ଷ ଅଗଷ୍ଟ ମାସରେ ମହାନଦୀର କଟକ ଗଡ଼ଗଡ଼ିଆ ଘାଟରୁ କାତମରା ଓ ଦଉଡ଼ିଟଣା ଡଙ୍ଗାରେ ଦଶପଲ୍ଲା ଯାଇଥିଲେ। ତାଙ୍କର ସେ ନୌକାଯାତ୍ରା ଫକୀରମୋହନ ତାଙ୍କର 'ଆତ୍ମଜୀବନଚରିତ'ରେ ସାହିତ୍ୟିକ ଶୈଳୀରେ ଅତି ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି।

ଦଶପଲ୍ଲାରେ ସେ ପ୍ରାୟ ଦେଢ଼ବର୍ଷ କାର୍ଯ୍ୟ କରିଥିଲେ। ଦଶପଲ୍ଲା ରାଜାଙ୍କ ନିରକ୍ଷରତା ଓ ନିର୍ବୋଧତା ଏବଂ ରାଜ୍ୟର ଅଧିକାଂଶ ପ୍ରଜା କନ୍ଧମାନଙ୍କର ବ୍ୟବହାର ଏବଂ ସେମାନଙ୍କ ମଧ୍ୟରେ ପ୍ରଚଳିତ ନରବଳି ପ୍ରଭୃତି ପ୍ରଥା ଫକୀରମୋହନ ଆତ୍ମଜୀବନଚରିତରେ ବର୍ଣ୍ଣନା କରିଛନ୍ତି। ଦଶପଲ୍ଲାରେ ଦେୱାନ ଥିବାବେଳେ ସେ ଦଶପଲ୍ଲା ଅଧୀନସ୍ଥ ଯୋରମ ଅଞ୍ଚଳର ନରସିଂହପୁର ଓ ଅନଗୁଳ ମଧ୍ୟରେ ସୀମା ନିର୍ଦ୍ଧାରଣ କରିଦେଇଥିଲେ। ପରେ ତାହା ଗଡ଼ଜାତ ମାହାଲମାନଙ୍କର ସୁପରିଣ୍ଟେଣ୍ଡେଣ୍ଟ ଅନୁମୋଦନ କରିଥିଲେ। ସେହି ସମୟରେ ସେ ଯୋରମ ଇଲାକାରେ ମହାନଦୀର ଘାଇରେ ଗୋଟିଏ ପଥରବନ୍ଧ ନିର୍ମାଣ କରାଇଥିଲେ। ଦଶପଲ୍ଲାରେ ମଧ୍ୟ କୋବି, ମଟର, ସାଲଗମ୍, ମୂଳା ପ୍ରଭୃତି ଚାଷ ଆରମ୍ଭ କରାଇଥିଲେ। ରାଜ୍ୟରେ ପଣ୍ଡିମା ସାଧୁମାନଙ୍କ ଅତ୍ୟାଚାରର ବିରୋଧ କରିବା ହେତୁ ରାଜାଙ୍କ ସହିତ ତାଙ୍କର ମନାନ୍ତର ହେଲା। ସେଥିଯୋଗୁଁ ସୁପରିଣ୍ଟେଣ୍ଡେଣ୍ଟ ତାଙ୍କୁ ୧୮୮୬ ମସିହା ଜାନୁଆରୀ ମାସରେ କାର୍ଯ୍ୟରୁ ଅନ୍ତର କଲେ ଏବଂ ଅଳ୍ପ କାଳପରେ ପାଲଲହଡ଼ା ରାଜ୍ୟର ଦେୱାନ ପଦରେ ନିଯୁକ୍ତ କରିଥିଲେ।

ପାଲଲହଡ଼ାରେ ତାଙ୍କର ପ୍ରଧାନ କାର୍ଯ୍ୟ ଥିଲା ମେଳିଆ ପ୍ରଜାମାନଙ୍କର

ନେତାମାନଙ୍କ ବିଚାରକରି ଦଣ୍ଡଦେବା । ତାହା ପୂର୍ବରୁ ପାଲଲହଡ଼ାରେ ଗୋଟିଏ ପ୍ରଜାମେଳି ହୋଇଥିଲା; ମାତ୍ର ସର୍ଦ୍ଦାର ମେଳିଆମାନେ ଦଣ୍ଡିତ ହେବାରୁ ଅନ୍ୟମାନେ ବଣଜଙ୍ଗଲକୁ ପଳାଇଯାଇଥିଲେ । କଚେରିରେ କୌଣସି ମକଦ୍ଦମା ନଥିଲା । ପାଲଲହଡ଼ାରେ ବର୍ଷେକାଳ ଥିବା ସମୟରେ ତାଙ୍କ ହାତରେ କିଛି କାମ ନଥିଲା । ସେ ମହାଭାରତ ଅନୁବାଦ କରିବାରେ ବ୍ୟାପୃତ ଥିଲେ । ପାଲଲହଡ଼ା ସେତେବେଳେ ଜଙ୍ଗଲ ଓ ହିଂସ୍ରଜନ୍ତୁପୂର୍ଣ୍ଣ ଥିଲା ଏବଂ ସେଠାରେ ଦୋକାନ ବଜାର କିଛି ନଥିଲା । ଫକୀରମୋହନ ପାଲଲହଡ଼ା ରାଜାଙ୍କ ପାଣ୍ଡିତ୍ୟ ଏବଂ ବଦାନ୍ୟତା ବିଷୟ ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି । ମାତ୍ର ସେଠାରେ କିଛି କାମ ନ ଥିବାରୁ ସେ ରାଜାଙ୍କୁ ଏବଂ ସୁପରିଣ୍ଟେଣ୍ଡେଣ୍ଟଙ୍କୁ ଜଣାଇ ୧୮୮୭ ମସିହା ବର୍ଷାକାଳରେ ସେ କାମ ଛାଡ଼ିଦେଇଥିଲେ । ସେହି ସମୟରେ କେନ୍ଦୁଝର ରାଜ୍ୟରେ ଗୋଟିଏ ମାନେଜର ପଦ ଖାଲିପଡ଼ିବାରୁ ସେ ସେଥିପାଇଁ ଦରଖାସ୍ତ କଲେ ଏବଂ ନନ୍ଦକିଶୋରବାବୁଙ୍କ ସୁପାରିସ୍‌ରେ ୧୮୮୭ ମସିହା ଡିସେମ୍ବର ମାସରେ ୧୦୦ଟଙ୍କା ମାସିକ ଦରମାରେ କେନ୍ଦୁଝରର ଆନନ୍ଦପୁର ଇଲାକାରେ ମାନେଜର କାର୍ଯ୍ୟରେ ଯୋଗଦେଲେ ।

କେନ୍ଦୁଝରରେ ସେ ୧୮୬୭ ମସିହା ଡିସେମ୍ବର ମାସରୁ ୧୮୯୨ ମସିହା ମଧ୍ୟଭାଗ ପର୍ଯ୍ୟନ୍ତ ପ୍ରାୟ ସାଢ଼େ ଚାରିବର୍ଷ ଚାକିରି କରିଥିଲେ । ଫକୀରମୋହନ ଲେଖିଛନ୍ତି ଯେ, ସେ ସମୟର କେନ୍ଦୁଝର ମହାରାଜ ଧନଞ୍ଜୟ ନାରାୟଣ ଭଞ୍ଜ ଜଣେ ବିଚକ୍ଷଣ ପ୍ରଶାସକ ଥିଲେ ଏବଂ ରାଜ୍ୟର ଉନ୍ନତି ବିଷୟରେ ତାଙ୍କର ବିଶେଷ ଆଗ୍ରହ ଥିଲା । ଫକୀରମୋହନ ଆନନ୍ଦପୁର ଇଲାକାର ମାନେଜର ହୋଇ ଶାସନ କାର୍ଯ୍ୟରେ ଶୃଙ୍ଖଳାରକ୍ଷା ଏବଂ ଅନ୍ୟ ଲୋକହିତକର କାର୍ଯ୍ୟ କରିଥିଲେ । କେନ୍ଦୁଝର ରାଜ୍ୟ ବିରୁଦ୍ଧରେ କେତେକ ମକଦ୍ଦମା ତାଙ୍କ ଉଦ୍ୟମରେ ରାଜ୍ୟ ସପକ୍ଷରେ ଡିଗ୍ରୀ ହେବାରୁ ରାଜା ତାଙ୍କ ଉପରେ ଖୁସି ହୋଇ ତାଙ୍କର ଦରମା ମାସିକ ୧୨୦ ଟଙ୍କାକୁ ବଢ଼ାଇଦେଇଥିଲେ ।

ତାଙ୍କର କେନ୍ଦୁଝର ମାନେଜରୀର ଚତୁର୍ଥ ବର୍ଷରେ ୧୮୯୧ ମସିହା ଗ୍ରୀଷ୍ମକାଳରେ ରାଜ୍ୟର ଭୂୟାଁ ପ୍ରଜାମାନେ ବେଠି କାର୍ଯ୍ୟ ବିରୁଦ୍ଧରେ ଧରଣୀଧର ଭୂୟାଁ ନାମକ ଜଣେ ଯୁବକଙ୍କ ନେତୃତ୍ୱରେ ବିଦ୍ରୋହ କଲେ ଏବଂ କେନ୍ଦୁଝରଗଡ଼କୁ ଘେରାଉ କରିବାକୁ ଚେଷ୍ଟା କଲେ । ମହାରାଜା ଆନନ୍ଦପୁରକୁ ପଳାଇଆସିଲେ । ମହାରାଜାଙ୍କ ଆଦେଶରେ ବ୍ରିଟିଶ ସରକାରଙ୍କ ପୁଲିସ୍ ସାହାଯ୍ୟ ପାଇବା ପାଇଁ ଫକୀରମୋହନ କଟକ ଗଲେ । କଟକରେ ସେତେବେଳେ ଟୟନ୍‌ବି ସାହେବ ଗଡ଼ଜାତ ରାଜ୍ୟମାନଙ୍କର ସୁପରିଣ୍ଟେଣ୍ଡେଣ୍ଟ ଥିଲେ । ସେ ଆଗରୁ କେନ୍ଦୁଝରରେ ପ୍ରଜା-ବିଦ୍ରୋହ ବିଷୟକ ସମସ୍ତ ଖବର ପାଇଥିଲେ ଏବଂ ମହାରାଜାଙ୍କ ଅତ୍ୟାଚାର

ହେତୁ ପ୍ରଜା-ବିଦ୍ରୋହ ହୋଇଛି ବୋଲି ଦୃଢ଼ଭାବରେ ବିଶ୍ୱାସ କରିଥିଲେ। ଫକୀରମୋହନ ସାହେବଙ୍କୁ ବହୁତ ବୁଝାଇବା ପରେ, ସେ ବାଲେଶ୍ୱରରୁ ଶହେ ପୁଲିସ୍ କନଷ୍ଟେବଲ୍ ପଠାଇବାକୁ ରାଜିହୋଇଥିଲେ। ତାହାପରେ ମହାରାଜା ନିଜେ ଟୟନ୍‌ବି ସାହେବଙ୍କ ସହିତ ସାକ୍ଷାତ କରିଥିଲେ। କଥାବାର୍ତ୍ତା ପରେ ବାଲେଶ୍ୱର ପରିବର୍ତ୍ତେ ଚାଇଁବସାରୁ ୨୦୦ ମିଲିଟାରୀ ପୁଲିସ୍ କେନ୍ଦୁଝର ପଠାଇବା ସ୍ଥିରହେଲା। କଟକରୁ ମହାରାଜା ଫକୀରମୋହନଙ୍କ ସହ ଆନନ୍ଦପୁର ଫେରି ସେଠାରୁ ପ୍ରାୟ ତିନିଶହ ପାଇକ ସଂଗ୍ରହ କରି କେନ୍ଦୁଝରଗଡ଼ ଅଭିମୁଖେ ଯାତ୍ରାକଲେ। ମାତ୍ର ଗଡ଼କୁ ଯିବା ବାଟରେ ବହୁସ୍ଥାନରେ ଭୂୟାଁ ବିଦ୍ରୋହୀମାନେ ଜଗିଥିବାର ଶୁଣି ମହାରାଜା ଆନନ୍ଦପୁର ଫେରିଆସିଲେ। ଫକୀରମୋହନ କିନ୍ତୁ ପାଇକମାନଙ୍କ ସହିତ ଗଡ଼କୁ ଯିବାକୁ ଲାଗିଲେ। ବିଦ୍ରୋହୀ ଭୂୟାଁଙ୍କର ଧାରଣା ଥିଲା ଯେ କେନ୍ଦୁଝର ରାଜାଙ୍କୁ ସେମାନେ ଗାଦିରେ ବସାଇଛନ୍ତି ଏବଂ ସେ ଅତ୍ୟାଚାରୀ ହେବା ହେତୁ ତାଙ୍କୁ ଗାଦିଚ୍ୟୁତ କରି ଅନ୍ୟ ବ୍ୟକ୍ତିକୁ ରାଜା କରିବାକୁ ସେମାନଙ୍କର ଅଧିକାର ଅଛି। ଗଡ଼ ଚାରିପାଖରେ ବେଠି କାର୍ଯ୍ୟଦ୍ୱାରା ଗୋଟିଏ ମାହାରା ଖୋଳାଇବାରୁ ଭୂୟାଁମାନେ ଅତ୍ୟନ୍ତ ଉତ୍ୟକ୍ତ ହୋଇଥିଲେ। ରାଜାଙ୍କଠାରୁ ସାହାଯ୍ୟ ପାଇ ସର୍ଦ୍ଦେ ପଢ଼ିଥିବା ଧରଣୀଧର ଭୂୟାଁ ସେମାନଙ୍କର ନେତା ହୋଇଥିଲେ ଏବଂ ସେମାନେ ଧରଣୀଧରଙ୍କୁ ନୂତନ ରାଜାରୂପେ ଘୋଷଣା କରିଥିଲେ।

ଆନନ୍ଦପୁରଠାରୁ କେନ୍ଦୁଝରଗଡ଼ ଯିବା ବାଟରେ ବହୁତ ପାହାଡ଼ିଆ ଘାଟି ଥିଲା। ସେଗୁଡ଼ିକରେ ବିଦ୍ରୋହୀ ଭୂୟାଁମାନେ ଜଗିଥିଲେ ଏବଂ ସେମାନଙ୍କ ବିନା ଅନୁମତିରେ ଆନନ୍ଦପୁର ଓ କେନ୍ଦୁଝରଗଡ଼କୁ ରାଜାଙ୍କର କୌଣସି ଅନୁଚରଙ୍କୁ ଯିବାକୁ ଦେଉନଥିଲେ। ଗଡ଼ ଅଭିମୁଖେ ଯାଉଥିବା ଫକୀରମୋହନ ଓ ତାଙ୍କ ସଙ୍ଗରେ ଥିବା ପାଇକମାନେ ଗୋଟିଏ ଘାଟିରେ ବନ୍ଦୀ ହେଲେ। ଧରଣୀଧର ଭୂୟାଁ ଏବଂ ତାଙ୍କ ଅଧୀନସ୍ଥ ଭୂୟାଁ ପ୍ରଜାମାନେ ସେମାନଙ୍କୁ ପ୍ରାୟ ଆଠଦିନ ବନ୍ଦୀ କରି ରଖିଥିଲେ; ମାତ୍ର କୌଶଳ କରି ଫକୀରମୋହନ ଧରଣୀଧରଙ୍କର ମାନେଜର ହୋଇଗଲେ ଏବଂ ସରକାରୀ ସୈନ୍ୟ ପଠାଇବାକୁ କୌଶଳରେ ମହାରାଜାଙ୍କ ପାଖକୁ ଖବର ଦେଲେ। ଆଠ ଦିନ ପରେ ବ୍ରିଟିଶ ସୈନ୍ୟମାନେ ଧରଣୀଧରଙ୍କୁ ବନ୍ଦୀକଲେ। ଅପରାଧୀମାନଙ୍କ ବିଚାର କରିବା ନିମିତ୍ତ ନିଜେ ଟୟନ୍‌ବି ସାହେବ କେନ୍ଦୁଝରଗଡ଼କୁ ଯାଇଥିଲେ। ତାଙ୍କ ସଙ୍ଗରେ ପେସ୍କାର ପ୍ରଭୃତି ନଥିବାରୁ ଫକୀରମୋହନଙ୍କୁ ସେ ପେସ୍କାର କାର୍ଯ୍ୟରେ ଲଗାଇଲେ। ଧରଣୀଧରଙ୍କୁ ରାଜଦ୍ରୋହ ଅପରାଧରେ ପାଞ୍ଚବର୍ଷ ଜେଲ୍‌ଦଣ୍ଡ ହେଲା। ଅନ୍ୟ କେତେକ ଭୂୟାଁ ସର୍ଦ୍ଦାର ମଧ୍ୟ ଜେଲ୍‌ଦଣ୍ଡ ଭୋଗିଲେ।

ଟଯନ୍‌ବି ସାହେବ କିନ୍ତୁ ମହାରାଜାଙ୍କୁ ଅତ୍ୟାଚାରୀ ଅପାରଗ ପ୍ରଶାସକ ବୋଲି ଶାସନକାର୍ଯ୍ୟରୁ ଅନ୍ତରକଲେ ଏବଂ ମୟୂରଭଞ୍ଜରେ ଥିବା ଓ୍ୟାଲି ସାହେବ ନାମରେ ଜଣେ ପ୍ରଶାସକଙ୍କୁ କେନ୍ଦୁଝର ରାଜ୍ୟର ପ୍ରଶାସନ ଦାୟିତ୍ୱ ଦେବାକୁ ସ୍ଥିରକଲେ। ଟଯନ୍‌ବି ସାହେବ ଫକୀରମୋହନଙ୍କ ଦ୍ୱାରା ସେହି ମର୍ମରେ ଖଣ୍ଡିଏ ଚିଠି ଲେଖାଇ ମହାରାଜାଙ୍କ ନିକଟକୁ ପଠାଇଲେ ଏବଂ ଚିଠି ପାଇବା ମାତ୍ରେ ରାଜ୍ୟ ଛାଡ଼ି କଟକ ଚାଲିଆସିବାକୁ ଆଦେଶ ଦେଲେ। ଫକୀରମୋହନଙ୍କ ହାତରେ ଏପରି ଅପମାନଜନକ ଚିଠି ଲେଖା ହେବାଯୋଗୁଁ ମହାରାଜା ତାଙ୍କ ଉପରେ ଅତ୍ୟନ୍ତ ବିରକ୍ତ ହେଲେ। ମହାରାଜାଙ୍କ ଅନୁପସ୍ଥିତିରେ ଫକୀରମୋହନ ଜିଲ୍ଲାର ଦାୟିତ୍ୱ ନେବାପାଇଁ ଏବଂ ଓ୍ୟାଲି ସାହେବଙ୍କ ଅଧୀନରେ କାର୍ଯ୍ୟ କରିବାକୁ ରାଜିହୋଇଥିବାରୁ, ମହାରାଜା ମଧ୍ୟ ଅତ୍ୟନ୍ତ କ୍ରୁଦ୍ଧ ହେଲେ। ମହାରାଜା ବଙ୍ଗ ପ୍ରେସିଡେନ୍‌ସିର ଗଭର୍ଣ୍ଣରଙ୍କ ପାଖରେ ଓକିଲ ମଧୁସୂଦନ ଦାସଙ୍କ ଜରିଆରେ ଅପିଲ୍ କଲେ ଏବଂ ସରକାରଙ୍କ ଆଦେଶରେ ରାଜ୍ୟ ଫେରିପାଇଲେ। ମାତ୍ର ସେ ଫକୀରମୋହନଙ୍କୁ ଆଉ କେନ୍ଦୁଝର ରାଜ୍ୟରେ ମାନେଜର ପଦରେ ରଖିବାକୁ ଇଚ୍ଛା କଲେ ନାହିଁ। ଫକୀରମୋହନ କେନ୍ଦୁଝର ଛାଡ଼ିବାକୁ ବାଧ୍ୟହେଲେ। ଏହି ସମୟରେ ମାତ୍ର ଦୁଇଦିନ ମଧ୍ୟରେ ଭଦ୍ରକରୁ ଆନନ୍ଦପୁର ଫେରିବାବେଳେ, ଫକୀରମୋହନ ତାଙ୍କର 'ଉତ୍କଳ ଭ୍ରମର' ବହି ଲେଖିଥିଲେ।

କେନ୍ଦୁଝରରୁ ୧୮୯୨ ମସିହାରେ ଫେରିବା ପରେ ପ୍ରାୟ ଦୁଇବର୍ଷ ସମୟ ସେ କର୍ମହୀନ ହୋଇ ରହିଥିଲେ। ତାହାପରେ ୧୮୯୪ ମସିହାରେ ସେ ଡୋମପଡ଼ା ରାଜ୍ୟରେ ମାସିକ ୧୨୦ ଟଙ୍କା ଦରମାରେ ଦ୍ୱିତୀୟ ଥର ପାଇଁ ଦେଓ୍ୱାନ ହୋଇଥିଲେ। ସେଠାରେ ମଧ୍ୟ ସେ ଦୁଇବର୍ଷରୁ ଅଧିକ ସମୟ ରହି ପାରିନଥିଲେ। ଫକୀରମୋହନ ଡୋମପଡ଼ାର ଦେଓ୍ୱାନ ହେବା ପରେ ଦେଖିଲେ ଯେ, ସେଠାର ରାଜା ବ୍ରଜେନ୍ଦ୍ର କୁମାର ମାନସିଂହ ଭ୍ରମରବର ରାୟ ଡୋମପଡ଼ାରେ ନ ରହି କଟକରେ ରହିବାକୁ ଭଲପାଉଥିଲେ ଏବଂ ତାଙ୍କର ଅନେକ ଗୁଡ଼ିଏ ଋଣ ଥିଲା। ରାଜା ରାଜ୍ୟ-ପରିଚାଳନା କଥା କିଛି ବୁଝୁନଥିଲେ। ଫକୀରମୋହନ କାର୍ଯ୍ୟରେ ଯୋଗଦେବାର ଅଳ୍ପ କେତେମାସ ଭିତରେ ରାଜାଙ୍କର ମାତା, ମାତାମହୀ ଓ ପତ୍ନୀଙ୍କର ଦେହାନ୍ତ ହେଲା ଏବଂ ସେମାନଙ୍କର ଶୁଦ୍ଧିକ୍ରିୟାରେ ବହୁଖର୍ଚ୍ଚ ହେତୁ ରାଜାଙ୍କର ଋଣଭାର ଅତିମାତ୍ରାରେ ବଢ଼ିଗଲା। ରାଜାଙ୍କର ମାତାମହୀ ଟିକ୍କାଲୀର ରାଣୀଙ୍କ ମୃତ୍ୟୁ ସମୟରେ ଡୋମପଡ଼ା ପକ୍ଷରୁ ଫକୀରମୋହନ ଟିକ୍କାଲୀ ଯାଇ ସେଠାରେ ପ୍ରାୟ ଛଅମାସ ରହିଥିଲେ ଏବଂ ହାତରେ କିଛି କାମ ନଥିବାରୁ ସେଠାରେ ତେଲଗୁ ଭାଷା ଶିକ୍ଷାକରୁଥିଲେ।

ଡୋମପଡ଼ା ରାଣୀଙ୍କ ମୃତ୍ୟୁର କେତେମାସ ପରେ ଫକୀରମୋହନଙ୍କ

ପତ୍ନୀ କୃଷ୍ଣକୁମାରୀଙ୍କର ୩୪ ବର୍ଷ ବୟସରେ ୧୮୯୪ ମସିହା ଭାଦ୍ରବ ମାସରେ ମୃତ୍ୟୁହେଲା । ତାଙ୍କର ମୃତ୍ୟୁବେଳକୁ ଫକୀରମୋହନଙ୍କ ପୁଅର ବୟସ ୧୩ ଏବଂ ଝିଅର ବୟସ ୧୧ ବର୍ଷ ହୋଇଥିଲା । ଫକୀରମୋହନ ସେମାନଙ୍କୁ ଏକବର୍ଷ ପାଇଁ ସେତେବେଳର କଟକ ଟ୍ରେନିଂ ସ୍କୁଲର ସୁପରିଣ୍ଟେଣ୍ଡେଣ୍ଟ ଭକ୍ତକବି ମଧୁସୂଦନ ରାଓଙ୍କ ଘରେ ରଖାଇଥିଲେ ।

ଡୋମପଡ଼ା ରାଣୀଙ୍କ ମୃତ୍ୟୁର ଅଳ୍ପକାଳ ପରେ ରାଜାଙ୍କର କନିକା ରାଣୀ ସାହେବାଙ୍କ ପାଳିତା କନ୍ୟାଙ୍କ ସହିତ ଦ୍ୱିତୀୟ ବିବାହ ହେଲା । ଫକୀରମୋହନ ସେ ବିବାହ ସମ୍ବନ୍ଧ ସ୍ଥାପନରେ ବିଶେଷ ସାହାଯ୍ୟ କରିଥିଲେ । ତାହାପରେ ଫକୀରମୋହନ ବ୍ରଣରୋଗରେ ପୀଡ଼ିତ ହୋଇ କଟକରେ ରହିଥିଲେ । ତାଙ୍କର ପୀଡ଼ା ସମୟରେ ରାଜା, ନୂତନ ରାଣୀ ଓ କନିକା ରାଜ୍ୟର ମାନେଜରଙ୍କ ପରାମର୍ଶରେ ତାଙ୍କୁ ପଦଚ୍ୟୁତକଲେ । ରାଜାଙ୍କର ଋଣଭାର ବୃଦ୍ଧି ପଦଚ୍ୟୁତିର କାରଣ ବୋଲି ଦର୍ଶାଯାଇଥିଲା । ଦ୍ୱିତୀୟ ଥର ଦେୱାନି ବେଳେ ଫକୀରମୋହନ ରାଜାଙ୍କର ନଅର ମରାମତି କରାଇଥିଲେ ଏବଂ ଗୋଟିଏ ଅତିଥିଶାଳା ନିର୍ମାଣ କରାଇଥିଲେ । ରାଜସ୍ୱ ବୃଦ୍ଧି ପାଇଁ ନୂତନ ଭାବରେ ଆବାଦୀ ଜମିରେ କର ଧାର୍ଯ୍ୟ କରିବାକୁ ଉଦ୍ୟମ କରିଥିଲେ । ପଦଚ୍ୟୁତି ପରେ ଡୋମପଡ଼ା ରାଜା ତାଙ୍କୁ ମାସିକ ଶହେ ଟଙ୍କା ସାହାଯ୍ୟ ଦେବାପାଇଁ ପ୍ରସ୍ତାବ କରିଥିଲେ; ମାତ୍ର ଫକୀରମୋହନ ତାହା ଗ୍ରହଣ କରିବାକୁ ରାଜି ହୋଇନଥିଲେ । ୧୮୯୬ ମସିହାରେ ଡୋମପଡ଼ା ତ୍ୟାଗ ପରେ ସେ ଆଉ କୌଣସି ରାଜ୍ୟରେ ଚାକିରି କରିବାକୁ ଇଚ୍ଛା ନକରି ଅବସର ଗ୍ରହଣ କରିଥିଲେ ଏବଂ କଟକ ଧୁଆଁପଡ଼ିଆ ସାହିରେ ତାଙ୍କର ବାସଭବନରେ ରହିଥିଲେ । ୧୮୯୯ ମସିହାରେ କେନ୍ଦ୍ରାପଡ଼ାର ଜମିଦାର ରାଧାଶ୍ୟାମ ନରେନ୍ଦ୍ରଙ୍କ ପରିବାରର ଅନୁରୋଧରେ ସେ ସେଠାରେ ପ୍ରାୟ ୯ ମାସ ଚାକିରି କରିଥିଲେ । ସେତେବେଳେ ସେ ପରିବାର ସାଧୁ ଓ ଦେବସେବାରେ ଅତ୍ୟନ୍ତ ଖର୍ଚ୍ଚାନ୍ତ ହୋଇ ଋଣଭାରରେ ବୁଡ଼ିଥିଲେ । ଜମିଦାରିରକ୍ଷାର କୌଣସି ଉପାୟ ନଦେଖି ଫକୀରମୋହନ କାର୍ଯ୍ୟ ତ୍ୟାଗକରିଥିଲେ । ତାହାପରେ ସେ ଆଉ କୌଣସି ସ୍ଥାନରେ ଚାକିରି ନକରି ଘରେ ରହି ସାହିତ୍ୟସେବାରେ ବ୍ରତୀ ହେଲେ ।

ସଂକ୍ଷେପରେ, ସେ ୧୮୭୧ ମସିହାରୁ ୧୮୯୬ ମସିହା ପର୍ଯ୍ୟନ୍ତ ବିଭିନ୍ନ ଗଡ଼ଜାତ ରାଜ୍ୟ ଓ ଜମିଦାରିମାନଙ୍କରେ ପ୍ରଶାସକ ଭାବରେ ଚାକିରି କରିଥିଲେ । ସବୁ ରାଜ୍ୟରେ ତାଙ୍କ ଆଧୁନିକ ଚିନ୍ତାଧାରା ଓ ମନୋବୃତ୍ତି ଅନୁସାରେ ରାସ୍ତାଘାଟ ନିର୍ମାଣ, ଜଳସେଚନର ବ୍ୟବସ୍ଥା, ଶିକ୍ଷା ପ୍ରସାର, ନୂତନ କୃଷି ପ୍ରଣାଳୀ ପ୍ରବର୍ତ୍ତନ ଏବଂ ହାଟ-ବଜାର ପ୍ରଭୃତି ପ୍ରତିଷ୍ଠା ପାଇଁ ଉଦ୍ୟମ କରିଥିଲେ । ମାତ୍ର ଅଧିକାଂଶ

ରାଜ୍ୟରେ ତାଙ୍କର ସ୍ୱାଧୀନ ଚିନ୍ତାଧାରା ହେତୁ ରାଜାମାନଙ୍କ ସହିତ ମତଭେଦ ଘଟିବାରୁ ଚାକିରି ଛାଡ଼ିବାକୁ ସେ ବାଧ୍ୟହୋଇଥିଲେ। ଚାକିରି ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ତାଙ୍କର ମାସିକ ଦରମା ୧୦୦ ଟଙ୍କାରୁ ୧୨୦ ଟଙ୍କା ମଧ୍ୟରେ ଥିଲା। ମଝିରେ ମଝିରେ ବର୍ଷେ ଦୁଇ ବର୍ଷ ବେକାର ହୋଇ ବସୁଥିଲେ ଏବଂ ସେଥିଯୋଗୁଁ ଅର୍ଥାଭାବ ଅନୁଭବ କରୁଥିଲେ। ଅନେକ ସମୟରେ ମଧ୍ୟ ବିଭିନ୍ନ ରୋଗରେ ପୀଡ଼ିତ ହେଉଥିଲେ। ସୁତରାଂ ତାଙ୍କର ଚାକିରି ସମୟ ନିରବଚ୍ଛିନ୍ନ କିମ୍ବା ସୁଖ-ଶାନ୍ତିର ସମୟ ନଥିଲା।

**ଅବସର ସମୟ ଓ ସାହିତ୍ୟସେବା –**

ଚାକିରି କରୁଥିବା ସମୟରେ ଫକୀରମୋହନ ପ୍ରଥମେ ବକ୍ସିବଜାର ନିକଟରେ ଗୋଟିଏ ବଙ୍ଗଳା ଘର କିଣିଥିଲେ। ମାତ୍ର ସେଠାରେ ରହିବାକୁ ସୁବିଧା ନମଣିବାରୁ, ସେ ପ୍ରଥମେ ଘରର ଅଧେ ବିକିଦେଇଥିଲେ; ପରେ ଅନ୍ୟ ଅଧକୁ ମଧୁସୂଦନ ଦାସଙ୍କୁ ବିକିଦେଲେ। ତାହାପରେ ଧୂଆଁପତରିଆ ସାହିରେ ପନ୍ଦର-ଷୋହଳ ଗୁଣ୍ଠର ଖଣ୍ଡିଏ ଜମି କିଣି ସେଥିରେ ଗୋଟିଏ ଘର ତିଆରି କରିଥିଲେ। ସେହି ଘରେ ସେ ୧୮୯୬ରୁ ୧୯୦୫ ମସିହା ପର୍ଯ୍ୟନ୍ତ ବାସକରିଥିଲେ। ମଝିରେ ୧୮୯୯ ମସିହାରେ କେବଳ ନଅମାସ ପାଇଁ କେନ୍ଦ୍ରାପଡ଼ା ରାଧାଶ୍ୟାମ ନରେନ୍ଦ୍ରଙ୍କ ଜମିଦାରିରେ ଚାକିରି କରିଥିଲେ। ଅବସର ସମୟରେ ତାଙ୍କର ସେହି ଘରେ ବୃକ୍ଷ, ଲତା, ପକ୍ଷୀ ପରିବେଶରେ ଅନେକଗୁଡ଼ିଏ କବିତା ଲେଖିଥିଲେ। ସେଗୁଡ଼ିକ ସଂକଳନ କରି 'ଅବସର ବାସରେ' ପୁସ୍ତକ ପ୍ରକାଶ କଲେ। ଢେଙ୍କାନାଳରେ ୧୮୮୧ ମସିହାରେ ରାମାୟଣର ପଦ୍ୟାନୁବାଦ ଶେଷ କରି ମହାଭାରତର ପଦ୍ୟାନୁବାଦ ଆରମ୍ଭ କରିଥିଲେ। ତାହା କାର୍ଯ୍ୟ-ଜଞ୍ଜାଳ ମଧ୍ୟରେ ଅନେକ ବର୍ଷ ଲାଗିଯାଇଥିଲା। ୧୯୦୨ ମସିହାରେ ତାହା ତାଙ୍କର ସେହି ଘରେ ଶେଷହୋଇଥିଲା। ଆଗରୁ ଡୋମପଡ଼ାରେ ଥିବାବେଳେ କୃଷ୍ଣକୁମାରୀଙ୍କ ମୃତ୍ୟୁ ପରେ ସେ 'ପୁଷ୍ପମାଳା' ଏବଂ 'ଉପହାର' ନାମରେ ଦୁଇଟି ପୁସ୍ତକ ପ୍ରକାଶ କରିଥିଲେ। କଟକ ବସାରେ କେତେକ ଉପନିଷଦର ଅନୁବାଦ ମଧ୍ୟ କରିଥିଲେ। ଓଡ଼ିଆ ସାହିତ୍ୟକୁ ତାଙ୍କର ସର୍ବଶ୍ରେଷ୍ଠ ଅବଦାନ ଗଳ୍ପ, ଉପନ୍ୟାସ ଲେଖା ସେହି କଟକ ବସାରେ ଆରମ୍ଭକରିଥିଲେ। ସେ ସମୟର ଉତ୍କଳସାହିତ୍ୟ ପତ୍ରିକାର ଖ୍ୟାତନାମା ସଂପାଦକ ବିଶ୍ୱନାଥ କର ତାଙ୍କୁ ଉତ୍କଳ ସାହିତ୍ୟରେ ପ୍ରକାଶ ନିମିତ୍ତ ଗଳ୍ପ ଲେଖିବାକୁ ଅନୁରୋଧ କରିଥିଲେ। ସେ ଗଳ୍ପ ଲେଖି 'ଧୂର୍ଜଟୀ', ନାମରେ ଉତ୍କଳସାହିତ୍ୟରେ ପ୍ରକାଶନ ଆରମ୍ଭ କଲେ। ପ୍ରଥମେ 'ରେବତୀ' ଗଳ୍ପ ପ୍ରକାଶ ପାଇଲା। ପରେ 'ଛ'ମାଣ ଆଠଗୁଣ୍ଠ'ର ଗଳ୍ପ ଆରମ୍ଭ କରିଥିଲେ।

ତାହା ଶେଷରେ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସରେ ପରିଣତ ହେଲା। ପରେ ଅପୂର୍ବ ମିଳନର ଗଳ୍ପମାନ ଉତ୍କଳ ସାହିତ୍ୟରେ ପ୍ରକାଶ କରିଥିଲେ। ତାହା ଶେଷରେ 'ଲଛମା' ନାମରେ ଉପନ୍ୟାସରୂପେ ପ୍ରକାଶିତହେଲା। ୧୯୦୫ ମସିହାରେ ତାଙ୍କର ପୁଅ ସବ୍‌ଡ଼େପୁଟି କାମରେ ନିଯୁକ୍ତ ହୋଇ ବାଲେଶ୍ୱରରେ ଅବସ୍ଥାପିତ ହୋଇଥିଲେ। ସେହି ସମୟରେ ଫକୀରମୋହନ କଟକ-ଘର ଛାଡ଼ି ବାଲେଶ୍ୱର ଘରେ ରହିବାକୁ ଗଲେ।

ବାଲେଶ୍ୱରରେ ସେ ୧୯୦୫ ମସିହାଠାରୁ ୧୯୧୮ ମସିହାରେ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ରହିଥିଲେ। ସେହି ତେର ବର୍ଷ ମଧ୍ୟରେ ସେ 'ମାମୁଁ', 'ପ୍ରାୟଶ୍ଚିତ୍ତ' ଉପନ୍ୟାସ, 'ବୌଦ୍ଧାବତାର କାବ୍ୟ' ଏବଂ 'ଆତ୍ମଜୀବନଚରିତ' ଲେଖିଥିଲେ। ଜୀବନରେ ସେ ଯେଉଁ ସ୍ଥାନରେ ବାସକରିଛନ୍ତି ସେଠାରେ ଘର ଚାରି ପାଖରେ ସୁନ୍ଦର ଉଦ୍ୟାନ କରିବାକୁ ଭଲପାଉଥିଲେ। କଟକ-ବସା ପାଖରେ ମଧ୍ୟ ଉଦ୍ୟାନ କରି ସେଥିରେ ବିଭିନ୍ନ ପ୍ରକାର ଫୁଲ ଓ ଫଳଗଛ ଲଗାଇଥିଲେ। ବାଲେଶ୍ୱର ଘରର ପଛପଟ ଉଦ୍ୟାନରେ କୃଷ୍ଣକୁମାରୀଙ୍କ ସମାଧି ମନ୍ଦିର କରିଥିଲେ। ତାହାପରେ ନିକଟରେ ଶାନ୍ତିକାନନ ନାମରେ ଉଦ୍ୟାନ କରି ସେଥିରେ ଗୋଟିଏ ପୁଷ୍କରିଣୀ ଖୋଳାଇଥିଲେ ଏବଂ ଉଦ୍ୟାନରେ ବହୁପ୍ରକାର ଫୁଲ ଓ ଫଳଗଛ ଲଗାଇଥିଲେ। ଉଦ୍ୟାନରେ ତାଙ୍କ ନିଜର ଗୋଟିଏ ପ୍ରତିମୂର୍ତ୍ତି ତିଆରି କରାଇଥିଲେ ଏବଂ ଗୋଟିଏ ସର୍ବଧର୍ମ ସ୍ତମ୍ଭ ଓ ଆଉ ଗୋଟିଏ ସ୍ତମ୍ଭ ନିର୍ମାଣ କରାଇଥିଲେ। ବାଲେଶ୍ୱରରେ ରହିବା ସମୟରେ ଅଧିକାଂଶ ସମୟରେ ସେ ଏକାକୀ ରହୁଥିଲେ ଏବଂ ବହୁ ସମୟରେ ପୀଡ଼ିତ ହେଉଥିଲେ। ଘରେ ଓ ଶାନ୍ତିକାନନରେ ବସି ଲେଖାଲେଖି କରୁଥିଲେ ଏବଂ ଅତି ଦୁଃଖ ସମୟରେ କୃଷ୍ଣକୁମାରୀଙ୍କ ସମାଧି ପାଖରେ ବସି ଶାନ୍ତିପାଉଥିଲେ। ବାଲେଶ୍ୱର ଘରେ ରହିଥିବା ସମୟରେ କିଛି ସମୟ ପଲ୍ଲୀକବି ନନ୍ଦକିଶୋର ବଳ ତାଙ୍କ ସହିତ ରହୁଥିଲେ। ମୃତ୍ୟୁଞ୍ଜୟ ରଥ ପ୍ରଭୃତି ବହୁ ସାହିତ୍ୟିକ ବନ୍ଧୁ ଏବଂ ରାଜା ବୈକୁଣ୍ଠନାଥ ଦେ ପ୍ରଭୃତି ତାଙ୍କର ପୁରାତନ ବନ୍ଧୁମାନେ ତାଙ୍କୁ ଭେଟୁଥିଲେ। ୧୯୧୫ ମସିହାରେ ଗୋପବନ୍ଧୁ ଦାସ ମଧ୍ୟ ତାଙ୍କୁ ଦେଖିବା ପାଇଁ ତାଙ୍କ ଘରକୁ ଯାଇଥିଲେ। କଟକରେ ଥିବା ସମୟରେ ୧୮୯୮ ମସିହାରେ ସେ ମାନ୍ଦ୍ରାଜ ସହରରେ ଏକେଶ୍ୱରବାଦୀଙ୍କ ମହାସଭାରେ ଯୋଗଦେବାକୁ ଯାଇଥିଲେ। ୧୯୧୬ ମସିହାରେ ବାମଣ୍ଡାର ସୁରତରଙ୍ଗିଣୀ ସାରସ୍ୱତ ସମିତି ତାଙ୍କୁ 'ସରସ୍ୱତୀ' ଉପାଧି ଦେଇଥିଲେ। ବାମଣ୍ଡାର ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ସେ ସମିତିର ସଭାପତି ଥିଲେ। ୧୯୧୭ ମସିହା ଶେଷରେ କଟକରେ ହେଉଥିବା ଉତ୍କଳ ସମ୍ମିଳନୀ ଅଧିବେଶନରେ ସେ ସଭାପତି ହୋଇଥିଲେ। ତାର ପରବର୍ଷ ୧୯୧୮ ମସିହା ଜୁନ୍ ମାସ

୧୪ ତାରିଖ ରଜ ସଂକ୍ରାନ୍ତିରେ ପଞ୍ଚସ୍ତରି ବର୍ଷ ପାଞ୍ଚ ମାସ ବୟସରେ ସେହି ବାଲେଶ୍ୱର ଘରେ ତାଙ୍କ ଦେହାବସାନ ହୋଇଥିଲା।

**ସାହିତ୍ୟ-କୃତି –**

ଫକୀରମୋହନ କୌଣସି ସ୍କୁଲ-କଲେଜରେ ପଢ଼ିନଥିଲେ। ଶୈଶବରେ ଅଝାଳ ସିଲାଇ ଏବଂ ନିମକମାହାଲରେ ଗୁମାସ୍ତାମାନଙ୍କର ସହକାରୀରୂପେ କର୍ମଜୀବନ ଆରମ୍ଭ କରିଥିଲେ। ବାରବାଟୀ ବଙ୍ଗୋଲୁକ ବିଦ୍ୟାଳୟରେ ମାତ୍ର ଦେଢ଼ବର୍ଷ ପଢ଼ିଥିଲେ; ମାତ୍ର ନିଜ ଉଦ୍ୟମରେ ଓଡ଼ିଆ, ବଙ୍ଗଳା, ସଂସ୍କୃତ, ପାର୍ସି, ଇଂରାଜୀ ପ୍ରଭୃତି ଭାଷା ଶିକ୍ଷାକରି ବାଲେଶ୍ୱରର ବାରବାଟୀ ସ୍କୁଲ ଏବଂ ପରେ ମିସନ୍‌ସ୍କୁଲରେ ଶିକ୍ଷକ କାର୍ଯ୍ୟ କରିଥିଲେ। ମିସନ୍‌ସ୍କୁଲରେ ଶିକ୍ଷକ ଥିବା ସମୟରେ ଓଡ଼ିଆରେ ପାଠ୍ୟପୁସ୍ତକ ନଥିବା ହେତୁ ସ୍କୁଲ-ଶିକ୍ଷାରୁ ଓଡ଼ିଆଭାଷା ଉଠାଇଦେବାପାଇଁ ବଙ୍ଗାଳୀମାନଙ୍କ ଉଦ୍ୟମ ଏବଂ ଓଡ଼ିଆ ପିଲାମାନଙ୍କର ପାଠ୍ୟପୁସ୍ତକ ଅଭାବ ଅନୁଭବ କରି ପ୍ରଥମେ ପାଠ୍ୟପୁସ୍ତକମାନ ଲେଖିବାକୁ ଆରମ୍ଭକଲେ। ସେତେବେଳେ ସେ ଭାରତବର୍ଷର ଇତିହାସ, ଅଙ୍କମାଳା, ଜୀବନଚରିତ (ଅନୁବାଦ), ଓଡ଼ିଆ ବ୍ୟାକରଣ ଓ ତ୍ରିକୋଣମିତି ପ୍ରଭୃତି ବିଷୟରେ ବହି ଲେଖିଥିଲେ। ସେଗୁଡ଼ିକ ଓଡ଼ିଶାର ଜିଲ୍ଲାମାନଙ୍କର ସ୍କୁଲମାନଙ୍କରେ ପାଠ୍ୟପୁସ୍ତକରୂପେ ପ୍ରଚଳିତ ହୋଇଥିଲା। ପାଠ୍ୟପୁସ୍ତକ-ରଚନା ପୁସ୍ତକ ଲେଖିବାରେ ତାଙ୍କର ପ୍ରଥମ ଅଭିଜ୍ଞତା। ତା'ପରେ ଗଡ଼ଜାତ ମାହାଲମାନଙ୍କରେ ପ୍ରଶାସକ କାର୍ଯ୍ୟ କରିବାରୁ ପୁସ୍ତକ ରଚନା କାର୍ଯ୍ୟ ଛାଡ଼ିଦେଇଥିଲେ। ମାତ୍ର ତାଙ୍କର କବି ଓ ଲେଖକ ପ୍ରତିଭା ଅନ୍ତର୍ନିହିତ ଭାବେ ସର୍ବଦା ଜାଗ୍ରତଥିଲା।

ଢେଙ୍କାନାଳରେ ଆସିଷ୍ଟାଣ୍ଟ୍ ମାନେଜରରୂପେ କାର୍ଯ୍ୟ କରୁଥିବାବେଳେ ତାଙ୍କର ପ୍ରଥମ ପଦ୍ୟ ରଚନା ଆରମ୍ଭ ହୋଇଥିଲା। ସେଠାରେ ତାଙ୍କର ପ୍ରଥମ ପୁତ୍ରର ମୃତ୍ୟୁପରେ ସ୍ତ୍ରୀଙ୍କୁ ସାନ୍ତ୍ୱନା ଦେବାପାଇଁ ବାଲ୍ମୀକି ରାମାୟଣର ସାତକାଣ୍ଡଯାକ ଓଡ଼ିଆରେ ପଦ୍ୟାନୁବାଦ କରି ପତ୍ନୀଙ୍କୁ ଶୁଣାଉଥିଲେ। ତାହା ସବୁ ପ୍ରକାଶିତ ହୋଇଛି। ତାହାପରେ ସେ ମହାଭାରତର ପଦ୍ୟାନୁବାଦ ଆରମ୍ଭ କରିଥିଲେ। ବହୁବର୍ଷ ପରେ, ଅବସରଗ୍ରହଣ ପରେ ୧୯୦୨ ମସିହାରେ ତାହା ସମାପ୍ତ ହୋଇଥିଲା। ସେଥିରୁ ଅଧିକାଂଶ ପର୍ବ ପ୍ରକାଶିତ ହୋଇଛି। ମହାଭାରତ ପରେ ସେ କେତେଖଣ୍ଡ ଉପନିଷଦ୍, ଭଗବତଗୀତା ଓ ହରିବଂଶ ପ୍ରଭୃତିର ପଦ୍ୟାନୁବାଦ କରିଥିଲେ। ସେସବୁ ମଧ ପ୍ରକାଶିତ ହୋଇଛି।

ତାହାପରେ ୧୮୯୨ ମସିହାରେ କେନ୍ଦୁଝରରେ ଭୂୟାଁ-ବିଦ୍ରୋହ ସମୟରେ ଅଳ୍ପ ଦିନ ମଧରେ ସେ ଉତ୍କଳଭ୍ରମଣ କାବ୍ୟ ଲେଖି ପ୍ରକାଶ କରିଥିଲେ।

୧୮୯୪ ମସିହାରେ ଡୋମପଡ଼ାରେ ଦ୍ୱିତୀୟ ଥର ଚାକିରି କରୁଥିବାବେଳେ କୃଷ୍ଣକୁମାରୀଙ୍କ ମୃତ୍ୟୁ ପରେ ସେ 'ପୁଷ୍ପମାଳା' ଏବଂ 'ଉପହାର' ନାମରେ ଦୁଇଟି କାବ୍ୟ ଲେଖିଥିଲେ । 'ପୁଷ୍ପମାଳା' ୧୮୯୪ରେ ଏବଂ 'ଉପହାର' ୧୮୯୫ରେ ପ୍ରକାଶିତ ହୋଇଥିଲା ।

ଚାକିରିରୁ ଅବସର ଗ୍ରହଣକରି କଟକରେ ଅବସ୍ଥାନ ସମୟରେ ସେ ପୁଷ୍ପ, ଲତା, ପକ୍ଷୀ ପ୍ରଭୃତିଙ୍କ ଉପରେ ଅନେକଗୁଡ଼ିଏ କବିତା ଲେଖିଥିଲେ । ସେଥିରୁ ଅନେକ ତାଙ୍କର 'ଅବସରବାସରେ' ନାମରେ କବିତା ସଂକଳନରେ ପ୍ରକାଶିତ ହୋଇଛି । ତା'ପରେ ବାଲେଶ୍ୱରରେ ରହିଥିବାବେଳେ ୧୯୦୯ ମସିହାରୁ ୧୯୧୨ ମସିହା ମଧ୍ୟରେ ତାଙ୍କର 'ବୌଦ୍ଧାବତାର', 'ପୂଜାଫୁଲ' ଓ 'ଧୂଳି' ପ୍ରଭୃତି କାବ୍ୟ ପ୍ରକାଶିତ ହୋଇଥିଲା । ଏହିସବୁ କାବ୍ୟ-କବିତା ତାଙ୍କର ଓଡ଼ିଆ ସାହିତ୍ୟକୁ ଅମୂଲ୍ୟ ଅବଦାନ ।

ମାତ୍ର ଓଡ଼ିଆ ସାହିତ୍ୟକୁ ତାଙ୍କର ଶ୍ରେଷ୍ଠ ଅବଦାନ ଗଳ୍ପ ଓ ଉପନ୍ୟାସ ଲେଖା ସେ ଶେଷ ଜୀବନରେ ଆରମ୍ଭ କରିଥିଲେ । ଓଡ଼ିଆ ସାହିତ୍ୟରେ ଗଳ୍ପ ଉପନ୍ୟାସ ରଚନାର ସେ ଆଦିସ୍ରଷ୍ଟା । ବାଲେଶ୍ୱରରେ ରହିଥିବାବେଳେ ଏବଂ ଗଡ଼ଜାତ ରାଜ୍ୟମାନଙ୍କରେ ଚାକିରି କରୁଥିବାବେଳେ ସେ ଓଡ଼ିଶାର ସବୁଶ୍ରେଣୀର ଲୋକମାନଙ୍କ ସମ୍ପର୍କରେ ଆସିଥିଲେ ଏବଂ ସେମାନଙ୍କର ଚାଲିଚଳଣ, ସୁଖଦୁଃଖ, ଜୀବନଯାପନ ପ୍ରଣାଳୀ ଟିକିନିଖି ଭାବରେ ନିରୀକ୍ଷଣ କରିଥିଲେ । ସେ ସମାଜରେ ଯାହା ଦେଖିଥିଲେ ଏବଂ ନିଜ ଜୀବନରେ ଯେଉଁ ସୁଖଦୁଃଖ ଅନୁଭବ କରିଥିଲେ ସେ ସବୁ ତାଙ୍କର ଗଳ୍ପ ଉପନ୍ୟାସ ଓ କାବ୍ୟ-କବିତାରେ ପ୍ରକାଶ କରିଥିଲେ । କାବ୍ୟ, କବିତା, ଗଳ୍ପ ଓ ଉପନ୍ୟାସ ପାଇଁ ତାଙ୍କୁ ରାଧାନାଥଙ୍କ ପରି ବିଦେଶୀ ବିଷୟବସ୍ତୁ ଖୋଜିବାକୁ ପଡ଼ିନାହିଁ । ନିଜ ଜୀବନରେ ଯାହା ଦେଖିଛନ୍ତି ବା ଅନୁଭବ କରିଛନ୍ତି, ଗାଁରେ କିମ୍ବା ସହରରେ ଲୋକମାନେ ଯେଉଁ ଭାଷାରେ କଥାବାର୍ତ୍ତା ହୁଅନ୍ତି, ସେହି ଭାଷାରେ ଲେଖିଯାଇଛନ୍ତି । କାବ୍ୟ-କବିତାରେ ତାଙ୍କର ମନର ବେଦନା ବର୍ଣ୍ଣନା ଏବଂ ଗଳ୍ପ ଉପନ୍ୟାସମାନଙ୍କରେ ସମସାମୟିକ ସାମାଜିକ ଚିତ୍ର ଓ ହାସ୍ୟରସର ବର୍ଣ୍ଣନା ଯୋଗୁଁ ତାଙ୍କ କାବ୍ୟ, କବିତା, ଗଳ୍ପ ଓ ଉପନ୍ୟାସ ସାଧାରଣ ଲୋକମାନଙ୍କଦ୍ୱାରା ଅତ୍ୟନ୍ତ ଆଦୃତ ହୋଇଥିଲା; କାରଣ ସେଥିରେ ସାଧାରଣ ଲୋକମାନଙ୍କର ନିଜର ଅନୁଭୂତି ଓ ମନର ଭାବ ମଧ୍ୟ ନିହିତ ଥିଲା । ତାଙ୍କର କାବ୍ୟ କବିତା, ଗଳ୍ପ ଓ ଉପନ୍ୟାସମାନଙ୍କରେ ସେ ଉତ୍କଳର ନଦୀ, ପର୍ବତ, ବନ, ଗ୍ରାମ ଓ ସହର ପରିବେଶ ମଧ୍ୟରେ ସେସମୟର ପୂର୍ଣ୍ଣ ସମାଜଚିତ୍ର ଦେଇଛନ୍ତି । ତାଙ୍କ ଗଳ୍ପ, ଉପନ୍ୟାସମାନଙ୍କରେ ମହାଜନ, ଜମିଦାରଙ୍କଠାରୁ ଆରମ୍ଭକରି ଅତି ଦରିଦ୍ର ବ୍ୟକ୍ତି,

ବ୍ରାହ୍ମଣଠାରୁ ତନ୍ତୀ, ବାଗିକ, ହରିଜନ ପର୍ଯ୍ୟନ୍ତ ବିଭିନ୍ନ ଜାତି– ସବୁ ଶ୍ରେଣୀର ପରିବାରମାନଙ୍କର ଜୀବନଯାପନ ପ୍ରଣାଳୀ, ସାମାଜିକ ଜୀବନରେ ଦୈନନ୍ଦିନ ସମସ୍ୟାର ଚିତ୍ର ଦିଆଯାଇଛି। ତାଙ୍କ ଗଳ୍ପ ଉପନ୍ୟାସର ନାୟକ-ନାୟିକା ସାଧାରଣ ଗାଉଁଲି ପରିବାରମାନଙ୍କରୁ ଉଦ୍‌ଭବ ହୋଇଛନ୍ତି।

ତାଙ୍କର ଚାରିଗୋଟି ପ୍ରଧାନ ଉପନ୍ୟାସ ହେଲା, 'ଛ'ମାଣ ଆଠଗୁଣ୍ଠ', 'ମାମୁଁ', 'ଲଛମା' ଏବଂ 'ପ୍ରାୟଶ୍ଚିତ୍ତ'। ସେଥିମଧ୍ୟରୁ 'ଛ'ମାଣ ଆଠଗୁଣ୍ଠ', 'ମାମୁଁ' ଏବଂ 'ପ୍ରାୟଶ୍ଚିତ୍ତ' ସାମାଜିକ ଉପନ୍ୟାସ ଏବଂ 'ଲଛମା' ଐତିହାସିକ ଉପନ୍ୟାସ। 'ପୁନର୍ମୂଷିକଭବ' ମଧ୍ୟ ତାଙ୍କର ଆଉ ଗୋଟିଏ ସାମାଜିକ ଉପନ୍ୟାସ। ଏହା ବ୍ୟତୀତ ସେ ବହୁ ଛୋଟ ଓ ବଡ଼ ଗଳ୍ପ ସେସମୟର ପତ୍ରପତ୍ରିକାମାନଙ୍କରେ ପ୍ରକାଶ କରିଥିଲେ। ଅନେକଗୁଡ଼ିଏ ବିଖ୍ୟାତ ଗଳ୍ପ ସହିତ ତାଙ୍କର 'ଗଳ୍ପସ୍ୱଳ୍ପ' ବହି ୧୯୧୨ ମସିହାରେ ପ୍ରକାଶିତ ହୋଇଥିଲା। ଅନ୍ୟ ଗଦ୍ୟରଚନା ମଧ୍ୟରେ ତାଙ୍କର 'ଆତ୍ମଜୀବନଚରିତ' ବହି ତାଙ୍କର ମୃତ୍ୟୁର ନଅବର୍ଷ ପରେ ୧୯୨୭ ମସିହାରେ ପ୍ରକାଶିତ ହୋଇଥିଲା।

ତାଙ୍କର ଚାରିଗୋଟି ସାମାଜିକ ଉପନ୍ୟାସ ମଧ୍ୟରୁ 'ଛ'ମାଣ ଆଠଗୁଣ୍ଠ'ରେ ଓଡ଼ିଶାର ସେ ସମୟର ସମାଜରେ ମହାଜନମାନଙ୍କର କାରବାର, ସୂର୍ଯ୍ୟାସ୍ତ ଆଇନ ଅନୁସାରେ କଲିକତାର ବଙ୍ଗାଳୀମାନଙ୍କର ଓଡ଼ିଶାରେ ଜମିଦାରିମାନ କ୍ରୟ, ସହରର ଓକିଲମାନଙ୍କ ସହାୟତାରେ ଗାଁମାନଙ୍କରେ ଗରିବ ଲୋକମାନଙ୍କର ଜମିବାଡ଼ି ମହାଜନମାନଙ୍କୁ ହସ୍ତାନ୍ତର ଓ ମହାଜନମାନଙ୍କର କଳୁଷିତ ଜୀବନ ପ୍ରଭୃତି ଉନବିଂଶ ଶତାବ୍ଦୀର ପ୍ରଥମଭାଗରେ ଓଡ଼ିଶାର ସାମାଜିକ ଚିତ୍ର ବିଶଦ ଭାବରେ ବର୍ଣ୍ଣିତ ହୋଇଛି। 'ଛ'ମାଣ ଆଠଗୁଣ୍ଠ' ପ୍ରଥମେ ଗଳ୍ପ ଆକାରରେ କ୍ରମାଗତ ଭାବରେ ଉତ୍କଳ-ସାହିତ୍ୟ ପତ୍ରିକାରେ ପ୍ରକାଶିତ ହୋଇଥିଲା। ପରେ ୧୯୦୨ ମସିହାରେ ଗୋଟିଏ ପୂର୍ଣ୍ଣାଙ୍ଗ ଉପନ୍ୟାସରୂପେ ପ୍ରକାଶ ପାଇଲା।

'ମାମୁଁ' ଉପନ୍ୟାସରେ ମଧ୍ୟ ଉନବିଂଶ ଶତାବ୍ଦୀର ମଧ୍ୟଭାଗରେ ଇଂରାଜୀ ସ୍କୁଲମାନଙ୍କରେ ଅଳ୍ପ ପାଠ ପଢ଼ି ସରକାରୀ କଚେରିରେ ତଳସ୍ତରରେ ଅମଲା ହୋଇଥିବା ବ୍ୟକ୍ତିମାନେ କିପରି ଗାଁମାନଙ୍କରେ ସେମାନଙ୍କର ବଂଶମର୍ଯ୍ୟାଦାରକ୍ଷା ପାଇଁ ସେମାନଙ୍କ ବନ୍ଧୁବାନ୍ଧବମାନଙ୍କୁ ପ୍ରଶ୍ରୟ ଦେଇ ନାନାପ୍ରକାର ଜାଲିଆତି ଏବଂ କୁକର୍ମ କରୁଥିଲେ, ତାହାର ଚିତ୍ର ଦିଆଯାଇଛି।

'ପ୍ରାୟଶ୍ଚିତ୍ତ' ତାଙ୍କର ଶେଷ ସାମାଜିକ ଉପନ୍ୟାସ। ସେଥିରେ ଉନବିଂଶ ଶତାବ୍ଦୀର ଶେଷ ଓ ବିଂଶ ଶତାବ୍ଦୀ ଆରମ୍ଭରେ କଲେଜରେ ପଢ଼ିଥିବା ଯୁବକମାନଙ୍କର କିପରି ସାମାଜିକ ମୂଲ୍ୟବୋଧରେ ପରିବର୍ତ୍ତନ ହେଉଥିଲା, ସେମାନଙ୍କର ଜାତିଆଣ ଶୃଙ୍ଖଳାକୁ ଅବମାନନା, ସ୍ୱଇଚ୍ଛାରେ ବିବାହ ପାଇଁ କନ୍ୟା ସ୍ଥିରକରିବା, ମଦ୍ୟପାନ

ପ୍ରଭୃତି କୁଅଭ୍ୟାସ ପ୍ରତି ଆକୃଷ୍ଟ ହେବା ପ୍ରଭୃତି ବିଷୟ ବର୍ଣ୍ଣିତ ହୋଇଛି। ଏ ବହି ୧୯୧୫ ମସିହାରେ ପ୍ରକାଶିତ ହୋଇଥିଲା।

'ପୁନର୍ମୂଷିକଭବ'ରେ ନିମକମାହାଲର ଦୁର୍ନୀତି ବିଷୟରେ ତାଙ୍କର ଅଭିଜ୍ଞତା, ତତ୍‌କାଳୀନ ସମାଜରେ ବିଭିନ୍ନ ଜାତିର ଲୋକମାନଙ୍କର ଜାତିଆଣ ମନୋଭାବ ଏବଂ ଜାତି-ସ୍ୱାଭିମାନ ପ୍ରଭୃତି ବିଷୟ ବର୍ଣ୍ଣିତ ହୋଇଛି।

'ଲଛମା' ତାଙ୍କର ଏକମାତ୍ର ଐତିହାସିକ ଉପନ୍ୟାସ। ସେଥିରେ ଇଂରେଜମାନେ ଓଡ଼ିଶା ଅଧିକାର କରିବାର ପଚାଶ ବର୍ଷ ପୂର୍ବର ସାମାଜିକ ଅବସ୍ଥା, ଓଡ଼ିଶାର ଗ୍ରାମମାନଙ୍କରେ ମରହଟ୍ଟା ବର୍ଗୀମାନଙ୍କର ଲୁଣ୍ଠନ ଓ ଅତ୍ୟାଚାର, ମରହଟ୍ଟା ଓ ବଙ୍ଗଳାର ମୁସଲମାନ ନବାବଙ୍କ ସୈନ୍ୟମାନଙ୍କ ମଧ୍ୟରେ ଯୁଦ୍ଧ, ସେଥିରେ ଓଡ଼ିଶାର ଖଣ୍ଡାୟତ ପରିବାରମାନଙ୍କର ଭୂମିକା ପ୍ରଭୃତି ବର୍ଣ୍ଣନା କରାଯାଇଛି।

ତାଙ୍କର ସମସ୍ତ ଗଳ୍ପରେ ଉନବିଂଶ ଶତାବ୍ଦୀରେ ଓଡ଼ିଶାର ପଲ୍ଲୀ ଓ ସହରମାନଙ୍କରେ ବିଭିନ୍ନ ଶ୍ରେଣୀର ଲୋକମାନଙ୍କର ଜୀବନଯାପନ ପ୍ରଣାଳୀ, ଉଭୟ ଅଞ୍ଚଳରେ କେତେକ ଲୋକଙ୍କର ଆଦର୍ଶ ବ୍ୟବହାର ଏବଂ ଅନ୍ୟ ଲୋକମାନଙ୍କର ନିନ୍ଦନୀୟ ବ୍ୟବହାର, ସାଧାରଣ ଲୋକମାନଙ୍କର ଝିଅମାନଙ୍କୁ ଶିକ୍ଷାଦେବା ବିଷୟରେ ମନୋଭାବ, କଲେଜପଢୁଆ ଜମିଦାର ଘରର ପିଲାମାନଙ୍କର ବ୍ୟବହାର, କଚେରିମାନଙ୍କରେ ଅମଲାମାନଙ୍କ ବ୍ୟବହାର ପ୍ରଭୃତି ସମାଜର ବାସ୍ତବ ଚିତ୍ର ଦିଆଯାଇଛି। ଉଭୟ ଗଳ୍ପ ଓ ଉପନ୍ୟାସମାନଙ୍କରେ ହାସ୍ୟରସପୂର୍ଣ୍ଣ ବର୍ଣ୍ଣନା ସେଗୁଡ଼ିକୁ ଅଧିକ ଆକର୍ଷଣୀୟ କରିଛି। ବାଲେଶ୍ୱରରେ ବୋଧଦାୟିନୀ ପତ୍ରିକା ସମ୍ପାଦନା କରୁଥିବାବେଳେ ସେ 'ଲଛମନିଆ' ନାମରେ ଗୋଟିଏ ଗଳ୍ପ ଲେଖିଥିଲେ। ତାହା ଓଡ଼ିଆ ସାହିତ୍ୟରେ ପ୍ରଥମ ଗଳ୍ପ ବୋଲି ସେ ନିଜେ କହିଛନ୍ତି। ତାହା ପରେ ପ୍ରାୟ ପଚିଶ ବର୍ଷ, ଗଡ଼ଜାତ ରାଜ୍ୟମାନଙ୍କରେ ଚାକିରି କଲାବେଳେ, ସେ କୌଣସି ଗଳ୍ପ ଲେଖିନଥିଲେ। ଅବସର ଗ୍ରହଣ ପରେ କଟକରେ ବିଶ୍ୱନାଥ କରଙ୍କ ଅନୁରୋଧରେ ସେ ଉତ୍କଳସାହିତ୍ୟ ପତ୍ରିକାପାଇଁ ଗଳ୍ପ ଲେଖିବାକୁ ଆରମ୍ଭକଲେ। ସେହି ଗଳ୍ପମାନଙ୍କରୁ ତାଙ୍କର 'ଛ'ମାଣ ଆଠଗୁଣ୍ଠ' ଓ 'ଲଛମା' ଉପନ୍ୟାସମାନ ଜନ୍ମଲାଭକଲା କେତେକ ଗଳ୍ପ 'ଗଳ୍ପସ୍ୱଳ୍ପ' ବହିରେ ପ୍ରକାଶିତ ହେଲା ଏବଂ ଅନ୍ୟ ଗଳ୍ପଗୁଡ଼ିକ ତତ୍‌କାଳୀନ ପତ୍ରପତ୍ରିକାମାନଙ୍କରେ ପ୍ରକାଶିତ ହୋଇଥିଲା। ବାଲେଶ୍ୱରରେ ଅବସର ଗ୍ରହଣକରି ରହିଥିବାବେଳେ ସେ ଗଳ୍ପ ଉପନ୍ୟାସ ଲେଖାକୁ ପ୍ରାଧାନ୍ୟ ଦେଉଥିଲେ।

ଫକୀରମୋହନ ସ୍କୁଲ-କଲେଜରେ ଆଧୁନିକ ଶିକ୍ଷା ପାଇନଥିଲେ ସୁଦ୍ଧା ତାଙ୍କର ଚିନ୍ତାଧାରା ଓ ମନୋବୃତ୍ତି ସଂପୂର୍ଣ୍ଣ ଆଧୁନିକ ଥିଲା। ସେ ସମାଜର କୁସଂସ୍କାର ବିରୁଦ୍ଧରେ ସଂଗ୍ରାମ କରୁଥିଲେ, ଏକେଶ୍ୱରବାଦରେ ବିଶ୍ୱାସ କରୁଥିଲେ

ଏବଂ ଭଣ୍ଡ ସନ୍ନ୍ୟାସୀମାନଙ୍କୁ ଘୃଣା ଓ ଉପହାସ କରୁଥିଲେ। ଗଡ଼ଜାତ ରାଜ୍ୟମାନଙ୍କରେ ଚାକିରି କରୁଥିବାବେଳେ ସେ ଶିକ୍ଷା, ଉନ୍ନତ କୃଷିପ୍ରଣାଳୀ ଓ ଜଳସେଚନର ପ୍ରସାର ଏବଂ ଗମନାଗମନର ସୁବିଧା ଉପରେ ଗୁରୁତ୍ୱ ଦେଉଥିଲେ। ସମାଜରେ ନାରୀଶିକ୍ଷା ପ୍ରସାରର ସେ ପକ୍ଷପାତୀ ଥିଲେ। ଦେଶପ୍ରେମ, ନିଜ ମାତୃଭାଷାର ରକ୍ଷା ଓ ଉନ୍ନତି, ନୂତନ ଓଡ଼ିଶା ପ୍ରଦେଶ ଗଠନ ଏବଂ ସବୁ ବିଷୟରେ ଓଡ଼ିଆମାନଙ୍କର ସ୍ୱାର୍ଥରକ୍ଷା ଯୁବକ ଅବସ୍ଥାରୁ ଶେଷ ଜୀବନ ପର୍ଯ୍ୟନ୍ତ ତାଙ୍କ ଜୀବନର ବ୍ରତ ଥିଲା। ସେ ଓଡ଼ିଆ ସାହିତ୍ୟରେ ଏକ ନୂତନ ଯୁଗର ପ୍ରବର୍ତ୍ତନ ଏବଂ ଓଡ଼ିଆମାନଙ୍କ ମଧ୍ୟରେ ଏକ ନବଜାଗରଣ ସୃଷ୍ଟି କରିପାରିଥିଲେ।

□ □ □

**ସହାୟକ ପୁସ୍ତକ :**

୧। ଆତ୍ମଜୀବନଚରିତ – ଫକୀରମୋହନ ସେନାପତି।

୨। Fakir Mohan Senapati – Mayadhar Mansinha – Makers of Indian Literature – Central Sahitya Akademi।

# ଚତୁର୍ଥ ପରିଚ୍ଛେଦ

## ଉତ୍କଳଗୌରବ ମଧୁସୂଦନ ଦାସ

**ବାଲ୍ୟଜୀବନ ଓ ଶିକ୍ଷା –**

ଓଡ଼ିଶାର ଅନ୍ଧକାର ଯୁଗର ଶେଷ ପର୍ଯ୍ୟାୟ ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଯେଉଁ କେତେକ ଯୋଗଜନ୍ମା ମନୀଷୀ ଓଡ଼ିଶାରେ ଜନ୍ମ ହୋଇ ଜାତିର ପୁନରୁଦ୍ଧାର ଏବଂ ମାତୃଭୂମି ଓ ମାତୃଭାଷାର ରକ୍ଷାପାଇଁ ସଂଗ୍ରାମ କରିଥିଲେ, ସେମାନଙ୍କ ମଧ୍ୟରେ ଉତ୍କଳଗୌରବ ମଧୁସୂଦନ ଦାସ ସବୁଠାରୁ ଅଧିକ ଶିକ୍ଷିତ, ଅଧିକ ତୀକ୍ଷ୍ଣବୁଦ୍ଧିସଂପନ୍ନ ଏବଂ ଅଧିକ କର୍ମତତ୍ପର ଥିଲେ। ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଏବଂ ବିଂଶଶତାବ୍ଦୀର ପ୍ରଥମ ଭାଗରେ ପ୍ରଧାନତଃ ତାଙ୍କରି ଉଦ୍ୟମ ଓ ନେତୃତ୍ୱରେ ଓଡ଼ିଆମାନେ ସଂଗଠିତ ହୋଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଏବଂ ରାଜନୈତିକ, ସାଂସ୍କୃତିକ ଓ ଅର୍ଥନୈତିକ କ୍ଷେତ୍ରରେ ଓଡ଼ିଆଜାତିର ପୁନର୍ଜାଗରଣ ପାଇଁ ସଂଗ୍ରାମ କରିଥିଲେ ଏବଂ ତାଙ୍କ ମୃତ୍ୟୁର ଏକବର୍ଷ ପୂର୍ବରୁ ବ୍ରିଟିଶ୍ ସରକାର ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିବା ସିଦ୍ଧାନ୍ତ ଘୋଷଣା କରିଥିଲେ।

ମଧୁବାବୁ ୧୮୪୮ ମସିହା ଅପ୍ରେଲ ମାସ ୨୮ ତାରିଖରେ, କଟକ ଜିଲ୍ଲାର ସତ୍ୟଭାମାପୁରର ଚୌଧୁରୀ ପରିବାରରେ ଜନ୍ମଗ୍ରହଣ କରିଥିଲେ। ତାଙ୍କ ପିତାଙ୍କ ନାମ ଚୌଧୁରୀ ରଘୁନାଥ ଦାସ ଏବଂ ମାତାଙ୍କ ନାମ ପାର୍ବତୀ ଦେଈ। କଥିତ ଅଛି ଯେ ଓଡ଼ିଶାର ରାଜା ପୁରୁଷୋତ୍ତମ ଦେବ ମହାନଦୀ ଏବଂ ବିରୂପା ନଦୀ ମଧ୍ୟରେ ଥିବା ଏ ଅଞ୍ଚଳରେ ଜନବସତି ବସାଇଥିଲେ। ତାଙ୍କର ଜଣେ ରାଣୀ ସତ୍ୟଭାମା ଦେଈ ସତ୍ୟଭାମାପୁର ଗ୍ରାମ ବସାଇଥିଲେ ଏବଂ ସେଥିରେ ଦଧିବାମନ ମନ୍ଦିର ପ୍ରତିଷ୍ଠା କରିଥିଲେ। ସେହି କାଳରୁ ସେ ଅଞ୍ଚଳରେ ଖଣ୍ଡାୟତ ଚୌପାଢ଼ିମାନ ପ୍ରତିଷ୍ଠିତ ହୋଇଥିଲା। ମଧୁବାବୁଙ୍କ ସାତପୁରୁଷ ପୂର୍ବ ମଣିମଲ୍ଲ ପ୍ରାୟ ୧୬୦୯ ମସିହା ବେଳକୁ ଖୋର୍ଦ୍ଧା ଅଞ୍ଚଳରୁ ଆସି ସତ୍ୟଭମାପୁରଠାରେ ବାସକରିଥିଲେ। ସେହି ସମୟରୁ ସତ୍ୟଭାମାପୁର ଚୌଧୁରୀଙ୍କ

ଚୌପାଢ଼ି ଆରମ୍ଭ ହୋଇଥିଲା । ଚୌଧୁରୀ ପରିବାର ଟୋଡ଼ରମଲ୍ଲଙ୍କ ବନ୍ଦୋବସ୍ତ ସମୟରୁ ସେ ଅଞ୍ଚଳରେ ଜମିଦାର ଥିଲେ । ୧୮୦୩ ମସିହାରେ ଇଂରେଜମାନେ ମରହଟ୍ଟାମାନଙ୍କଠାରୁ ଓଡ଼ିଶା ଅଧିକାର କଲାବେଳକୁ ବଙ୍ଗଦେଶରେ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରଥା ପ୍ରଚଳିତ ହୋଇସାରିଥିଲା । ୧୮୦୫ ମସିହା ବେଳକୁ ସେମାନେ ନିୟମିତ ଖଜଣା ଆଦାୟ ନିମିତ୍ତ ଓଡ଼ିଶାରେ ଚିରସ୍ଥାୟୀ ବନ୍ଦୋବସ୍ତ କରିବାପାଇଁ ଉଦ୍ୟମ କଲେ । 'ସୂର୍ଯ୍ୟାସ୍ତ ଆଇନ' ଅନୁସାରେ ନିରୂପିତ ଦିବସର ସୂର୍ଯ୍ୟାସ୍ତ ପୂର୍ବରୁ ଖଜଣା ଦେଇନପାରିବାରୁ ଓଡ଼ିଶାର ବହୁ ଜମିଦାରି କଲିକତାରେ ନିଲାମ ହୋଇଗଲା । ସେତେବେଳେ ଓଡ଼ିଶାରୁ କଲିକତା ଯିବାପାଇଁ ରେଳ କିମ୍ୱା ସୁଗମ ରାସ୍ତା ନଥିଲା । ଓଡ଼ିଶାର ବହୁ ଜମିଦାର ନିରୂପିତ ସମୟରେ ଖଜଣା ଦେଇ ନପାରିବାରୁ କଲିକତାର ଦଲାଲ୍‌ମାନେ ସେମାନଙ୍କର ଜମିଦାରି ନିଲାମରେ କିଣିନେଲେ । ୧୮୨୧ ମସିହାରେ, ମଧୁବାବୁଙ୍କ ପ୍ରପିତାମହ ଚୌଧୁରୀ ସୁଦର୍ଶନ ଦାସଙ୍କ ସମୟରେ, ସତ୍ୟଭାମାପୁର ଚୌଧୁରୀଙ୍କ ଜମିଦାରିର କେତେକ ଅଂଶ କଲିକତାରେ ନିଲାମ ହୋଇଗଲା ଏବଂ ନିଲାମରେ କିଣିଥିବା ବ୍ୟକ୍ତି ତାହା ଦଖଲ କରିଥିଲେ । ସୁଦର୍ଶନ ଦାସ ତାହାର ପ୍ରତିରୋଧ କରି ପାରିଲେ ନାହିଁ କିମ୍ୱା କଲିକତା ଯାଇ ଅପିଲ୍ କରି ପାରିଲେ ନାହିଁ । ତାହାର କିଛି ଦିନ ପରେ ଦୁଃଖରେ ରୋଗରେ ପଡ଼ି ସେ ମୃତ୍ୟୁବରଣ କଲେ । ତାଙ୍କ ପତ୍ନୀ ମଧୁବାବୁଙ୍କ ପ୍ରପିତାମହୀ, କୃଷ୍ଣାଦେଈ ସତୀ ହୋଇ ଜୀବନ ବିସର୍ଜନ କରିଥିଲେ ।

ଏହି ଘଟଣା ମଧୁବାବୁଙ୍କ ଜନ୍ମର ୨୭ ବର୍ଷ ପୂର୍ବରୁ ଘଟିଥିଲା । ମାତ୍ର ତାଙ୍କ ପିଲାବେଳେ ସେ ତାଙ୍କର ପିତାମହୀଙ୍କଠାରୁ ଏହି ସତୀହେବା କାହାଣୀ ବହୁବାର ଶୁଣିଥିଲେ । ସେହି କାହାଣୀ ତାଙ୍କ ଚରିତ୍ରକୁ ଜୀବନଯାକ ପ୍ରଭାବିତ କରିଥିଲା ଏବଂ ସର୍ବଦା ସେ ତାଙ୍କ ଧମନୀରେ ସତୀରକ୍ତ ପ୍ରବାହିତ ହେଉଛି ବୋଲି ଗର୍ବକରୁଥିଲେ । ସେ ନିଜେ ଲେଖିଛନ୍ତି, "ସତୀ ବିସର୍ଜନ ବେଳେ ପିତାମହୀଙ୍କ ପ୍ରାଣରେ ଯେଉଁ ସ୍ପନ୍ଦନ ସୃଷ୍ଟିକରିଥିଲା, ସେ ଘଟଣାର ବର୍ଣ୍ଣନା ଶୁଣିଲାବେଳେ ତାହାର ପ୍ରତିଧ୍ୱନି ମୋର ପ୍ରାଣରେ ମଧ୍ୟ ସ୍ପନ୍ଦିତ ହୋଇ ଉଠୁଥିଲା । ସେ ଘଟଣା ଏବେ ସୁଦ୍ଧା ମୋ ସ୍ମୃତିରେ ଉଜ୍ଜୀବିତ ରହିଅଛି ।" ଏ ଘଟଣା ମଧୁବାବୁଙ୍କ ଜୀବନରେ ଆଦର୍ଶ, ନିଷ୍ଠା, ଅନମନୀୟତା ଓ ଆତ୍ମୋତ୍ସର୍ଗର ସଂକଳ୍ପ ଆଣିଦେଇଥିଲା । ତାଙ୍କର ପରିଣତ ବୟସରେ ସୁଦ୍ଧା, କୌଣସି ବ୍ୟକ୍ତିଗତ କ୍ଷତି କିମ୍ୱା ବିପଦର ଆଶଙ୍କାରେ କର୍ତ୍ତବ୍ୟପଥରୁ ବିଚ୍ୟୁତ ହୋଇ ସତୀରକ୍ତର ଐତିହ୍ୟ କଳଙ୍କିତ ନକରିବା କର୍ତ୍ତବ୍ୟ ବୋଲି ସେ ବିଚାରୁଥିଲେ । ସତୀରକ୍ତର ଉଦ୍‌ବୋଧନ ତାଙ୍କୁ ସ୍ୱାଭିମାନୀ କରିଥିଲା ଏବଂ 'ସତୀସ୍ମୃତି ହେତୁ ତାଙ୍କର ଜନ୍ମସ୍ଥାନକୁ ସେ ପବିତ୍ରତମ ତୀର୍ଥଭୂମି ବୋଲି ମନେକରୁଥିଲେ । ସବୁ ସଂକଟବେଳେ

ସେ ସତୀଗନ୍ତର ଉଦ୍‌ବୋଧନ ଶୁଣିଛନ୍ତି ବୋଲି ତାଙ୍କ ଅସଂପୂର୍ଣ୍ଣ ଆତ୍ମ-ଚରିତରେ ଲେଖିଛନ୍ତି ।

ଲାଂଛିତା ଉତ୍କଳ ଜନନୀର ମାତୃରୂପ ମଧ୍ୟ ସେ ସତୀର ଚିତାନଳ ମଧ୍ୟରେ ଦେଖିପାରିଥିଲେ ଏବଂ ସେ ଚିତାନଳ ମଧ୍ୟରେ ସ୍ୱାର୍ଥକୁ ଆହୁତି ଦେବାପାଇଁ ଆହ୍ୱାନ କରିଥିଲେ –

"ପତିବ୍ରତା ସତୀ ପତିର ମିଳନ
ଲଭିବା ଆଶାରେ ପୋଡ଼େ
ଜାତିର ମିଳନ ଲଭିବା ଆଶାରେ
ମୋର ପ୍ରାଣ କିଆଁ ଡରେ ?
ଜାତିପ୍ରେମ-ବହ୍ନି ପ୍ରଜ୍ୱଳିତ କର
ସ୍ୱାର୍ଥକୁ ଦିଅ ଆହୁତି
ସାର୍ଥମେଧ-ଯଜ୍ଞେ ଚାରିଆଡ଼େ ନାଚ
ଛାତିକି ମିଶାଇ ଛାତି ।
ଭୂମିକମ୍ପ ହେବ ଧରଣୀ ଫାଟିବ
ଉଠିବେ ସହସ୍ରଭୁଜା
ସେହି ତୋର ମାତା ସେହି ତୋର ଭ୍ରାତା
କର ସେହି ପାଦ ପୂଜା ।"

ଏହି ପରମ୍ପରା ହେତୁ ତାଙ୍କଠାରେ ଉତ୍କଳର ପୂର୍ବକୀର୍ତ୍ତି ଓ ସୌଭାଗ୍ୟ ପ୍ରତି ଗଭୀର ଶ୍ରଦ୍ଧା, ବର୍ତ୍ତମାନ ଓ ଭବିଷ୍ୟତ ପ୍ରତି ଗଭୀର ସଚ୍ଚେତନତା ଜାଗ୍ରତ ହୋଇଥିଲା ।

ସୁରେନ୍ଦ୍ର ମହାନ୍ତି ତାଙ୍କ 'ଶତାବ୍ଦୀର ସୂର୍ଯ୍ୟ' ବହିରେ ଲେଖିଛନ୍ତି ଯେ, ମଧୁବାବୁଙ୍କ ପିଲାକାଳକୁ ଚୌଧୁରୀ ପରିବାରର ବିଭବ ନଥିଲା । ମାତ୍ର ମଉଡ଼ମରା ସାତଶେଣିଆ ଖଞ୍ଜାଘର, ଉଞ୍ଚା ପଥର ପିଣ୍ଡା, ପଥର ପାହାଚ, ଘୋଡ଼ାଶାଳ, ଧାନ ମରେଇ, ରସକୁଣ୍ଡ ପୁଷ୍କରିଣୀ, କନକଦଣ୍ଡା ଦୀଘି, ନଡ଼ିଆମାଳ, ଆମ୍ବତୋଟା ପ୍ରଭୃତି ଥିଲା । ନିଲାମ, ବନ୍ଧକ ଓ ବିକ୍ରିରେ ବିସ୍ତୀର୍ଣ୍ଣ ଭୂସମ୍ପତ୍ତି ହାତଛଡ଼ା ହୋଇଯିବା ପରେ, ଆଖପାଖ ଗାଁରେ ଯେତିକି ନିଜ ଚାଷଜମି ଥିଲା ତାହା ପରିବାର ପ୍ରତିପୋଷଣର ଏକମାତ୍ର ସମ୍ବଳ ଥିଲା । ମାତ୍ର ବଂଶ-ମର୍ଯ୍ୟାଦାକୁ ଚାହିଁ ଚଳିବାକୁ ତାହା ପର୍ଯ୍ୟାପ୍ତ ନଥିଲା । ସେଥିଯୋଗୁଁ ମଧୁବାବୁଙ୍କ ପିତା ଚୌଧୁରୀ ରଘୁନାଥ ଦାସ କଟକର ଜଜ ଅଦାଲତରେ ଓକିଲାତି ଆରମ୍ଭ କରିଥିଲେ ।

ମଧୁବାବୁଙ୍କ ଜନ୍ମବେଳେ ଏକୋଶିଆ ଉତ୍ସବ ଜମିଦାର ପରିବାରର ସେହିପରି ପୂର୍ବ ଉତ୍ସବମାନଙ୍କ ପରି ଆଡ଼ମ୍ବରପୂର୍ଣ୍ଣ ଭାବରେ ହୋଇଥିଲା । ରଘୁନାଥ ଦାସଙ୍କର

ଅନ୍ୟ ଦୁଇ ଭାଇଙ୍କର କୌଣସି ସନ୍ତାନ ନଥିଲେ। ସେଥିଯୋଗୁଁ ମଧୁସୂଦନଙ୍କ ପ୍ରତି ପରିବାରର ସମସ୍ତଙ୍କର ଅତ୍ୟନ୍ତ ସ୍ନେହ-ଶ୍ରଦ୍ଧା ଥିଲା ଏବଂ ସେ ପରିବାରର ଆଶା-ଭରସାର ପାତ୍ର ହୋଇଥିଲେ। ଶୈଶବରେ ମଧୁସୂଦନଙ୍କ ଶ୍ରଦ୍ଧାନାମ ଗୋବିନ୍ଦବଲ୍ଲଭ ଥିଲା। ତାଙ୍କ ମାତା ପାର୍ବତୀ ଦେଈଙ୍କର ପ୍ରଭାବ ମଧୁବାବୁଙ୍କ ଚରିତ୍ରରେ ପ୍ରତିଫଳିତ ହୋଇଥିଲା। ପାର୍ବତୀ ଦେଈ ବଂଶ-ମର୍ଯ୍ୟାଦାକୁ ଅଗ୍ରାଧିକାର ଦେଉଥିଲେ ଏବଂ ସବୁବେଳେ କହୁଥିଲେ– "ସବୁ ଯାଉ, ମହତ ଥାଉ"। ମଧୁସୂଦନ ସେହିପରି ତାଙ୍କ ଜୀବନରେ ଦେଶ ଓ ଜାତିର ସ୍ୱାଭିମାନ ଓ ମହତ ରଖିବାକୁ ସର୍ବଦା ଯତ୍ନବାନ୍ ଥିଲେ।

ପ୍ରଥମରୁ ରଘୁନାଥ ଦାସ ପୁଅର ସୁଶିକ୍ଷା ପାଇଁ ବିଶେଷ ଯତ୍ନବାନ୍ ଥିଲେ। ମଧୁସୂଦନ ପ୍ରାଥମିକ ଶିକ୍ଷା ଗୃହଶିକ୍ଷକ ମାଗୁଣି ଅବଧାନ ଏବଂ ପାର୍ସି ଶିକ୍ଷା ଜଣେ ଆଖୁଁଜୀଙ୍କଠାରୁ ପାଇଥିଲେ। ତାହାପରେ ୧୮୫୭ ମସିହାରେ ନିକଟବର୍ତ୍ତୀ ଗ୍ରାମ ମହାସିଂହପୁର ଭର୍ଣ୍ଣାକୁଲାର ସ୍କୁଲରେ ପଢ଼ିଥିଲେ। ସେ ସ୍କୁଲରୁ ପାସ୍ କରି ସେ କଟକରେ ଇଂରାଜୀ ପଢ଼ିବାକୁ ଜିଦ୍ କଲେ। ପୁଅକୁ ଏଣ୍ଟ୍ରାନ୍ସ ପର୍ଯ୍ୟନ୍ତ ଇଂରାଜୀ ଶିକ୍ଷା ଦେବା ନିମିତ୍ତ ଅଭିଳାଷ ଥିବା ସତ୍ତ୍ୱେ, ରଘୁନାଥ ଦାସଙ୍କ ମନ ଭିତରେ ଇଂରାଜୀ ଶିକ୍ଷାପ୍ରତି ଗୋଟାଏ ଆଶଙ୍କା ଓ ଭୟ ଥିଲା। ଶେଷରେ ଜଣେ ଜ୍ୟୋତିଷୀଙ୍କ ପରାମର୍ଶରେ ସେ ପୁଅକୁ କଟକରେ ଇଂରାଜୀ ସ୍କୁଲରେ ପଢ଼ାଇବାକୁ ରାଜିହେଲେ। ସେତେବେଳେ କଲିକତାରେ ସ୍କୁଲ-କଲେଜମାନଙ୍କରୁ ପ୍ରତିବର୍ଷ ଶହ ଶହ ଇଂରାଜୀ-ଶିକ୍ଷିତ ବ୍ୟକ୍ତି ବାହାରୁଥିଲେ ମଧ, ଓଡ଼ିଶାର ତିନିଗୋଟି ଇଂରାଜୀ ସ୍କୁଲରେ ମୁଷ୍ଟିମେୟ ଛାତ୍ର ଇଂରାଜୀ ଶିକ୍ଷା ପାଉଥିଲେ। କଲେଜ ମୋଟେ ଓଡ଼ିଶାରେ ନଥିଲା। ଓଡ଼ିଶାର ତିନିଗୋଟି ଇଂରାଜୀ ସ୍କୁଲରେ ଶିକ୍ଷା ପାଉଥିବା ଅଧିକାଂଶ ଛାତ୍ର ବଙ୍ଗାଳୀ ପିଲା ଥିଲେ। କଟକରେ ଇଂରାଜୀ ସ୍କୁଲ ୧୮୪୧ ମସିହାରେ ସ୍ଥାପିତ ହୋଇଥିଲା। ମଧୁସୂଦନ ସେହି ସ୍କୁଲରେ ନାମ ଲେଖାଇଲେ। ସ୍କୁଲ ନାମଲେଖା ଖାତାରେ ତାଙ୍କ ନାମ, ଗୋବିନ୍ଦବଲ୍ଲଭ ପରିବର୍ତ୍ତେ ମଧୁସୂଦନ ବୋଲି ଲେଖାଯାଇଥିଲା।

ସେତେବେଳେ ଓଡ଼ିଶାରେ ବଙ୍ଗାଳୀ ଓଡ଼ିଆ ବିଦ୍ୱେଷ ତେଜିଉଠୁଥିଲା। ବଙ୍ଗାଳୀମାନେ ଓଡ଼ିଶାର ବହୁ ଜମିଦାରି କିଣିନେଇଥିଲେ ଏବଂ ସମସ୍ତ ସରକାରୀ ବିଭାଗରେ ଥିବା ଚାକିରି ଅଧିକାର କରିଥିଲେ। କୋର୍ଟ କଚେରିର ସବୁ ଅମଲା ଏବଂ ଓକିଲ ବଙ୍ଗାଳୀ ଲୋକ ଥିଲେ। ତିନିଗୋଟିଯାକ ଇଂରାଜୀ ସ୍କୁଲରେ ସବୁ ଶିକ୍ଷକ ଓ ଅଧିକାଂଶ ପିଲା ବଙ୍ଗାଳୀ ଥିଲେ।

କଟକ ଇଂରାଜୀ ସ୍କୁଲରେ ପ୍ରବେଶ କରି ମଧୁସୂଦନ ସ୍କୁଲରେ ଏବଂ କଟକର ସାଧାରଣ ଜୀବନରେ ବଙ୍ଗାଳୀମାନଙ୍କର ପ୍ରଭାବ ଦେଖିଲେ। ବଙ୍ଗାଳୀମାନେ

ଓଡ଼ିଆମାନଙ୍କୁ ଘୃଣାକରୁଥିଲେ ଏବଂ ସେମାନଙ୍କ ପ୍ରତି ତାଚ୍ଛଲ୍ୟ ଭାବ ଦେଖାଉଥିଲେ। ବଙ୍ଗାଳୀ ପିଲାମାନେ ସବୁବେଳେ ମଧୁସୂଦନଙ୍କୁ ଲାଞ୍ଛନା ଦେଉଥିଲେ ଏବଂ ବିଦ୍ରୂପ କରୁଥିଲେ। ସେତେବେଳେ ତାଙ୍କ ମୁଣ୍ଡରେ ଗୋଟିଏ ଚୁଟି ଥିଲା ଏବଂ ସେ ତନ୍ତବୁଣା ଲୁଗା ପିନ୍ଧୁଥିଲେ। ଜଣେ ବଙ୍ଗାଳୀ ପିଲା ଦିନେ ତାଙ୍କ ଚୁଟିଟି କାଟିଦେଇଥିଲା। ସ୍କୁଲର ହେଡ୍‌ମାଷ୍ଟର କେବଳ ଏଣ୍ଟ୍ରାନ୍‌ସ ପରୀକ୍ଷା ପାସ୍ କରିଥିଲେ। ମଧୁବାବୁ ତାଙ୍କର ଗୋଟିଏ ଇଂରାଜୀ ଗଦ୍ୟ ବୁଝାଇବା ଭୁଲ ବୋଲି କହିବାରୁ, ସେ ମଧୁବାବୁଙ୍କୁ ସ୍କୁଲରୁ ବିତାଡ଼ିତ କରିଥିଲେ। ପରଦିନ ମଧୁବାବୁ ସ୍କୁଲ କର୍ତ୍ତୃପକ୍ଷ ହାଲେ ସାହେବଙ୍କ ପାଖରେ ଆପତ୍ତି କରିବାରୁ ତାଙ୍କ ନିର୍ଦ୍ଦେଶରେ ହେଡ୍‌ମାଷ୍ଟର ପୁଣି ତାଙ୍କୁ ସ୍କୁଲରେ ପଢ଼ିବାକୁ ଅନୁମତି ଦେଇଥିଲେ। ସେହିଦିନଠାରୁ ତାଙ୍କପ୍ରତି ବଙ୍ଗାଳୀ ପିଲାମାନଙ୍କର ଭାବ ବଦଳିଯାଇଥିଲା। ଏହି ପରିବେଶରେ ସେ ୧୮୬୪ ମସିହାରେ ୧୬ ବର୍ଷ ବୟସରେ ଏଣ୍ଟ୍ରାନ୍‌ସ ପରୀକ୍ଷା ପାସ୍ କରିଥିଲେ।

୧୮୬୫ ମସିହା ନ'ଅଙ୍କ ଦୁର୍ଭିକ୍ଷର ପୂର୍ବବର୍ଷ। ମରୁଡ଼ି ହେତୁ ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କର ସମସ୍ତ ଅଞ୍ଚଳରେ ଫସଲ ନଷ୍ଟ ହୋଇଥିଲା। ମଧୁବାବୁ କଲିକତାରେ ଏଫ୍.ଏ. ପଢ଼ିବା ପାଇଁ ପିତାଙ୍କ ପାଖରେ ଜିଦ୍ କରିଥିଲେ। ମାତ୍ର ତାଙ୍କ ବାପାଙ୍କର ସେଥିପାଇଁ ଧନ ଓ ମନ ନଥିଲା। ସେ କଟକରେ ଅମଲା ଚାକିରି କରିବା ପାଇଁ ମଧୁସୂଦନଙ୍କୁ ବାଧକରି କଟକ କଲେକ୍ଟୋରେଟ୍‌ର ହେଡ୍ କିରାଣି ବିଚିତ୍ରାନନ୍ଦ ଦାସଙ୍କ ପାଖକୁ ପଠାଇଥିଲେ। ବିଚିତ୍ରାନନ୍ଦବାବୁ ମଧୁବାବୁଙ୍କୁ ନିଜ ଚେଷ୍ଟାରେ କଲିକତାରେ ଏଫ.ଏ. ପଢ଼ିବା ପାଇଁ ପରାମର୍ଶ ଦେଇଥିଲେ। ମଧୁବାବୁ ଗାଁକୁ ନ ଫେରି, କିମ୍ବା ଆଉ ବିଚିତ୍ରାନନ୍ଦ ବାବୁଙ୍କୁ କିଛି ନ କହି, ବାଲେଶ୍ୱର ଚାଲିଯାଇ ସେଠାରେ ଗଭର୍ଣ୍ଣମେଣ୍ଟ ସ୍କୁଲରେ ଥାର୍ଡ଼ମାଷ୍ଟର ହୋଇଥିଲେ ଏବଂ ପରେ କିଛି ମାସ ଟ୍ରେଜେରୀଖାନାରେ ଅମଲା ହୋଇଥିଲେ। ୧୮୬୬ ସାଲରେ ବାଲେଶ୍ୱରରେ ସେ ନ'ଅଙ୍କ ଦୁର୍ଭିକ୍ଷର କରାଳ ଅବସ୍ଥା ସ୍ୱଚକ୍ଷୁରେ ଦେଖିଥିଲେ ଏବଂ ସେ ଅବସ୍ଥା ଅଙ୍ଗେ ଲିଭାଇଥିଲେ। ଓଡ଼ିଆମାନଙ୍କର ସରକାରୀ ଶାସନରେ କୌଣସି ସ୍ଥାନ ନଥିବାରୁ, ଲକ୍ଷ ଲକ୍ଷ ଲୋକ କିପରି ଅଣହେଳା ଓ ନିରୁପାୟରେ ମରିଗଲେ, ତାହା ସେ ଅନୁଭବ କରିଥିଲେ। ବାଲେଶ୍ୱରରେ ରହିବା ବର୍ଷେ, ସେ ଓଡ଼ିଆ ବଙ୍ଗାଳୀଙ୍କ ମଧ୍ୟରେ ବିଦ୍ୱେଷ ଏବଂ ବଙ୍ଗାଳୀମାନଙ୍କର ଓଡ଼ିଆଭାଷାକୁ ଲୋପ କରିବାପାଇଁ ଉଦ୍ୟମ ଅନୁଭବ କରିଥିଲେ ଏବଂ ଫକୀରମୋହନ ପ୍ରଭୃତି ଯେଉଁମାନେ ତାର ବିରୋଧ କରୁଥିଲେ, ସେମାନଙ୍କ ସହିତ ସହଯୋଗ କରୁଥିଲେ।

କଟକ ଛାଡ଼ି ବାଲେଶ୍ୱର ଚାଲିଆସିବାରୁ ତାଙ୍କ ବାପା ନିରାଶ ହେଲେ। ବାପା ଚାହୁଁଥିଲେ ଯେ, ପୁଅ ଡେପୁଟି ଚାକିରି କରୁ। ସେତେବେଳେ ମଧ

ନନ୍ଦକିଶୋର ଦାସ ପ୍ରଭୃତି ଯେଉଁ ଅଳ୍ପ କେତେକ ଓଡ଼ିଆ ଏଣ୍ଟ୍ରାନ୍ସ ପରୀକ୍ଷା ପାସ୍ କରିଥିଲେ, ସେମାନେ ଡେପୁଟି କଲେକ୍ଟର ବା ସ୍କୁଲ ବିଭାଗର ଡେପୁଟି ଇନସ୍‌ପେକ୍ଟର ହୋଇଥିଲେ। ମାତ୍ର ଚାକିରିରେ ଆବଦ୍ଧ ରହିବାକୁ ମଧୁବାବୁଙ୍କର ମୋଟେ ଇଚ୍ଛା ନଥିଲା। ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଶିକ୍ଷା ପାଇବା ତାଙ୍କର ଲକ୍ଷ୍ୟ ଥିଲା।

## କଲିକତାରେ ଷୋହଳ ବର୍ଷ –

ସେ ଉଚ୍ଚଶିକ୍ଷା ଲାଭ କରିବା ପାଇଁ ବାଲେଶ୍ୱରରୁ କଲିକତା ପଳାଇଲେ। ଚାନ୍ଦବାଲିଠାରୁ କଲିକତାକୁ ଷ୍ଟିମର୍‌ରେ ଯିବା ସମୟରେ ସେ ଆକସ୍ମିକ ଭାବରେ ପାଦ୍ରି ହେନେରୀ ଗ୍ରୀଫିନ୍‌ଙ୍କୁ ଭେଟିଥିଲେ। ସେତେବେଳେ, ଦରକାର ହେଲେ କଲିକତାରେ ତାଙ୍କୁ ଭେଟିବାକୁ ପାଦ୍ରି ସାହେବ କହିଥିଲେ ଏବଂ ତାଙ୍କର କଲିକତା ଠିକଣା ମଧୁବାବୁଙ୍କୁ ଦେଇଥିଲେ। କଲିକତାର ଜୟଲାଘାଟ ଜେଟିରେ ଷ୍ଟିମର୍‌ରୁ ଓହ୍ଲାଇଲାକ୍ଷଣି ଦଳ ଦଳ ଓଡ଼ିଆ ପାଲିଙ୍କିବାହକ ଲୋକଙ୍କୁ ଦେଖି ମଧୁବାବୁ ମ୍ରିୟମାଣ ହୋଇଥିଲେ। ଅଜଣା ବିରାଟ କଲିକତା ସହରରେ ଓଡ଼ିଆ କୁଲିମାନଙ୍କ ବସ୍ତିରେ ନିଃସ୍ୱ ଭାବରେ କେତେକ ଦିନ କଟାଇ ଏବଂ ହିନ୍ଦୁ କଲେଜରେ ପ୍ରବେଶ କରିବାରେ ବିଫଳ ହୋଇ ଶେଷରେ ସେ ଉକ୍ତ ପାଦ୍ରି ଗ୍ରୀଫିନ୍ ସାହେବଙ୍କୁ ଭେଟିବାକୁ ଯାଇଥିଲେ। ପାଦ୍ରି ସାହେବ କଲିକତାର ଭବାନୀପୁରସ୍ଥିତ ଲଣ୍ଡନ ମିସନ୍ ସୋସାଇଟି କଲେଜରେ ମଧୁସୂଦନଙ୍କର ଶିକ୍ଷା ବ୍ୟବସ୍ଥା କରିବାପାଇଁ କଲେଜର ପ୍ରିନ୍ସପାଲ୍ ଜେ.ପି. ଆଷ୍ଟନ୍‌ଙ୍କ ପାଖକୁ ସୁପାରିସ୍ କଲେ। ତାହା ଫଳରେ ମଧୁସୂଦନ ଏଲ୍.ଏମ୍.ଏସ୍. କଲେଜର ଏଫ.ଏ. କ୍ଲାସରେ ନାମ ଲେଖାଇଲେ ଏବଂ କଲେଜ ହଷ୍ଟେଲ୍ ଓ ଖ୍ରୀଷ୍ଟିଆନ ମିସନାରୀମାନଙ୍କ ଦ୍ୱାରା ପରିଚାଳିତ ମେସ୍‌ରେ ରହିଲେ। କଲେଜରେ ଏବଂ ହଷ୍ଟେଲ୍‌ରେ ତାଙ୍କର ପରିଚୟ ହେଲା 'ମଧୁ ଉଡ଼ିଆ'। ଏହି ଘଟଣା ତାଙ୍କ ଜୀବନର ଗତିପଥ ସମ୍ପୂର୍ଣ୍ଣରୂପେ ବଦଳାଇଦେଲା।

କଲିକତାରେ ସେତେବେଳେ ୟଙ୍ଗ ବେଙ୍ଗଲର ଯୁଗ ଥିଲା। ପ୍ରାଚୀନ ସମାଜର ସବୁ ବନ୍ଧନ ଶୃଙ୍ଖଳ ଭାଙ୍ଗି ନୂତନର ଅଭ୍ୟୁଦୟ ପାଇଁ ୟଙ୍ଗ୍ ବେଙ୍ଗଲ ଗୋଷ୍ଠୀ ଆହ୍ୱାନ ଦେଉଥିଲେ। ଏହି ପରିସ୍ଥିତିରେ ଖ୍ରୀଷ୍ଟଧର୍ମ ପ୍ରଗତିର ପଥ ବୋଲି ଅନେକ ଯୁବକ ଭାବୁଥିଲେ ଏବଂ ତାହା ଯୁବକ ମଧୁସୂଦନଙ୍କୁ ଆକୃଷ୍ଟ କରିଥିଲା। କଲେଜ ହଷ୍ଟେଲ୍‌ରେ ମେଦିନୀପୁରରୁ ଆସିଥିବା ଛାତ୍ର ଅମ୍ବିକାଚରଣ ହାଜରାଙ୍କ ସହିତ ତାଙ୍କର ଘନିଷ୍ଠ ବନ୍ଧୁତା ହୋଇଥିଲା। ସେ ମଧ୍ୟ ଖ୍ରୀଷ୍ଟଧର୍ମ ପ୍ରତି ଆକୃଷ୍ଟ ହୋଇଥିଲେ। ପରବର୍ତ୍ତିକାଳରେ ମଧୁବାବୁ ଅମ୍ବିକାଚରଣଙ୍କର

ପିଲାମାନଙ୍କୁ ନିଜର ପିଲାକରି ପ୍ରତିପାଳନ କରିଥିଲେ। ହଷ୍ଟେଲ୍‌ରେ ରହି ମଧୁବାବୁ ନିଜର ଆବଶ୍ୟକ ଖର୍ଚ୍ଚପାଇଁ କଲିକତାର ବିଭିନ୍ନ ଅଞ୍ଚଳରେ ଟ୍ୟୁସନ ଖୋଜିଲେ। ଏହି ସମୟରେ ଆକସ୍ମିକ ଭାବରେ ଦିନେ ରାସ୍ତାରେ ସେ ପାଦ୍ରି ଯଦୁନାଥ ଚାଟର୍ଜୀଙ୍କୁ ଭେଟିଥିଲେ। ସେ ମଧୁବାବୁଙ୍କୁ ତାଙ୍କର ଦୁଇକନ୍ୟା ସୌଦାମିନୀ ଓ ସୁରଙ୍ଗିଣୀଙ୍କର ଗୃହଶିକ୍ଷକରୂପେ ନିଯୁକ୍ତ କରିଥିଲେ। ୧୮୬୮ ମସିହାରେ ମଧୁବାବୁ ଏଫ.ଏ. ପାସ୍ କରି ବି.ଏ. କ୍ଲାସରେ ନାମ ଲେଖାଇଥିଲେ। ସେତେବେଳେ ସେ ଖ୍ରୀଷ୍ଟଧର୍ମ ଗ୍ରହଣ କରିବାପାଇଁ ସ୍ଥିରକଲେ। ମାତ୍ର ଖ୍ରୀଷ୍ଟଧର୍ମ ଗ୍ରହଣ ପୂର୍ବରୁ ପ୍ରିନ୍ସିପାଲ୍, ଆଷ୍ଟନ୍ ସାହେବ ମଧୁବାବୁଙ୍କ ପିତାଙ୍କର ସମ୍ମତିପତ୍ର ଦରକାର କଲେ। ସେଥିନିମନ୍ତେ ମଧୁବାବୁ ବାପାଙ୍କ ପାଖକୁ ଚିଠି ଲେଖିଲେ। ରଘୁନାଥ ଦାସ ଏ ଖବର ପାଇ ଅତ୍ୟନ୍ତ ଚିନ୍ତିତ ହେଲେ ଏବଂ ଖ୍ରୀଷ୍ଟଧର୍ମ ଗ୍ରହଣ ନକରିବା ନିମିତ୍ତ ମଧୁବାବୁଙ୍କୁ ପ୍ରବର୍ତ୍ତାଇବା ପାଇଁ କଲିକତା ଗଲେ। ସେ ମଧୁସୂଦନଙ୍କୁ ବହୁତ ବୁଝାଇଲେ; ମାତ୍ର ସ୍ୱଭାବରେ ଏକଜିଦିଆ ମଧୁସୂଦନ ଖ୍ରୀଷ୍ଟିଆନ ହେବାପାଇଁ କରିଥିବା ସିଦ୍ଧାନ୍ତରୁ ବିଚ୍ୟୁତ ହେଲେ ନାହିଁ। ରଘୁନାଥ ଦାସ ପୁତ୍ରକୁ ତ୍ୟାଜ୍ୟପୁତ୍ର କଲେ ବୋଲି କହି ରାଗରେ କଲିକତାରୁ ଫେରିଆସିଲେ। ଜୀବନଯାକ ସେ ଆଉ ପୁତ୍ରର ମୁହଁ ଚାହିଁନଥିଲେ।

୧୮୭୦ ମସିହାରେ ମଧୁବାବୁ ବି.ଏ. ପରୀକ୍ଷା ଦେଲେ। ସଂସ୍କୃତ ପରୀକ୍ଷାରେ ଉତ୍ତର ଓଡ଼ିଆ ଭାଷାରେ ଲେଖିବାକୁ ବିଶ୍ୱବିଦ୍ୟାଳୟ ଅନୁମତି ନଦେବାରୁ ସେ ବଙ୍ଗ ପ୍ରେସିଡ଼େନ୍‌ସିର ଗଭର୍ଣ୍ଣର ସାର୍ ଉଇଲିଅମ୍ ଗ୍ରେଙ୍କ ନିକଟକୁ ସ୍ମାରକପତ୍ର ପଠାଇଲେ ଏବଂ ତାଙ୍କ ନିର୍ଦ୍ଦେଶରେ ସଂସ୍କୃତପତ୍ରର ଉତ୍ତର ଓଡ଼ିଆରେ ଲେଖିଥିଲେ। ୧୮୭୦ ମସିହାରେ ବି.ଏ. ପାସ୍ କରି ସେ ପ୍ରଥମ ଓଡ଼ିଆ ଗ୍ରାଜୁଏଟ୍ ହେଲେ। ସେତେବେଳେ କଟକ ଫେରିଆସି ଡେପୁଟି ମାଜିଷ୍ଟ୍ରେଟ ଚାକିରି କରିବା ପାଇଁ ବିଚିତ୍ରାନନ୍ଦ ଦାସ ତାଙ୍କୁ ଲେଖିଥିଲେ। ମାତ୍ର ମଧୁସୂଦନ ଡେପୁଟି ମାଜିଷ୍ଟ୍ରେଟ୍ ଚାକିରିକୁ ତାଚ୍ଛଲ୍ୟ ଦେଖାଇ ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଡିଗ୍ରି ଏମ୍.ଏ. କ୍ଲାସରେ ପଢ଼ିବା ପାଇଁ ସଂକଳ୍ପ କରିଥିଲେ।

ମଧୁସୂଦନ ବି.ଏ. ପାସ୍‌କରି ଛଅବର୍ଷ ପରେ ୧୮୭୦ ମସିହା ଚୈତ୍ର ମାସରେ ଗାଁକୁ ଫେରିଆସିଲେ। ତାଙ୍କୁ ଦେଖି ଘରେ ଆନନ୍ଦ ଓ ଦୁଃଖରେ କାନ୍ଦବୋବାଳି ପଡ଼ିଲା। ମା' ପାର୍ବତୀ ଦେଈ ତାଙ୍କୁ କୁଣ୍ଢାଇ କାନ୍ଦିଲେ। ମାତ୍ର ସେ ଖ୍ରୀଷ୍ଟିଆନ ହୋଇଥିବାରୁ ତାଙ୍କୁ ଭିତର ଖଞ୍ଜାକୁ ନେଇପାରିଲେନାହିଁ। ତାଙ୍କୁ ଛୁଇଁଥିବାରୁ ମା' ରସକୁଣ୍ଡ ପୋଖରୀରେ ଗାଧୋଇ ଘର ଭିତରେ ପଶିଲେ। ବସ୍ତୁତଃ ପାର୍ବତୀ ଦେଈ ବଞ୍ଚିଥିବା ପର୍ଯ୍ୟନ୍ତ ଏକ ବିରାଟ ଦ୍ୱନ୍ଦ୍ୱରେ ପଡ଼ିଥିଲେ। ଏକ ଦିଗରେ ପୁତ୍ର ପ୍ରତି ତାଙ୍କର ଅତ୍ୟନ୍ତ ବାତ୍ସଲ୍ୟ ମମତା ଏବଂ ଅନ୍ୟ

ଦିଗରେ ଦୃଢ଼ୀଭୂତ ଧର୍ମବିଶ୍ୱାସ। ମଧୁବାବୁ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିବାଯୋଗୁଁ ଅସ୍ପୃଶ୍ୟ ହୋଇଯାଇଥିଲେ ବୋଲି ପାର୍ବତୀ ଦେଈ ଦୃଢ଼ଭାବରେ ବିଶ୍ୱାସ କରୁଥିଲେ। ମଧୁବାବୁ ଯେତେବେଳେ ଗାଁକୁ ଯାଉଥିଲେ ମା' ତାଙ୍କୁ ସ୍ନେହରେ କୁଣ୍ଢାଇପକାଉଥିଲେ, ଖାଇବାକୁ ଦେଉଥିଲେ; କିନ୍ତୁ ପରମୁହୂର୍ତ୍ତରେ ଅସ୍ପୃଶ୍ୟ ଖ୍ରୀଷ୍ଟିଆନଙ୍କୁ ଛୁଇଁବା ହେତୁ ସେ ପାପକାର୍ଯ୍ୟ କଲେ ବୋଲି ଭାବି ପୋଖରୀରେ ଗାଧୋଇ ଘରେ ପଶୁଥିଲେ। ତାଙ୍କ ମତରେ ଖ୍ରୀଷ୍ଟିଆନ ହୋଇଯିବାଦ୍ୱାରା ପୁଅର କାୟା ନଷ୍ଟହୋଇଗଲା ଏବଂ ବଞ୍ଚିଥିବା ପର୍ଯ୍ୟନ୍ତ ସେ ଅସ୍ପୃଶ୍ୟ ହୋଇଗଲା।

ମଧୁସୂଦନ ସେ ଦିନ ତାଙ୍କ ଘର ଭିତରକୁ ଯାଇପାରିନଥିଲେ। ରାତିରେ ତାଙ୍କ ପୂର୍ବ ଚାଟଶାଳୀ ଘରେ ରହି ପରଦିନ ଅତି ସକାଳୁ କଲିକତା ପଳାଇ ଯାଇଥିଲେ। ବାଟରେ ତାଙ୍କୁ ପ୍ରବଳ ଜ୍ୱରହେଲା। ଜ୍ୱର ଅବସ୍ଥାରେ କଲିକତାରେ ଯଦୁନାଥ ଚାଟାର୍ଜୀଙ୍କ ଘରେ ପହଞ୍ଚିଲେ। ସେଠାରେ ତିନିମାସ ଟାଇଫଏଡ୍ ରୋଗରେ ପଡ଼ିଲେ। ସୌଦାମିନୀ ଦିନରାତି ତାଙ୍କର ଶୁଶ୍ରୂଷା କଲେ। ତିନିମାସ ପରେ ଆରା ସାନାଟୋରିଅମ୍‌ରେ ତିନିମାସ ଚିକିତ୍ସିତ ହେଲେ। ସମୟ ଗଡ଼ିଯାଇଥିବା ହେତୁ ସେ ବର୍ଷ ସେ ଏମ୍.ଏ. କ୍ଲାସରେ ନାମ ଲେଖାଇ ପାରିଲେ ନାହିଁ। ପରବର୍ଷ ୧୮୭୧ ମସିହାରେ ପ୍ରେସିଡେନ୍‌ସି କଲେଜରେ ଇଂରାଜୀ ଏମ୍.ଏ. କ୍ଲାସରେ ନାମ ଲେଖାଇଲେ। ୧୮୭୩ ମସିହାରେ ଏମ୍.ଏ. ପାସ୍ କରି ସେ ଓଡ଼ିଆମାନଙ୍କ ମଧ୍ୟରେ ପ୍ରଥମ ଏମ୍.ଏ. ପାସ୍ କରିଥିବା ବ୍ୟକ୍ତି ହୋଇଥିଲେ।

୧୮୭୩ ମସିହାରେ ତାଙ୍କର ସୌଦାମିନୀଙ୍କ ସହିତ ବିବାହ ହେଲା ଏବଂ ୧୮୭୮ରେ ସୌଦାମିନୀଙ୍କ ମୃତ୍ୟୁ ପର୍ଯ୍ୟନ୍ତ ମାତ୍ର ପାଞ୍ଚବର୍ଷ ସେମାନେ ଘରସଂସାର କରିଥିଲେ। ୧୮୭୮ ମସିହାରେ ମଧୁସୂଦନ ବି.ଏଲ୍. ପାସ୍ କଲେ। ୧୮୭୩ ମସିହାରୁ ୧୮୭୮ ମସିହା ମଧ୍ୟରେ ଅର୍ଥ ଉପାର୍ଜନ ପାଇଁ ସେ ବହୁ ପରିଶ୍ରମ କରିଥିଲେ। ମିର୍ଜାପୁର ସ୍କୁଲ ଏବଂ ପରେ ଗାର୍ଡ଼ନ ରିଚ୍ ସ୍କୁଲର ହେଡ଼ମାଷ୍ଟର, କଲିକତା ହାଇକୋର୍ଟର ଟ୍ରାନ୍‌ସଲେଟର୍, ଆଶୁତୋଷ ମୁଖର୍ଜୀଙ୍କର ଗୃହ-ଶିକ୍ଷକ, ଭାରତର ବିଭିନ୍ନ ବିଶ୍ୱବିଦ୍ୟାଳୟମାନଙ୍କର ଏଣ୍ଟ୍ରାନ୍‌ସ ପରୀକ୍ଷା ପାଇଁ ମଡେଲ୍ ପ୍ରଶ୍ନ ସଂକଳନ ପ୍ରଭୃତି କାର୍ଯ୍ୟରେ ସବୁବେଳେ ବ୍ୟସ୍ତ ରହୁଥିଲେ। ଏହି ସମୟ ମଧ୍ୟରେ ସେ ଖ୍ରୀଷ୍ଟିଆନ ପାଦ୍ରିରୂପେ ଏବଂ ଶ୍ରୀରାମପୁର କଲେଜରେ ଅଧ୍ୟାପକ ହିସାବରେ ନିଯୁକ୍ତି ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଥିଲେ। ଖ୍ରୀଷ୍ଟିଧର୍ମ ଗ୍ରହଣ କରିଥିଲେ ମଧ୍ୟ ସେ ପାଦ୍ରିମାନଙ୍କର ପ୍ରଚାର ଢଙ୍ଗକୁ ପସନ୍ଦ କରୁନଥିଲେ ଏବଂ ଦରମା ପାଇ ପାଦ୍ରି କାମ କରୁଥିବା ବ୍ୟକ୍ତିମାନଙ୍କୁ ତାଚ୍ଛଲ୍ୟ କରୁଥିଲେ; ଯଦିଓ ତାଙ୍କ ଶଶୁର ଯଦୁନାଥ ଚାଟର୍ଜୀ ସେହି ଶ୍ରେଣୀର ଲୋକ ଥିଲେ। ସେଥିଯୋଗୁଁ ସେ କଲିକତାର ଖ୍ରୀଷ୍ଟିଆନ ସମ୍ପ୍ରଦାୟର ଲୋକମାନଙ୍କ

ମଧ୍ୟରେ ଅପ୍ରିୟ ଓ ଅପାଂକ୍ତେୟ ହୋଇଥିଲେ। ସୌଦାମିନୀଙ୍କ ସହିତ ପାଞ୍ଚବର୍ଷ ସଂସାର କରି ରହିଥିବା ସମୟରେ ବନ୍ଧୁ ଅମ୍ବିକାଚରଣ ତାଙ୍କ ସ୍ତ୍ରୀ ଓ ଶିଶୁ କନ୍ୟାକୁ ମଧୁବାବୁଙ୍କ ଘରେ ରଖି ସିମିଳାରେ ଚାକିରି କରିବାକୁ ଯାଇଥିଲେ। ସେହିଦିନୁ ଅମ୍ବିକାଚରଣଙ୍କ କନ୍ୟା ଶୈଳବାଳା ମଧୁବାବୁଙ୍କର ପାଳିତା କନ୍ୟା ହୋଇଥିଲେ। ପରେ ଅମ୍ବିକାଚରଣଙ୍କର ଆଉ ଦୁଇଗୋଟି ପିଲା ମଧ୍ୟ ତାଙ୍କ ଉପରେ ନିର୍ଭରକଲେ।

ଅର୍ଥ ଉପାର୍ଜନ ଓ ପରିବାର ପ୍ରତିପୋଷଣ ସହିତ ମଧୁବାବୁ ସେତେବେଳେ ବହୁ ସଭାସମିତିରେ ଯୋଗଦେଉଥିଲେ ଏବଂ ଓଡ଼ିଆ ଶ୍ରମିକମାନଙ୍କ ପାଇଁ ଗୋଟିଏ ନୈଶ ବିଦ୍ୟାଳୟ ସ୍ଥାପନ କରିଥିଲେ। ସେତେବେଳେ ସୁରେନ୍ଦ୍ରନାଥ ବାନାର୍ଜୀ 'ଇଣ୍ଡିଆନ୍ ଆସୋସିଏସନ୍' ବା 'ଭାରତ ସଭା' ନାମରେ ଏକ ଅନୁଷ୍ଠାନ ଗଠନ କରିଥିଲେ। ସାଧାରଣ ଜନସମାଜରେ ରାଜନୈତିକ ଆଭିମୁଖ୍ୟ ଧରି କାର୍ଯ୍ୟ କରିବା ଏହି ସଭାର ଉଦ୍ଦେଶ୍ୟ ଥିଲା। ମଧୁବାବୁ ସେ ସଂଗଠନର ବହୁ ସଭାରେ ଯୋଗଦେଉଥିଲେ। ସେ ଆସୋସିଏସନ୍‌ର ବହୁ ସଭ୍ୟ ବାରିଷ୍ଟର ଥିବାରୁ ମଧୁବାବୁ ବାରିଷ୍ଟର ହେବାକୁ କାମନା କରିଥିଲେ। କିନ୍ତୁ ସେଥିଲାଗି ସେତେବେଳେ ତାଙ୍କର ସୁଯୋଗ ନଥିଲା। ତେଣୁ ସେ ଓକିଲାତି ପଢ଼ିବା ପାଇଁ ପ୍ରେସିଡେନ୍ସି କଲେଜରେ ବି.ଏଲ୍. କ୍ଲାସରେ ନାମ ଲେଖାଇଲେ ଏବଂ ୧୮୭୮ ମସିହାରେ ବି.ଏଲ୍. ପାସ୍ କରିଥିଲେ। ଓଡ଼ିଆମାନଙ୍କ ମଧ୍ୟରେ ମଧ୍ୟ ସେ ଥିଲେ ପ୍ରଥମ ବି.ଏଲ୍. ପାସ୍ କରିଥିବା ବ୍ୟକ୍ତି।

୧୮୭୮ ମସିହାରେ ସୌଦାମିନୀଙ୍କର ମୃତ୍ୟୁ ଘଟଣା ବସ୍ତୁତଃ ମଧୁବାବୁଙ୍କ କଲିକତା ଜୀବନର ପୂର୍ଣ୍ଣଚ୍ଛେଦ ପକାଇଲା। ସେତେବେଳେ ତାଙ୍କୁ ମୋଟେ ତିରିଶ ବର୍ଷ ବୟସ ହୋଇଥିଲା। ସେ ଆଉ ବିବାହ କଲେ ନାହିଁ। ଓଡ଼ିଶାକୁ ଫେରିବାକୁ ତାଙ୍କର ମନ ବଳିଲା। ଅବଶ୍ୟ ସୌଦାମିନୀଙ୍କର ମୃତ୍ୟୁ ପରେ ସେ କଲିକତାରେ ତିନିବର୍ଷ ରହିଥିଲେ ଏବଂ ଚବିଶପ୍ରଗନାର ଆଲିପୁର କଚେରିରେ ଓକିଲାତି କରୁଥିଲେ। ମାତ୍ର ତଳ କୋର୍ଟରେ ଓକିଲାତି କରିବାକୁ ତାଙ୍କର ଆଗ୍ରହ ନଥିଲା। ସେ କଲିକତା ହାଇକୋର୍ଟରେ ଓକିଲାତି କରିବା ପାଇଁ ବାରିଷ୍ଟର ଜେ.ଟି. ଉଡ୍‌ରଫ୍‌ଙ୍କ ଜୁନିଅର୍ ରୂପେ କାର୍ଯ୍ୟ ଶିକ୍ଷା ଆରମ୍ଭ କରିଥିଲେ। କିନ୍ତୁ ସୌଦାମିନୀଙ୍କ ମୃତ୍ୟୁ ପରେ କଲିକତାରେ ନିଃସଙ୍ଗ ଜୀବନ ତାଙ୍କୁ ଭଲଲାଗୁନଥିଲା। ଓଡ଼ିଶାରୁ ନନ୍ଦକିଶୋର ଦାସ ପ୍ରଭୃତି ତାଙ୍କୁ କଟକ ଫେରିବାକୁ ବରାବର ଚିଠି ଲେଖୁଥିଲେ। ୧୮୮୧ ମସିହାରେ, ଷୋହଳ ବର୍ଷ କଲିକତାରେ କଟାଇଲା ପରେ ସେ କଟକ ଫେରିଲେ।

କଲିକତାରେ ଷୋହଳ ବର୍ଷ ଜୀବନକାଳ ମଧ୍ୟରେ ସେ ଭବିଷ୍ୟତ ଜୀବନପାଇଁ

ଉଚ୍ଚ ଶିକ୍ଷା ଲାଭକରିଥିଲେ ଏବଂ ବିଶ୍ୱବିଦ୍ୟାଳୟର ଏମ୍.ଏ. ଏବଂ ବି.ଏଲ୍. ସର୍ବୋଚ୍ଚ ଡିଗ୍ରୀମାନ ପ୍ରାପ୍ତହୋଇଥିଲେ। କଲିକତାର ବିଭିନ୍ନ ଅନୁଷ୍ଠାନର ସଭା ସମିତି ଓ କାର୍ଯ୍ୟକ୍ରମରେ ଯୋଗଦେଇ ସାଧାରଣ ଜୀବନରେ ରାଜନୈତିକ ଓ ସାମାଜିକ କାର୍ଯ୍ୟରେ ନେତୃତ୍ୱ ନେବାପାଇଁ ତାଲିମ୍ ପାଇଥିଲେ। ଓଡ଼ିଆ ଜାତିର ହୀନିମାନ ଅବସ୍ଥା ଏବଂ ଓଡ଼ିଆମାନଙ୍କର ସେଥିପାଇଁ ଚେତନାର ଅଭାବ ଯୋଗୁଁ ଦୁଃଖ ତାଙ୍କ ହୃଦୟରେ ପିଲାଦିନୁ ଅନ୍ତଃସଲିଳା ନଦୀପରି ସର୍ବଦା ବହୁଥାଏ। ଓଡ଼ିଆମାନଙ୍କର ସ୍ୱାଭିମାନ ଓ ପୂର୍ବଗୌରବ ଫେରାଇ ଆଣିବାପାଇଁ କାର୍ଯ୍ୟ କରିବା ନିମିତ୍ତ ବଳବତୀ ଇଚ୍ଛା ଓଡ଼ିଶା ଫେରିବାବେଳେ ତାଙ୍କ ମନରେ ଜାଗ୍ରତ ଥିଲା। କଲିକତାରେ ଖ୍ରୀଷ୍ଟଧର୍ମ ଗ୍ରହଣ କରିବା ଏବଂ ସୌଦାମିନୀଙ୍କ ସହିତ ବିବାହ ହେତୁ ତାଙ୍କ ନିଜ ପରିବାରର ପିତାମାତା, ଜ୍ଞାତିକୁଟୁମ୍ବଙ୍କ ସହିତ ସାଧାରଣ ଭାବରେ ଚଳିବାର ସମ୍ଭାବନା ନଥିଲା ବୋଲି ସେ ମଧ୍ୟ ହୃଦୟଙ୍ଗମ କରିଥିଲେ। ବସ୍ତୁତଃ ସେ ନିଜ ପରିବାର, ଜାତି ଓ ଜ୍ଞାତିରେ ଦଶବର୍ଷ ଆଗରୁ ଅପାଂକ୍ତେୟ ହୋଇଥିଲେ।

## କଟକରେ ଓକିଲାତି –

କଟକରେ ତାଙ୍କର ବାସଗୃହପାଇଁ ନନ୍ଦକିଶୋରବାବୁ ବିହାରୀଲାଲ୍ ପଣ୍ଡିତଙ୍କ ବିହାରୀବାଗ୍ କୋଠି ଆଗରୁ ସ୍ଥିରକରିଥିଲେ। ମଧୁବାବୁ ସେଠାରେ ସାହେବୀ ଢଙ୍ଗରେ ଅବସ୍ଥାନ କଲେ। କଟକରେ ସେତେବେଳେ ଆଗନ୍ତୁକ ବଙ୍ଗାଳୀ ଏବଂ ସ୍ଥାନୀୟ ଅଧିବାସୀମାନଙ୍କ ମଧ୍ୟରେ ସମ୍ପର୍କ ତିକ୍ତ ଥିଲା। ମଧୁବାବୁଙ୍କୁ ଗୌରୀଶଙ୍କର ରାୟ ଓ ତାଙ୍କ ଭାଇ ରାମଶଙ୍କର ରାୟ ପ୍ରଭୃତି ସ୍ଥାନୀୟ ଅଧିବାସୀମାନେ ଗୋଟିଏ ସଭାରେ ସ୍ୱାଗତ କଲେ। ମଧୁବାବୁ ଓଡ଼ିଶାରେ ବି.ଏଲ୍. ପାସ୍ କରିଥିବା ପ୍ରଥମ ଓଡ଼ିଆ ଓକିଲ ଥିଲେ। କଟକରେ ସେତେବେଳେ ସବୁ ବରିଷ୍ଠ ଓକିଲ ଆଗନ୍ତୁକ ବଙ୍ଗାଳୀ ଥିଲେ ଏବଂ ଓକିଲାତି ବ୍ୟବସାୟ ପୂରାପୂରି ସେମାନଙ୍କ ହାତରେ ଥିଲା। ମଧୁବାବୁଙ୍କୁ ପ୍ରଥମେ ବାର୍ ଲାଇବ୍ରେରୀରେ ବସିବାପାଇଁ ସ୍ଥାନ ଟିକିଏ ସୁଦ୍ଧା ମିଳିନଥିଲା। ବଙ୍ଗାଳୀ ଓକିଲମାନେ ତାଚ୍ଛଲ୍ୟରେ ତାଙ୍କଆଡ଼କୁ ଦୃଷ୍ଟିପାତ ସୁଦ୍ଧା କରିନଥିଲେ। ବାର୍ ଆସୋସିଏସନ୍‌ରେ ମଧ୍ୟ ମଧୁବାବୁଙ୍କୁ ସଭ୍ୟରୂପେ ଗ୍ରହଣ କରାଯାଇନଥିଲା। ମଧୁବାବୁ କିଛିଦିନ ଜଜ୍ ସାହେବଙ୍କ କୋର୍ଟ ବାରଣ୍ଡାରେ ବସି ମହକିଲମାନଙ୍କୁ ଭେଟୁଥିଲେ। ପରେ ଜଜ୍ ସାହେବଙ୍କ ନିର୍ଦ୍ଦେଶକ୍ରମେ ତାଙ୍କ କୋର୍ଟର ପାର୍ଶ୍ୱବର୍ତ୍ତୀ ପ୍ରକୋଷ୍ଠରେ ମଧୁବାବୁ ସ୍ଥାନପାଇଥିଲେ। ମାତ୍ର ବୁଦ୍ଧି ଯାହାର, ବଳ ତାହାର। ମଧୁବାବୁ କ୍ରମେ ଓଡ଼ିଶାର ରାଜା ଓ ଜମିଦାରମାନଙ୍କ ସହିତ ସମ୍ପର୍କ ସ୍ଥାପନ କଲେ ଏବଂ ସେମାନଙ୍କଠାରୁ

ବହୁ ମକଦ୍ଦମା ପାଇଲେ । କେବଳ ଓକିଲାତି କରିବାପାଇଁ ସେ କଟକ ଆସିନଥିଲେ । ଓଡ଼ିଶାରେ ଏକ ସାଧାରଣ ରାଜନୈତିକ ଜାଗରଣର ସୂତ୍ରପାତ କରିବା ତାଙ୍କର ଉଦ୍ଦେଶ୍ୟ ଥିଲା । ସେଥିଯୋଗୁଁ ସେ ପ୍ରଥମେ କଲେଜପିଲାମାନଙ୍କ ସହିତ ମଧ୍ୟ ସମ୍ପର୍କ ସ୍ଥାପନକଲେ ।

ସେତେବେଳେ ଓଡ଼ିଶାରେ ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀର ଲୋକ ନଥିଲେ । ରାଜ୍ୟର ସବୁଆଡ଼େ ଦାରିଦ୍ର୍ୟ, ଅଶିକ୍ଷା ଓ କୁସଂସ୍କାରର ରାଜତ୍ୱ ଥିଲା । ଲୋକମାନଙ୍କ ମନରେ ସବୁବେଳେ ଭୟ । କ୍ଷୁଦ୍ର ଶିକ୍ଷିତ ଗୋଷ୍ଠୀ ସରକାରୀ ଚାକିରିର ଅଡ୍ଡା ଭିତରେ ଥିଲେ ଏବଂ ଛାତ୍ରମାନେ ଚାକିରି ଆଶାରେ ନୀରବଦ୍ରଷ୍ଟା ଥିଲେ । କେବଳ ଜମିଦାରମାନେ ଏକମାତ୍ର ଶିକ୍ଷିତ, ସ୍ୱାଧୀନ, ମଧ୍ୟବର୍ତ୍ତି ଶ୍ରେଣୀର ଲୋକ ଥିଲେ । ମଧୁବାବୁ ସେହିମାନଙ୍କ ସହିତ ବିଶେଷ ସମ୍ପର୍କ ସ୍ଥାପନ କଲେ । ଜମିଦାରମାନେ ମଧ୍ୟ ସେତେବେଳେ ଜମିଜମା ବିଷୟକ ନାନା ସମସ୍ୟାରେ ଅସନ୍ତୁଷ୍ଟ ଥିଲେ ଏବଂ ସେମାନଙ୍କର ବହୁ ଘଟଣାରେ ମକଦ୍ଦମା ହେଉଥିଲା । ସେଥିରୁ ଅଧିକାଂଶ ମକଦ୍ଦମା ମଧୁବାବୁଙ୍କ ହାତକୁ ଆସିଲା । ତଥାପି ସମୟେ ସମୟେ ସେ ଅତ୍ୟାଚାରୀ ଜମିଦାରମାନଙ୍କ ବିରୁଦ୍ଧରେ ଫିସ୍ ନ ଦେଇ ପ୍ରଜାମାନଙ୍କ ତରଫରୁ ମକଦ୍ଦମା ଲଢୁଥିଲେ । ତା'ପରେ ଓଡ଼ିଶାର କରଦ ରାଜାମାନଙ୍କ ମକଦ୍ଦମା ମଧ୍ୟ ମଧୁବାବୁଙ୍କ ହାତକୁ ଆସିଲା ।

ପୁରୀର ନାବାଳକ ରାଜା, ଯେନାମଣି ଜଗନ୍ନାଥଙ୍କୁ, ମୁକୁନ୍ଦଦେବ ରୂପେ ଖୋର୍ଦ୍ଧାର ରାଜା ବୋଲି ମଧୁବାବୁ ବଙ୍ଗ ସରକାରଙ୍କଦ୍ୱାରା ଅନୁମୋଦିତ କରାଇଲେ । ଦ୍ୱିତୀୟରେ ପୁରୀ ବଡ଼ଦେଉଳର ପରିଚାଳନା ଭାର ୧୮୮୬ ମସିହାରେ ସରକାର ପୁରୀରାଜାଙ୍କଠାରୁ ନେଇଯାଇଥିଲେ । ଏହା ବିରୁଦ୍ଧରେ ମକଦ୍ଦମା ଲଢ଼ିବାପାଇଁ ପୁରୀ ରାଣୀ ସୂର୍ଯ୍ୟମଣି ପଟ୍ଟମହାଦେଈ ମଧୁବାବୁଙ୍କ ଉପରେ ଭାର ଦେଲେ । ଜଗନ୍ନାଥଙ୍କ ମନ୍ଦିର ପରିଚାଳନା ସରକାର ହାତକୁ ନେବାରୁ ଓଡ଼ିଶାର ଜନସାଧାରଣ ମଧ୍ୟ ବିଶେଷ ଉତ୍ତେଜିତ ହୋଇଥିଲେ । ମଧୁବାବୁ ନିଜ ହାତରୁ ଖର୍ଚ୍ଚକରି ହାଇକୋର୍ଟରେ ମକଦ୍ଦମା ଚଳାଇଲେ । କୌଣସି ଯୁକ୍ତିଯୁକ୍ତ କାରଣ ପ୍ରଦର୍ଶନ ନକରି ବଡ଼ଦେଉଳରେ ସରକାରୀ ରିସିଭର ନିଯୁକ୍ତ ହୋଇଥିବାରୁ କଲିକତା ହାଇକୋର୍ଟ ଏ ସମ୍ପର୍କୀୟ ଆଦେଶକୁ ଅସିଦ୍ଧ ଘୋଷଣା କରିଦେଲେ । ଖୋର୍ଦ୍ଧା ରାଜାଙ୍କର ମନ୍ଦିରରେ ପାରମ୍ପରିକ ପରିଚାଳନା ଅଧିକାର ପୁନଃସଂସ୍ଥାପିତ ହେବାରୁ, ଓଡ଼ିଶାର ଚାରିଆଡ଼େ ସନ୍ତୋଷର ବାତାବରଣ ଖେଳିଯାଇଥିଲା । ଏ ମକଦ୍ଦମାରେ ଜିତିବା ପରେ, ଓକିଲାତି ବ୍ୟବସାୟରେ ମଧୁବାବୁଙ୍କର ବିଶେଷ ସୁନାମ ହୋଇଥିଲା ।

୧୮୮୮ ମସିହାରେ, ସାଇବିରି ଅଞ୍ଚଳର ଚାଷୀମାନେ ଭିଙ୍ଗାରପୁର ଜମିଦାରଙ୍କ

ଅତ୍ୟାଚାର ବିରୁଦ୍ଧରେ ସରକାରଙ୍କ ପାଖରେ ଆପତ୍ତି କରିଥିଲେ। ସରଜମିନ୍ ତଦନ୍ତ କରିବା ପାଇଁ ଜଣେ ଡେପୁଟି ମାଜିଷ୍ଟ୍ରେଟ୍ ନିଯୁକ୍ତ ହୋଇଥିଲେ। ମଧୁବାବୁ ସେତେବେଳକୁ ଓଡ଼ିଶାର ଜନସମାଜରେ ଏପରି ଆସନରେ ଅଭିଷିକ୍ତ ହୋଇଥିଲେ ଯେ, ପ୍ରତ୍ୟେକ ବିବାଦରେ ଉଭୟ ବିବଦମାନ ପକ୍ଷ ତାଙ୍କ ପାଖକୁ ସାହାଯ୍ୟ ଓ ପରାମର୍ଶ ପାଇଁ ଆସୁଥିଲେ। ମହନ୍ତ, ମୌଲଭି ବଙ୍ଗପ୍ରେମୀ ଓ ବଙ୍ଗବିରୋଧୀ, ଚାକିରିଲାଳସୀ ଏବଂ ଦେଶପ୍ରେମୀ ଛାତ୍ର– ଏହିପରି ପରସ୍ପର-ବିରୋଧୀ ଗୋଷ୍ଠୀ ଏବଂ ପାରସ୍ପରିକ ସମ୍ପର୍କବିହୀନ ଗୋଷ୍ଠୀ ତାଙ୍କ ପାଖକୁ ପରାମର୍ଶ ପାଇଁ ଆସୁଥିଲେ। ଭିଙ୍ଗାରପୁର ଜମିଦାର ଚୌଧୁରୀ କାଶୀନାଥ ଦାଶ ଉତ୍କଳ ସଭାର ସଭାପତି ଥିଲେ। ସେ ମଧୁବାବୁଙ୍କର ପ୍ରଧାନ ରାଜନୈତିକ ସହକର୍ମୀ ଏବଂ ତାଙ୍କର ଅନ୍ୟାନ୍ୟ କର୍ମ-ଯୋଜନାର ମୁଖ୍ୟ ସମର୍ଥକ ଥିଲେ। କେବଳ ଭିଙ୍ଗାରପୁରର ଚୌଧୁରୀ ନୁହନ୍ତି, ଓଡ଼ିଶାର ବହୁ ଜମିଦାରଙ୍କର ମଧୁବାବୁ ବିଶ୍ୱସ୍ତ ଆଇନ-ପରାମର୍ଶଦାତା ଥିଲେ। ତଥାପି ଭିଙ୍ଗାରପୁର ଜମିଦାରିରେ ଅତ୍ୟାଚାରିତ ପ୍ରଜାମାନଙ୍କର ତ୍ରାଣକର୍ତ୍ତାରୂପେ ତାଙ୍କ ଉପରେ ଦୃଢ଼ ପ୍ରତ୍ୟୟ ଥିଲା। ସେମାନଙ୍କ ନିମିତ୍ତ ମଧୁବାବୁଙ୍କୁ ଏକ ପ୍ରଭାବଶାଳୀ ପୃଷ୍ଠପୋଷକତା ବିସର୍ଜନ କରିବାକୁ ପଡ଼ିଥିଲା। ତଦନ୍ତକାରୀ ମାଜିଷ୍ଟ୍ରେଟ୍‌ଙ୍କ ପାଖରେ ମଧୁବାବୁ ଏବଂ ଗୋକୁଳାନନ୍ଦ ଚୌଧୁରୀ ପ୍ରଜାମାନଙ୍କ ପକ୍ଷରୁ ଉପସ୍ଥିତ ଥିଲେ। ମଧୁବାବୁଙ୍କ ହିମ୍ମତ ପାଇ ପ୍ରଜାମାନେ ମାଜିଷ୍ଟ୍ରେଟ୍‌ଙ୍କ ପାଖରେ ଜମିଦାରଙ୍କ ସମ୍ମୁଖରେ ନିର୍ଭୟରେ ବିଭିନ୍ନ ପ୍ରକାର ଅତ୍ୟାଚାରର ବିବରଣୀ ଦେଇଥିଲେ। ମକଦ୍ଦମାରେ ପ୍ରଜାମାନଙ୍କର ଜୟ ହୋଇଥିଲା ଏବଂ ସେମାନେ ଆନନ୍ଦରେ ମଧୁବାବୁଙ୍କୁ ଶୂନ୍ୟେ ଶୂନ୍ୟେ ନେଇ ହରିବୋଲ ଧ୍ୱନି ଦେଇଥିଲେ।

୧୮୯୧ ମସିହାରେ, ଧରଣୀଧର ଭୂୟାଁଙ୍କ ନେତୃତ୍ୱରେ କେନ୍ଦୁଝରର ଭୂୟାଁମାନେ ମହାରାଜା ଧନଞ୍ଜୟ ନାରାୟଣ ଭଞ୍ଜଙ୍କ ବିରୁଦ୍ଧରେ ବିଦ୍ରୋହ ଓ ମେଳି କରିଥିଲେ। ଅବଶେଷରେ ଇଂରେଜ ସୈନ୍ୟବାହିନୀର ହସ୍ତକ୍ଷେପ ଫଳରେ ମେଳି ଭାଙ୍ଗି ଯାଇଥିଲା, ଧରଣୀଧର ପାଞ୍ଚବର୍ଷ କାରାଦଣ୍ଡ ପାଇଥିଲେ ଏବଂ ଅନ୍ୟ ଆସାମୀମାନେ ପ୍ରତ୍ୟେକେ ଦୁଇ-ତିନିବର୍ଷ ଲେଖାଏଁ ସଶ୍ରମ କାରାଦଣ୍ଡ ପାଇଲେ। ମାତ୍ର ମହାରାଜାଙ୍କର ପ୍ରଜାପୀଡ଼ନ ବିଷୟରେ କମିସନର ଟୟନବିଙ୍କର ସନ୍ଦେହ ନଥିଲା। ସେ ଧନଞ୍ଜୟ ନାରାୟଣ ଭଞ୍ଜଙ୍କୁ କେନ୍ଦୁଝରଗଡ଼ ଛାଡ଼ି କଟକ ଚାଲିଯିବାକୁ ଆଦେଶ ଦେଲେ। ମହାରାଜା ରାଜ୍ୟଚ୍ୟୁତ ହୋଇ କଟକ ପଳାଇଆସିଲେ। ନନ୍ଦକିଶୋର ଦାସ ତାଙ୍କୁ ମଧୁସୂଦନଙ୍କୁ ଦେଖା କରିବାକୁ ପରାମର୍ଶ ଦେଲେ। ମହାରାଜା ସାଦା କାଗଜରେ ଦସ୍ତଖତ୍ କରିଦେଇ ତାଙ୍କୁ ବିପତ୍ତିରୁ ରକ୍ଷା କରିବାକୁ ମଧୁବାବୁଙ୍କୁ ଅନୁରୋଧ କଲେ। ମଧୁବାବୁ ସେ

କାଗଜକୁ ଚିରିପକାଇଲେ; ମାତ୍ର ଟୟନବିଙ୍କ ଆଦେଶ ବିରୁଦ୍ଧରେ ବଙ୍ଗଳାର ଗଭର୍ଣ୍ଣର ସାର୍ ଚାର୍ଲସ୍ ଏଲିଅଟ୍‌ଙ୍କ ଦରବାରରେ ଅପିଲ୍ କଲେ। ଗଭର୍ଣ୍ଣର ପ୍ରଥମେ ଅପିଲ୍ ନାମଞ୍ଜୁର କଲେ; ମାତ୍ର ପରେ ମଧୁବାବୁଙ୍କ ଚେଷ୍ଟାରେ ମହାରାଜା ରାଜ୍ୟ ଫେରିପାଇଲେ। ଭୂୟାଁମାନେ ରାଜାଙ୍କୁ ରାଜ୍ୟରେ ପୂରାଇ ଦେଉନଥିଲେ; ମାତ୍ର ମଧୁବାବୁ କୌଶଳରେ ସେମାନଙ୍କୁ ବୁଝାଇ ଶାନ୍ତକରିଥିଲେ। ମହାରାଜା ଖୁସିହୋଇ ମଧୁବାବୁଙ୍କୁ ଲକ୍ଷେ ଟଙ୍କା ଦେଇଥିଲେ।

କଲିକତାରୁ ଫେରିବାର ଦଶ-ବାର ବର୍ଷ ମଧ୍ୟରେ ମଧୁବାବୁ ଓଡ଼ିଶାର ଅପ୍ରତିଦ୍ୱନ୍ଦ୍ୱୀ, ସର୍ବୋତ୍କୃଷ୍ଟ ଓକିଲ ହୋଇଗଲେ। ରାଜା, ମହାରାଜା, ଜମିଦାର, ମହାଜନ, ସାଧାରଣ ଲୋକ ସମସ୍ତେ ତାଙ୍କୁ ତୀକ୍ଷ୍ଣବୁଦ୍ଧିସମ୍ପନ୍ନ ଆଇନଜୀବୀ ଏବଂ ହାକିମମାନଙ୍କଠାରୁ ଆଦର ଓ ଖାତିର ପାଉଥିବା ବଡ଼ ଓକିଲ ବୋଲି ଜାଣିଥିଲେ। ଓକିଲାତିରେ ଏବଂ ସାଧାରଣ ରାଜନୈତିକ ଓ ସାମାଜିକ କ୍ଷେତ୍ରରେ ତାଙ୍କର ସୁନାମ ଓ ଖ୍ୟାତି ହେତୁ, ବହୁ ବଡ଼ ବଡ଼ ମକଦ୍ଦମା ତାଙ୍କ ହାତକୁ ଆସିଲା ଏବଂ ସେ ଅମାପ ଅର୍ଥ ରୋଜଗାର କଲେ। ନିଜେ ଖାନସମା, ବୁବୁର୍ଚ୍ଚି, କୋଚ୍‌ମାନ୍ ପ୍ରଭୃତି ବହୁ ଭୃତ୍ୟ ନିଯୁକ୍ତକରି ସାହେବୀ ଢଙ୍ଗରେ ଜୀବନ ଯାପନ କଲେ ଏବଂ ଓଡ଼ିଶାର କମିସନରଙ୍କଠାରୁ ଆରମ୍ଭ କରି ବହୁ ଗୋରା ହାକିମ, ରାଜା, ମହାରାଜା, ଜମିଦାର, ରାଜନୈତିକ ବ୍ୟକ୍ତି ଓ କଲେଜ-ଛାତ୍ର ପ୍ରଭୃତିଙ୍କୁ ବହୁବାର ଉଦ୍ୟାନଭୋଜି, ନୈଶବଭୋଜି ପ୍ରଭୃତିରେ ଚର୍ଚ୍ଚା କରି ଊନବିଂଶ ଶତାବ୍ଦୀର ଶେଷ ଦଶନ୍ଧିରେ ଓଡ଼ିଶାରେ ଜଣେ ଅଦ୍ୱିତୀୟ ବ୍ୟକ୍ତି ହୋଇଥିଲେ।

୧୮୮୯ ମସିହାରେ ସେ କଟକଚଣ୍ଡୀ ମନ୍ଦିର ନିକଟସ୍ଥ ଚକ୍‌ବେକ୍ ସାହେବଙ୍କ ଦୁଇମାଣ ଦୁଇଗୁଣ୍ଠ ଦୁଇ ବିଶ୍ୱା ଜମି ଥିବା କୋଠି ଏବଂ ହତା ନିଲାମରେ ଧରି ସେଥିରେ ରହିବାପାଇଁ ଗୋଟିଏ ଦୋମହଲା କୋଠା ତିଆରିକଲେ। ତା'ପରେ ସେ ହତାରେ ଆର୍ଟ ସ୍କୁଲପାଇଁ ଆଉ ଗୋଟିଏ କୋଠା ତିଆରି କଲେ। ହତା ମଧ୍ୟରେ ବଗିଚା ଓ ଗୋଟିଏ ପୁଷ୍କରିଣୀ ଆଗରୁ ଥିଲା। ମଧୁବାବୁ ସେଥିରେ ଗୋଟିଏ ଟେନିସ୍ କୋଟ୍ ତିଆରିକଲେ। ସେହି ହତାରେ ସେ ରାଜକୀୟ ଢଙ୍ଗରେ ରହିଲେ। ଅମ୍ବିକାଚରଣ ହାଜରାଙ୍କ ତିନି ପିଲା ମଧ୍ୟ ତାଙ୍କ ପରିବାରର ସଦସ୍ୟ ହୋଇ ରହିଲେ।

ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିବା ହେତୁ ତାଙ୍କ ପିତା ରଘୁନାଥ ଦାସ ତାଙ୍କ ସହିତ ସମସ୍ତ ଲୌକିକ ସମ୍ପର୍କ ଛିନ୍ନ କରିଥିଲେ; କିନ୍ତୁ ମାତା ପାର୍ବତୀ ଦେଈଙ୍କ ସ୍ନେହ-ମମତା ଓ ସତ୍ୟଭାମାପୁରର ଆକର୍ଷଣ ସେ କେବେ ହେଲେ ଭୁଲି ପାରିନଥିଲେ। ମଝିରେ ମଝିରେ ସେ କଟକରୁ ସତ୍ୟଭାମାପୁର ଯାଉଥିଲେ।

ସେ ସବୁ ସମୟରେ ମା' ତାଙ୍କୁ ଆଦରରେ ଖାଇବାକୁ ଦେଉଥିଲେ; ମାତ୍ର ଖ୍ରୀଷ୍ଟିଆନ୍ ପୁଅକୁ ଛୁଇଁବା ଓ ଖାଇବାକୁ ଦେବା ପାପହେବା ଅନ୍ଧବିଶ୍ୱାସ ଯୋଗୁଁ ଗସକୁଣ୍ଡରେ ଗାଧୋଇ ଘରେ ପ୍ରବେଶ କରୁଥିଲେ। ଏକଥା ମଧୁବାବୁଙ୍କୁ ବଡ଼ କଷ୍ଟଦେଉଥିଲା। ୧୮୮୮ ମସିହାରେ ସେଥିଯୋଗୁଁ ସେ ଗୋପାଳବଲ୍ଲଭଙ୍କ ବିବାହ ପୂର୍ବରୁ ସତ୍ୟରାମାପୁର ଓ ପୁରୁଷୋତ୍ତମପୁର ଦୁଇ ମୌଜାର ଦୋସମାଳି ସ୍ଥାନରେ, ପୁରୁଷୋତ୍ତମପୁର ମୌଜା ମୁଣ୍ଡରେ ଥିବା ବାଲି ପୋଖରି ହୁଡ଼ା ଉପରେ ଡାକବଙ୍ଗଳା ଢଙ୍ଗରେ ଗୋଟିଏ ଘର ନିର୍ମାଣ କଲେ। ସେହି କାଳୁ ଲୋକେ ତାକୁ 'ମଧୁବାବୁ କୋଠି' କହୁଛନ୍ତି। ପୋଖରୀ ଆରପାଖରେ ସତୀଚଉରା ଥିଲା ଏବଂ ସେଠାରୁ ଅଳ୍ପ ଦୂରରେ ଥିବା ତାଙ୍କର ପ୍ରିୟ ପୈତୃକ ଘରବାଡ଼ି ପୋଖରୀ ପ୍ରଭୃତି ଦେଖାଯାଉଥିଲା।

ମା'ଙ୍କୁ ସନ୍ତୁଷ୍ଟ କରିବା ପାଇଁ, ସେ ସାନଭାଇ ଗୋପାଳବଲ୍ଲଭଙ୍କର ନନ୍ଦକିଶୋର ଦାସଙ୍କ କନ୍ୟା ବସନ୍ତକୁମାରୀଙ୍କ ସହ ବିବାହ ସତ୍ୟଭାମାପୁରଠାରେ ଅତି ଆଡ଼ମ୍ବରରେ କରାଇଲେ। ତା'ପରେ ତାଙ୍କ କଟକ-ଘରେ ବହୁ ଲୋକଙ୍କୁ ପ୍ରୀତିଭୋଜନ ଦେଇଥିଲେ ଏବଂ କଲିକତାରୁ ଅଭିନେତ୍ରୀ ଅଣାଇ ନାଟକ ଅଭିନୟ କରାଇଥିଲେ।

୧୮୯୭ ମସିହାରେ, ସେ ନିଜର ଆପେଣ୍ଡିସାଇଟିସ୍ ଅପରେସନ୍ ଏବଂ ଓଡ଼ିଶାର ବିଭିନ୍ନ ସମସ୍ୟା ବ୍ରିଟିଶ୍ ସରକାରୀ ସ୍ତରରେ ଥିବା ବହୁ କ୍ଷମତାସୀନ ବ୍ୟକ୍ତିଙ୍କ ପାଖରେ ଉପସ୍ଥାପନ କରିବା ପାଇଁ ବିଲାତ ଗଲେ। ଓଡ଼ିଆମାନଙ୍କ ମଧ୍ୟରେ ବିଲାତ ଯିବାରେ ସେ ପ୍ରଥମ ବ୍ୟକ୍ତି ଥିଲେ। ବିଲାତରେ ପ୍ରାୟ ତିନିମାସ ରହି, ସେ ବର୍ଷ ସେପ୍ଟେମ୍ବରରୁ ନଭେମ୍ବର ମାସ ପର୍ଯ୍ୟନ୍ତ ୟୁରୋପର ଅନ୍ୟ ଦେଶମାନ ଭ୍ରମଣ କରିଥିଲେ। ନଭେମ୍ବର ମାସରେ ସେ ଓଡ଼ିଶା ଫେରିଆସିଥିଲେ। ବିଲାତରେ ସେ ବାରିଷ୍ଟରି ପଢ଼ିବାକୁ ଯାଇନଥିଲେ କିମ୍ବା ବାରିଷ୍ଟରି ଯୋଗ୍ୟତା ହାସଲ କରିନଥିଲେ। କିନ୍ତୁ ବିଲାତରୁ ଫେରିଲାପରେ ଲୋକମାନେ ତାଙ୍କୁ ବାରିଷ୍ଟର ବୋଲି କହିଲେ। ଏହି 'ବାରିଷ୍ଟର' ପ୍ରସିଦ୍ଧି ହେତୁ ତାଙ୍କର ଓକିଲାତି ବ୍ୟବସାୟ ଏବଂ ରୋଜଗାର ବହୁଗୁଣରେ ବଢ଼ିଗଲା। ଏ ହେଲା କଟକରେ ତାଙ୍କ ଓକିଲାତି ବ୍ୟବସାୟ ଓ ରୋଜଗାରର ସଂକ୍ଷିପ୍ତ ବିବରଣୀ।

କିନ୍ତୁ କେବଳ ଓକିଲାତି କରି ଟଙ୍କା ରୋଜଗାର କରିବା ପାଇଁ ସେ କଟକ ଫେରିଆସିନଥିଲେ। ଓଡ଼ିଆମାନଙ୍କର ହୀନିମାନ ଅବସ୍ଥା ଦୂର କରିବା, ସେମାନଙ୍କ ମଧ୍ୟରେ ଆତ୍ମବିଶ୍ୱାସ ଜାଗ୍ରତ କରିବା ଏବଂ ଓଡ଼ିଆ ଜାତିର ପୂର୍ବ-ଗୌରବ ଫେରାଇ ଆଣିବା ତାଙ୍କର ଏକମାତ୍ର ଲକ୍ଷ୍ୟ ଥିଲା। ଆଧୁନିକ

ଶିକ୍ଷା ଓ ଭାବଧାରା ପ୍ରସାରଦ୍ୱାରା ବଙ୍ଗୀୟ ସମାଜରେ ଯେପରି ନବ ଜାଗରଣ ସୃଷ୍ଟି ହୋଇଥିଲା, ସେ କଲିକତାରେ ରହି ନିରୀକ୍ଷଣ କରିଥିଲେ; ଓଡ଼ିଶାରେ ସେହିପରି ଜାଗରଣ ସୃଷ୍ଟି କରିବା ତାଙ୍କର ଅଭିପ୍ରାୟ ଥିଲା । ଓକିଲାତି ବ୍ୟବସାୟରେ ସୁନାମ ଓ ରୋଜଗାରଦ୍ୱାରା ନିଜର ସ୍ଥିତି ସମାଜରେ ଦୃଢ଼ୀଭୂତ କରି ନପାରିଲେ ସେ ଅଭିପ୍ରାୟ ସଫଳ ହେବା ସମ୍ଭବ ନଥିଲା । ସେଥିଯୋଗୁଁ ସେ ଓକିଲାତି ବ୍ୟବସାୟରେ ସୁଖ୍ୟାତି ଲାଭ କଲେ, ବହୁ ଅର୍ଥ ଉପାର୍ଜନ କଲେ ଏବଂ ସମାଜରେ ସେହି ସ୍ଥିତି ଏବଂ ଉପାର୍ଜିତ ଅର୍ଥ ଓଡ଼ିଆ ଜାତିର ପୁନରୁଦ୍ଧାର କାର୍ଯ୍ୟରେ ଲଗାଇଲେ । ଦାରିଦ୍ର୍ୟ ଓ ଅଭାବରେ ରହିଥିଲେ କିମ୍ବା ସରକାର ଓ ଜନସାଧାରଣଙ୍କ ଉପରେ ପ୍ରଭାବ ନଥିଲେ, ଏ କାର୍ଯ୍ୟ କେବେ ସମ୍ଭବ ହୋଇନଥାନ୍ତା ।

## ରାଜନୈତିକ ଜୀବନ ଓ ଦେଶସେବା –

ଓଡ଼ିଆମାନଙ୍କର ପୁନରୁଦ୍ଧାର କାର୍ଯ୍ୟରେ ନେତୃତ୍ୱ ନେବାପାଇଁ ଗୌରୀଶଙ୍କର ରାୟ, ରାମଶଙ୍କର ରାୟ, ନନ୍ଦକିଶୋର ଦାସ ପ୍ରଭୃତି କଟକର ସେ ସମୟର ସଚେତନ ନେତୃସ୍ଥାନୀୟ ବ୍ୟକ୍ତିଗଣ ତାଙ୍କୁ ଆଗରୁ ଅନୁରୋଧ କରୁଥିଲେ । କଟକ ଫେରିବା ପରେ ସେମାନେ ସମସ୍ତେ ତାଙ୍କୁ ସାହାଯ୍ୟ କରିଥିଲେ । ଓଡ଼ିଶାର ସେ ସମୟର ପ୍ରଧାନ ଖବରକାଗଜ 'ଉତ୍କଳ-ଦୀପିକା' ଏବଂ ତାର ସଂପାଦକ ଗୌରୀଶଙ୍କର ରାୟ ଓଡ଼ିଆମାନଙ୍କର ନବଜାଗରଣ କାର୍ଯ୍ୟରେ ପ୍ରଥମରୁ ତାଙ୍କର ପ୍ରଧାନ ସହାୟକ ଥିଲେ । ମଧୁବାବୁ କଟକ ଆସି ପ୍ରଥମେ ଅନୁଭବ କଲେ ଯେ, ବୌଦ୍ଧିକ ଜୀବନ ଯାପନ ଏବଂ ସାଧାରଣ ରାଜନୈତିକ ଏବଂ ସାମାଜିକ ପ୍ରଗତିଶୀଳ କାର୍ଯ୍ୟ ପାଇଁ ଆବଶ୍ୟକ ଟାଉନ୍ ହଲ୍, ପବ୍ଲିକ୍ ଲାଇବ୍ରେରୀ, ଥିଏଟର୍ ଷ୍ଟେଜ୍, ମହିଳା ଶିକ୍ଷାନୁଷ୍ଠାନ ପ୍ରଭୃତି କଟକରେ କିଛି ନାହିଁ । କଟକ ପ୍ରିଣ୍ଟିଂ କୋମ୍ପାନୀ ପ୍ରକୋଷ୍ଠ ବହୁକାଳ ପର୍ଯ୍ୟନ୍ତ ସାଧାରଣ ସଭାସମିତି କାର୍ଯ୍ୟପାଇଁ ବ୍ୟବହୃତ ହେଉଥିଲା । ପ୍ରଥମେ ମଧୁବାବୁ କଟକ ଆସିଲାବେଳେ ଗୌରୀଶଙ୍କର ରାୟ ଓ ରାମଶଙ୍କର ରାୟ ପ୍ରଭୃତି ତାଙ୍କୁ ସେହି ସ୍ଥାନରେ ସ୍ୱାଗତ ସମ୍ବର୍ଦ୍ଧନା କରିଥିଲେ । ସେତେବେଳେ ଓଡ଼ିଶାରେ କିମ୍ବା ତାର ରାଜଧାନୀ କଟକରେ ସାଧାରଣ ଜୀବନ ବା ରାଜନୀତି ଚର୍ଚ୍ଚାର ସୂତ୍ରପାତ ହୋଇନଥିଲା । ଓଡ଼ିଆ ଭାଷାକୁ ରକ୍ଷା କରିବା ଆନ୍ଦୋଳନ ସେତେବେଳକୁ ଶିଥିଳ ହୋଇଥିଲା । ମାତ୍ର ଭାଷାଆନ୍ଦୋଳନ ସମୟରେ ସୃଷ୍ଟିହୋଇଥିବା ଓଡ଼ିଶାର ଅଧିବାସୀ ଓ ଆଗନ୍ତୁକ ବଙ୍ଗାଳୀମାନଙ୍କ ମଧ୍ୟରେ ତିକ୍ତତା ଜୀବନ୍ତ ରହିଥିଲା । ମଧୁବାବୁ କଟକ ଆସିବାର ବର୍ଷକ ପରେ ଗୌରୀଶଙ୍କରବାବୁ ପ୍ରଭୃତିଙ୍କ ସହିତ ମିଶି ଉତ୍କଳସଭା ନାମରେ

ଗୋଟିଏ ଅନୁଷ୍ଠାନ ସ୍ଥାପନକଲେ । ସେଥିରେ ଓଡ଼ିଆ, ଅଣଓଡ଼ିଆ, ହିନ୍ଦୁ, ମୁସଲ୍‌ମାନ୍ ଓ ଖ୍ରୀଷ୍ଟିଆନ୍ ସମସ୍ତଙ୍କୁ ସଭ୍ୟରୂପେ ଗ୍ରହଣ କରିବାକୁ ବ୍ୟବସ୍ଥା ହେଲା; କାରଣ ସବୁ ଶ୍ରେଣୀର ଲୋକଙ୍କୁ ଏକାଠି କରି ଓଡ଼ିଶାର ଜାତୀୟ ଜୀବନ ଗଠନ କରିବା ମଧୁବାବୁଙ୍କ ଉଦ୍ଦେଶ୍ୟ ଥିଲା । ତାଙ୍କ ମତରେ ଓଡ଼ିଶା ଯେଉଁମାନଙ୍କ ଶୈଶବର କ୍ରୀଡ଼ାଭୂମି, ଯୌବନର କର୍ମଭୂମି, ବାର୍ଦ୍ଧକ୍ୟର ବିଶ୍ରାମଭୂମି ଏବଂ ଆଶ୍ରୟଭୂମି, ସେମାନେ ସମସ୍ତେ ଓଡ଼ିଆ । ଉତ୍କଳସଭା ୧୬।୮।୧୮୮୨ ତାରିଖରେ ସ୍ଥାପିତ ହୋଇଥିଲା । ସେଥିରେ ଭିଙ୍ଗାରପୁରର ଜମିଦାର ଚୌଧୁରୀ କାଶୀନାଥ ଦାସ ସଭାପତି, ନନ୍ଦକିଶୋର ଦାସ, ହାଦୀ ଅବଦୁଲ୍ ରହମନ୍ ମୁସା ସହକାରୀ ସଭାପତି ଓ ଗୌରୀଶଙ୍କର ରାୟ ସମ୍ପାଦକ ହୋଇଥିଲେ । ଏହା ଓଡ଼ିଶାର ସର୍ବପ୍ରଥମ ରାଜନୈତିକ ଅନୁଷ୍ଠାନ ।

ବଙ୍ଗଳାରେ ସୁରେନ୍ଦ୍ରନାଥ ବାନାର୍ଜୀଙ୍କଦ୍ୱାରା ଗଠିତ ଭାରତସଭା ଅନୁରୂପରେ ଉତ୍କଳସଭା ଗଠିତ ହୋଇଥିଲା । ଓଡ଼ିଶାର ବିଭିନ୍ନ ଧର୍ମାବଲମ୍ବୀ ଓ ଭାଷାଭାଷୀ ଲୋକ ସେଥିରେ ଏକତ୍ରିତ ହୋଇ, ଓଡ଼ିଶାର ବିଭିନ୍ନ ରାଜନୈତିକ, ସାମାଜିକ ଏବଂ ଅର୍ଥନୈତିକ ସମସ୍ୟାମାନ ଆଲୋଚନା କରିବା ଏବଂ ସେଗୁଡ଼ିକର ସମାଧାନ ପାଇଁ ଉଦ୍ୟମ କରିବା ସେ ଅନୁଷ୍ଠାନର ଲକ୍ଷ୍ୟ ଥିଲା । ଥରକୁ ଥର କଟକ ଆସୁଥିବା ବଙ୍ଗପ୍ରଦେଶର ଗଭର୍ଣ୍ଣରମାନଙ୍କୁ ଓଡ଼ିଶାର ସମସ୍ୟାମାନ ଉତ୍କଳସଭା ପକ୍ଷରୁ ଜଣାଇ ଦିଆଯାଉଥିଲା । ରେଳପଥ ନିର୍ମାଣ, ବନ୍ୟା-ବାତ୍ୟା ପ୍ରତିରୋଧ, ବିଭିନ୍ନ ପ୍ରଦେଶରେ ବିକ୍ଷିପ୍ତ ଭାବରେ ରହିଥିବା ଓଡ଼ିଆମାନଙ୍କର ଏକତ୍ରୀକରଣ, ଓଡ଼ିଶାର ଶିକ୍ଷିତ ଲୋକମାନଙ୍କୁ ସରକାରୀ ଚାକିରିରେ ନିଯୁକ୍ତି, ପ୍ରଭୃତି ନିବେଦନ କରି ମାନପତ୍ର ପ୍ରଦାନଠାରୁ ଆରମ୍ଭ କରି, ପୁରୀ ଜଗନ୍ନାଥ ମନ୍ଦିରର ପରିଚାଳନା ଭାର ସରକାର ହାତକୁ ନେବାର ପ୍ରତିରୋଧ, ସମ୍ବଲପୁରର କୋର୍ଟ-କଚେରିରୁ ଓଡ଼ିଆ ଭାଷା ଉଠାଇଦେବାର ବିରୋଧ, ଗୋବଧ ନିବାରଣ, ଓଡ଼ିଶାର ନିମକମାହାଲ ସବୁ ବଙ୍ଗ ପ୍ରେସିଡେନ୍‌ସି ଅଧୀନରୁ ନେଇ ମାଦ୍ରାଜ ପ୍ରେସିଡେନ୍‌ସି ଅଧୀନରେ ରଖିବାର ବିରୋଧ ପ୍ରଭୃତି ତତ୍କାଳୀନ ଓଡ଼ିଶାର ସବୁ ପ୍ରକାର ସମସ୍ୟା ଉତ୍କଳସଭାର ଆଲୋଚନା ଓ ଯଥୋଚିତ କାର୍ଯ୍ୟାନୁଷ୍ଠାନ ପରିସର ମଧ୍ୟରେ ଥିଲା । ଏହି ଉତ୍କଳସଭା ସଂଗଠନରୁ ପରବର୍ତ୍ତୀ ସମୟରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନଙ୍କର ଏକତ୍ରୀକରଣ ନିମିତ୍ତ 'ଉତ୍କଳ ସମ୍ମିଳନୀ' ଜନ୍ମ ଲାଭ କରିଥିଲା । ଏହି ସଂଗଠନ ମାଧ୍ୟମରେ ଓଡ଼ିଶାର ରାଜନୈତିକ ଜୀବନ ଗଢ଼ିଉଠିଥିଲା ।

ଲର୍ଡ ରିପନ୍‌ଙ୍କ ସ୍ୱାୟତ୍ତଶାସନ ଆଇନ୍ ଅନୁସାରେ ୧୮୮୪ ମସିହାରେ, କଟକ ମ୍ୟୁନିସିପାଲିଟିର ପ୍ରଥମ ନିର୍ବାଚନ ହୋଇଥିଲା । ଅଧିକାଂଶ ଭୋଟର

ଅମଲା କିମ୍ବା ଅମଲାଙ୍କ ପରିଚିତ ଲୋକ ଥିବାରୁ, ମଧୁବାବୁ ସେ ନିର୍ବାଚନରେ ହାରିଯାଇଥିଲେ। ମାତ୍ର ୧୮୮୭ ମସିହାରେ ସରକାର ତାଙ୍କୁ କଟକ ଲୋକାଲ୍ ବୋର୍ଡର ଚେୟାରମ୍ୟାନ୍ ରୂପେ ମନୋନୀତ କରିଥିଲେ। ପରେ ସେ କଟକ ଜିଲ୍ଲାବୋର୍ଡର ଭାଇସ୍-ଚେୟାରମ୍ୟାନ୍ ହୋଇଥିଲେ; ମାତ୍ର ୧୮୯୫ ମସିହାରେ ସମ୍ବଲପୁରର କଚେରିମାନଙ୍କରୁ ଓଡ଼ିଆ ଭାଷା ଉଠିଯିବା ହେତୁ ପ୍ରତିବାଦରେ ସେ ସେହି ପଦରୁ ଇସ୍ତଫା ଦେଇଥିଲେ। ୧୮୯୬ ମସିହାରୁ ୧୯୦୨ ମସିହା ପର୍ଯ୍ୟନ୍ତ ଛଅ ବର୍ଷ କାଳ ସେ ଓଡ଼ିଶାରୁ ବଙ୍ଗ ପ୍ରେସିଡେନ୍ସିର ଲେଜିସ୍ଲେଟିଭ୍ କାଉନ୍ସିଲର୍ ସଭ୍ୟ ହୋଇଥିଲେ। ସେତେବେଳେ ସୁରେନ୍ଦ୍ର ନାଥ ବାନାର୍ଜୀ ଏବଂ ଆଶୁତୋଷ ମୁଖାର୍ଜୀ ମଧ ସେ କାଉନ୍ସିଲର୍ ସଭ୍ୟ ଥିଲେ। ୧୮୯୭ ମସିହାରେ, ବଙ୍ଗଳା ଲେଜିସ୍ଲେଟିଭ୍ କାଉନ୍ସିଲର୍ ସଭ୍ୟ ଥିବା ସମୟରେ ସେ ବିଲାତ ଯାଇଥିଲେ। ବିଲାତ ଗଲାବେଳେ ଓଡ଼ିଶାର ବହୁ ତାରକସୀ ପଦାର୍ଥ ଏବଂ ଓଡ଼ିଶାର ରାଜନୈତିକ ଏବଂ ଅର୍ଥନୈତିକ ସମସ୍ୟାମାନ ବର୍ଣ୍ଣିତ ହୋଇଥିବା ଛାପା ପାମ୍ଫଲେଟ୍‌ରୁ ବହୁତ ସଙ୍ଗରେ ନେଇଥିଲେ। କାରଣ ଓଡ଼ିଶାର ବିଭିନ୍ନ ଅର୍ଥନୈତିକ ଓ ରାଜନୈତିକ ସମସ୍ୟା ବ୍ରିଟିଶ୍ ସରକାରଙ୍କ କ୍ଷମତାପନ୍ନ ବିଭିନ୍ନ ବ୍ୟକ୍ତିଙ୍କ ସଙ୍ଗରେ ଆଲୋଚନା କରିବା ତାଙ୍କର ଗୋଟିଏ ପ୍ରଧାନ ଉଦ୍ଦେଶ୍ୟ ଥିଲା।

ବିଲାତରେ ସେ ଏଲ୍.ଏମ୍.ଏସ୍. କଲେଜର ତାଙ୍କର ପୂର୍ବତନ ପ୍ରିନ୍ସପାଲ୍ ଜେ.ପି. ଆଷ୍ଟନ୍, ଓଡ଼ିଶାର ପୂର୍ବତନ କମିସନର ଟି.ଇ. ରେଭେନ୍ସ, ସାର୍ ଉଇଲିଅମ୍ ୱେଡରବର୍ଣ୍ଣ ଏବଂ ଭାରତର ତତ୍‌କାଳୀନ ସେକ୍ରେଟାରୀ ଅଫ୍ ଷ୍ଟେଟ୍ ସାର୍ ଜର୍ଜ ହାମିଲ୍‌ଟନ୍‌ଙ୍କୁ ଓଡ଼ିଶାର ଐତିହ୍ୟ, ଓଡ଼ିଶାର ତତ୍‌କାଳୀନ ଦରିଦ୍ର ଅବସ୍ଥା, ଓଡ଼ିଆ ଭାଷାର ଅବନତି, ଓଡ଼ିଆମାନଙ୍କର ବିଚ୍ଛିନ୍ନତା, ଓଡ଼ିଶାର ଶିଳ୍ପର ବିନାଶ ଓ କୃଷିର ଅନୁନ୍ନତ ଅବସ୍ଥା ଆଦି ବିଶଦ ଭାବରେ ବୁଝାଇଥିଲେ। ବ୍ରିଟିଶ୍ ଶାସକଗୋଷ୍ଠୀ, ପାର୍ଲିଆମେଣ୍ଟ୍ ସଭ୍ୟ ଏବଂ ସାମ୍ବାଦିକମାନଙ୍କୁ ଓଡ଼ିଶାର ଦୁର୍ଗତି ବିଷୟରେ ଅବଗତ କରିବା ପାଇଁ ସେ ସେମାନଙ୍କ ମଧରେ "A Brief Account of Orissa under British Administrations" ନାମରେ ଖଣ୍ଡିଏ ପୁସ୍ତିକା ବାଣ୍ଟିଥିଲେ। ବ୍ରିଟିଶ୍ ଶାସକମାନଙ୍କ ସୁବିଚାର ଉପରେ ତାଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲା।

୧୮୮୫ ମସିହାର ଡିସେମ୍ବର ମାସରେ ଭାରତୀୟ ଜାତୀୟ କଂଗ୍ରେସର ପ୍ରଥମ ଅଧିବେଶନ ବସିଥିଲା। ସେଥିରେ ଓଡ଼ିଶାରୁ କେହି ଯୋଗ ଦେଇ ନଥିଲେ। କାରଣ ସେତେବେଳେ ସୁରେନ୍ଦ୍ରନାଥ ବାନାର୍ଜୀଙ୍କ ଭାରତସଭାର ଅଧିବେଶନ କଲିକତାରେ ଅନୁଷ୍ଠିତ ହେଉଥିବାରୁ, ସେଥିରେ ମଧୁବାବୁ ଓ

ଗୌରୀଶଙ୍କରବାବୁ ପ୍ରଭୃତି ଯୋଗଦେଇଥିଲେ । ମାତ୍ର କଂଗ୍ରେସ ଅଧିବେଶନ ପରେ, ସେଥିରେ ଗୃହୀତ ହୋଇଥିବା ପ୍ରସ୍ତାବମାନ ପ୍ରିଣ୍ଟିଂ କମ୍ପାନୀ କୋଠାରେ ମଧୁବାବୁଙ୍କ ସଭାପତିତ୍ୱରେ ଗୋଟିଏ ସଭାରେ ଆଲୋଚିତ ହୋଇଥିଲା । ତାହାପରେ ୧୮୮୬ ମସିହାରୁ ୧୯୦୨ ମସିହା ପର୍ଯ୍ୟନ୍ତ ମଧୁବାବୁ ନିୟମିତ ଭାବରେ ଉତ୍କଳସଭା ପକ୍ଷରୁ କଂଗ୍ରେସ ଅଧିବେଶନମାନଙ୍କରେ ଯୋଗଦେଇଥିଲେ । ଓଡ଼ିଶାରେ ସେ କଂଗ୍ରେସ ଅନୁଷ୍ଠାନର ପ୍ରଥମ ସଂଗଠକ ଥିଲେ । ୧୯୦୨ ମସିହାରେ ଭାରତୀୟ ଜାତୀୟ କଂଗ୍ରେସରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନଙ୍କର ଏକତ୍ରୀକରଣ ପ୍ରସ୍ତାବ ଗ୍ରହଣ ସମ୍ଭବ ନହେବାରୁ ସେ କଂଗ୍ରେସ ଛାଡ଼ିଲେ; କାରଣ ଓଡ଼ିଶାର ସମସ୍ୟା ଓ ସଂକଟ ସର୍ବଦା ତାଙ୍କ ରାଜନୈତିକ ଚିନ୍ତା ଓ କାର୍ଯ୍ୟକ୍ରମର କେନ୍ଦ୍ରବିନ୍ଦୁ ଥିଲା । ଜାତୀୟ କଂଗ୍ରେସ ମାଧ୍ୟମରେ ଓଡ଼ିଶାର ସମସ୍ୟାମାନ ସମାଧାନ ହେବା ସମ୍ଭବ ନହେବାରୁ ସେ କଂଗ୍ରେସ ତ୍ୟାଗକରିଥିଲେ ।

ଓଡ଼ିଆମାନଙ୍କର ଦୁଃସ୍ଥ ଓ ହୀନମାନ ଅବସ୍ଥା ଦେଖି କଟକରେ ସାଧାରଣ ଓ ରାଜନୈତିକ ଜୀବନ ଆରମ୍ଭର ବହୁ ପୂର୍ବରୁ ମଧୁବାବୁ ଚିନ୍ତା କରିଥିଲେ ଯେ ଦାରିଦ୍ର୍ୟହିଁ ଓଡ଼ିଶାର ଜନସାଧାରଣଙ୍କର ଦୁଃସ୍ଥ ଅବସ୍ଥାର ମୂଳ କାରଣ । ପୁରାକାଳରୁ କୁଟୀରଶିଳ୍ପ ମାଧ୍ୟମରେ ଓଡ଼ିଶାର ଗ୍ରାମବାସୀ କାମଧନ୍ଦା ପାଉଥିଲେ । ବ୍ରିଟିଶ୍ ଶାସନ ସମୟରେ ସେ କୁଟୀରଶିଳ୍ପସବୁ ଲୋପ ପାଇଯାଉଥିବାରୁ ଲୋକମାନେ ବେକାର ହୋଇ ଦରିଦ୍ର ହୋଇଯାଉଥିଲେ । କୁଟୀରଶିଳ୍ପମାନଙ୍କର ପୁନରୁଦ୍ଧାର କରି ଲୋକମାନଙ୍କୁ କାମଧନ୍ଦା ଯୋଗାଇ ନ ଦେଲେ ସେମାନଙ୍କ ଦରିଦ୍ର ଅବସ୍ଥାର ଉନ୍ନତି ହୋଇ ପାରିବ ନାହିଁ ବୋଲି ଭାବି ସେ ଓଡ଼ିଶାରେ କୁଟୀରଶିଳ୍ପର ପୁନରୁଦ୍ଧାର ପାଇଁ ଯତ୍ନବାନ୍ ହେଲେ । ୧୮୯୭ ମସିହାରେ ବିଲାତ ଯିବାର ସାତ-ଆଠ ବର୍ଷ ଆଗରୁ ସେ ଓଡ଼ିଶାର ଆର୍ଥିକ ଓ ସାମାଜିକ ଉନ୍ନତି ପାଇଁ ଉତ୍କଳ ହିତକର ମିଳନ ନାମରେ ଗୋଟିଏ ସଂସ୍ଥା ଗଢ଼ିଥିଲେ । ଓଡ଼ିଶାର ଲୋକମାନଙ୍କୁ ବିଭିନ୍ନ କାରିଗରୀ କାମରେ ତାଲିମ ଦେବା ପାଇଁ, ସେ ତାଙ୍କ ଘରର ହତା ମଧ୍ୟରେ ଓଡ଼ିଆ ଆର୍ଟ ଓ୍ୟାର୍ସ (Orissa Art Wares) ନାମରେ ଗୋଟିଏ ସଂସ୍ଥା ପ୍ରତିଷ୍ଠିତ କରିଥିଲେ । ସେଠାରେ ମୁଖ୍ୟତଃ ରୁପାର ତାରକସୀ କାମସବୁ ହେଉଥିଲା । ସେହି ସଂସ୍ଥା ସଙ୍ଗରେ ଗୋଟିଏ ଆର୍ଟ ସ୍କୁଲ୍ ଥିଲା । ସେଥିରେ ତାରକସୀ, ଶିଂଘ, ହାତୀଦାନ୍ତ, ବେତ, ବାଉଁଶ ଓ ଚମଡ଼ା ପ୍ରଭୃତିରେ ବିଭିନ୍ନ ପ୍ରକାର ସୁରୁଚିସମ୍ପନ୍ନ ପଦାର୍ଥ ତିଆରି କରିବା ପାଇଁ କାରିଗରମାନଙ୍କୁ ଶିକ୍ଷାଦିଆଯାଉଥିଲା ।

ବିଲାତରେ ସେ ଶ୍ରମିକମାନଙ୍କ ମର୍ଯ୍ୟାଦା ଏବଂ ଯୌଥ କାରବାରର ସୁବିଧା ନିରୀକ୍ଷଣ କରିଥିଲେ । ସେଥିରେ ପ୍ରଭାବିତ ହୋଇ ୧୯୦୦ ମସିହାରେ

ଓଡ଼ିଶାରେ ଶିଳ୍ପର ପ୍ରସାର ଓ ଉନ୍ନତି ପାଇଁ 'ଶିଳ୍ପୋନ୍ନତି ସଭା' ନାମରେ ଗୋଟିଏ ଅନୁଷ୍ଠାନ ସ୍ଥାପନ କରିଥିଲେ। ୧୯୦୩ ମସିହାରେ **ଉତ୍କଳ ସମ୍ମିଳନୀର** ପ୍ରଥମ ଅଧିବେଶନ ଏବଂ ତାହାପରେ ଦ୍ୱିତୀୟ ଅଧିବେଶନରେ ଓଡ଼ିଶାରେ ଚମଡ଼ା ଶିଳ୍ପର ବିକାଶ ପାଇଁ ପ୍ରସ୍ତାବମାନ ଗୃହୀତ ହୋଇଥିଲା ଏବଂ ସେଥିପାଇଁ ଗୋଟିଏ କମିଟି ଗଠିତ ହୋଇଥିଲା। ୧୯୦୫-୦୬ ମସିହାରେ ମଧୁବାବୁ ବର୍ତ୍ତମାନର ରେଭେନ୍‌ସା କଲେଜ ପାଖରେ ଥିବା ତାଙ୍କର ୩୭ ଏକର ଜମିରେ ଗୋଟିଏ ଚମଡ଼ା କସିବା କାରଖାନା ବା 'ଉତ୍କଳ ଟାନେରୀ' ଆରମ୍ଭ କଲେ। ଏହି ଉତ୍କଳ ଟାନେରୀରେ, ପରବର୍ତ୍ତୀ ଦୁଇ ଦଶନ୍ଧିରେ, ସେ ବହୁ ସମୟ, ଅର୍ଥ ଏବଂ ଶ୍ରମ ନିୟୋଜିତ କଲେ। ଏହା ଭାରତର ବିଭିନ୍ନ ଅଞ୍ଚଳରେ ସୁଖ୍ୟାତି ଲାଭ କରିଥିଲା। ଓଡ଼ିଶାର ଶିଳ୍ପୋନ୍ନତି ନିମିତ୍ତ ଏହି କାରଖାନାକୁ ଓଡ଼ିଶାର ଅର୍ଥନୈତିକ ସ୍ୱାଭିମାନର ପ୍ରତୀକରୂପେ ପ୍ରତିଷ୍ଠିତ କରିବାକୁ ମଧୁବାବୁ ଉଦ୍ୟମ କରିଥିଲେ। ମାତ୍ର ୧୯୨୫-୨୬ ମସିହା ବେଳକୁ ଏହି କାରଖାନାର ପ୍ରଚୁର କ୍ଷତି ହୋଇଥିଲା। ଏହାକୁ ଗୋଟିଏ ଲାଭଜନକ ଯୌଥ କମ୍ପାନୀରେ ପରିଣତ କରିବା ପାଇଁ ମଧୁବାବୁ ବହୁ ଚେଷ୍ଟା କରିଥିଲେ। ସେଥିନିମିତ୍ତ ମଧ୍ୟ ସେ ଭାରତୀୟ ଜାତୀୟ କଂଗ୍ରେସ ଓ ମହାତ୍ମା ଗାନ୍ଧିଙ୍କର ସହାୟତା ପାଇବାକୁ ଉଦ୍ୟମ କରିଥିଲେ। ମାତ୍ର ସେ ଉଦ୍ୟମ ସଫଳ ହୋଇନଥିଲା। ୧୯୨୬ ମସିହା ବେଳକୁ କ୍ଷତି ହେତୁ ଏ କାରଖାନା ବନ୍ଦ ହୋଇଯାଇଥିଲା ଏବଂ ୧୯୨୬ ମସିହାରେ ଦେଣା ହେତୁ ସେ କାରଖାନା ନିଲାମ ହୋଇଯାଇଥିଲା। ଏହି କାରଖାନା ମଧୁବାବୁଙ୍କ ଆର୍ଥିକ ଦୁର୍ଗତିର ପ୍ରଧାନ କାରଣ ଥିଲା। ଓଡ଼ିଶା ଆର୍ଟ ଓୟାର୍ସ, ଉତ୍କଳ ଟାନେରୀ ପ୍ରଭୃତି ବୈଷୟିକ ସଂସ୍ଥା ଓଡ଼ିଶାର ଶିଳ୍ପୋନ୍ନତି ଓ ଓଡ଼ିଶା କାରିଗରଙ୍କୁ ତାଲିମ୍ ଦେବା ପାଇଁ ଉଦ୍ଦିଷ୍ଟ ଥିଲା। ମଧୁବାବୁଙ୍କ ଓକିଲାତି ବ୍ୟବସାୟ ଏବଂ ସେଥିରୁ ଧନ ଉପାର୍ଜନ ସହିତ ସେଗୁଡ଼ିକର କିଛି ସମ୍ବନ୍ଧ ନଥିଲା। ୧୯୦୫ ମସିହାରେ ଭାରତର ସ୍ୱଦେଶୀ ଆନ୍ଦୋଳନର ବହୁ ପୂର୍ବରୁ ମଧୁବାବୁ ଏ ଦିଗରେ ଧ୍ୟାନ ଦେଇଥିଲେ। ମାତ୍ର ଏସବୁ କାର୍ଯ୍ୟ ବିଫଳ ହୋଇଯିବାରୁ, ତାଙ୍କର ଆର୍ଥିକ ଦୁର୍ଗତି ଘଟିଲା ଏବଂ ଶେଷରେ ସବୁ ସମ୍ପତ୍ତି ହରାଇ ସେ ଦେବାଳିଆ ହୋଇଗଲେ।

୧୮୯୫ ମସିହାରେ ସମ୍ବଲପୁର ଜିଲ୍ଲାର କୋର୍ଟ-କଚେରିରୁ ଓଡ଼ିଆ ଭାଷା ଉଠିଯିବାବେଳେ ଲର୍ଡ ଏଲ୍‌ଗିନ୍ ଭାରତର ବଡ଼ଲାଟ୍ ଥିଲେ। ସେ କଚେରିମାନଙ୍କରୁ ଓଡ଼ିଆ ଭାଷା ଉଠିଯିବା ବିରୁଦ୍ଧରେ ଉତ୍କଳସଭାରେ ପ୍ରସ୍ତାବ ଗୃହୀତ ହୋଇଥିଲା ଏବଂ ସଭା ତରଫରୁ ମଧୁବାବୁଙ୍କଦ୍ୱାରା ପ୍ରସ୍ତୁତ ସ୍ମାରକପତ୍ର ବଡ଼ଲାଟ୍‌ଙ୍କ ପାଖକୁ ପଠାହୋଇଥିଲା। ସେହିଦିନଠାରୁ ଓଡ଼ିଆ ଭାଷାର ପୁନଃ ପ୍ରଚଳନ ନିମିତ୍ତ

ସମ୍ବଲପୁରବାସୀ ଆନ୍ଦୋଳନ କରୁଥିଲେ। ମାତ୍ର ଲର୍ଡ ଏଲ୍‌ଗିନ୍ ବଡ଼ଲାଟ୍ ଥିବା ପର୍ଯ୍ୟନ୍ତ ଏ ଆନ୍ଦୋଳନର କୌଣସି ସୁଫଳ ହୋଇନଥିଲା। ୧୮୯୭ ମସିହାରେ ମଧୁବାବୁ ବିଲାତରେ ଥିବାବେଳେ ଶୁଣିଆସିଥିଲେ ଯେ ଲର୍ଡ ଏଲ୍‌ଗିନ୍‌ଙ୍କ ପରେ ଲର୍ଡ କର୍ଜନ୍ ଭାରତର ବଡ଼ଲାଟ୍ ହେବେ। ୧୮୯୯ ମସିହା ଜାନୁଆରୀ ମାସରେ ଲର୍ଡ କର୍ଜନ୍ ଭାରତର ବଡ଼ଲାଟ୍ ହେଲେ। ତାଙ୍କର ଭାରତର ଇତିହାସ ଏବଂ ଭାରତବର୍ଷର ବିଭିନ୍ନ ଅଞ୍ଚଳରେ ଥିବା ପୁରାତନ ସ୍ଥାପତ୍ୟ କୀର୍ତ୍ତିମାନ ଦେଖିବା ଏବଂ ସେ ବିଷୟରେ ଅନୁଶୀଳନ କରିବା ପାଇଁ ବିଶେଷ ଶ୍ରଦ୍ଧା ଥିଲା। ବଡ଼ଲାଟ୍ ହୋଇ ଆସିବାର ପରବର୍ଷ ୧୯୦୦ ମସିହାରେ କର୍ଜନ୍ ଓଡ଼ିଶା ପରିଦର୍ଶନରେ ଆସିଥିଲେ ଏବଂ ସେ ବର୍ଷ ଡିସେମ୍ବର ୧୬ ତାରିଖରେ ପୁରୀ ମନ୍ଦିର ଦର୍ଶନ କରିଥିଲେ। ସେଠାରେ ଅଭିନନ୍ଦନପତ୍ର ପଠିତ ହେବା ପରେ ଗୋଟିଏ ତାରକସୀ ନିର୍ମିତ କାସ୍କେଟ୍ ତାଙ୍କ ହସ୍ତରେ ଅର୍ପିତ ହୋଇଥିଲା। ସେହି ତାରକସୀ କାମର ନୈପୁଣ୍ୟ ଦେଖି ସେ ମୁଗ୍ଧ ଓ ବିସ୍ମିତ ହୋଇଥିଲେ। ବଙ୍ଗ ପ୍ରେସିଡେନ୍‌ସିର ଲାଟ୍ ସାର୍ ଉଡ୍‌ବର୍ଣ୍ଣ ମଧୁବାବୁଙ୍କୁ କର୍ଜନ୍‌ଙ୍କ ସହିତ ପରିଚିତ କରାଇ କହିଥିଲେ ଯେ, ତାଙ୍କଦ୍ୱାରା ସ୍ଥାପିତ ଓଡ଼ିଶା ଆର୍ଟ ଓ୍ୱାର୍ସରେ ସେ କାସ୍କେଟ୍‌ଟି ନିର୍ମିତ ହୋଇଥିଲା। ଏଇ ତାରକସୀ କାସ୍କେଟ୍‌ଟିର ଉପହାରଦ୍ୱାରା କର୍ଜନ୍‌ଙ୍କ ହୃଦୟରେ ଓଡ଼ିଶା ପ୍ରତି କିଞ୍ଚିତ୍ ସମବେଦନା ଉଦିତ ହୋଇଥିଲା।

ତା'ପରେ କର୍ଜନ୍ ଭୁବନେଶ୍ୱର ମନ୍ଦିର ଦେଖିଲେ। ମଧୁସୂଦନ ସେଠାରେ ଉପସ୍ଥିତ ରହି ତାଙ୍କୁ ଭୁବନେଶ୍ୱର ମନ୍ଦିରର ଇତିହାସ ବିଶଦଭାବରେ ବୁଝାଇଥିଲେ ଏବଂ ତତ୍‌କାଳୀନ ଓଡ଼ିଆ ଶିଳ୍ପୀମାନଙ୍କର ଦୁଃସ୍ଥ ଅବସ୍ଥା ତାଙ୍କୁ କହିଥିଲେ। କର୍ଜନ୍ ମାନ୍ଦ୍ରାଜ ଆଡୁ ଚିଲିକା କୂଳରେ ବଡ଼କୂଳ ପର୍ଯ୍ୟନ୍ତ ଆସି ସେଠାରେ କିଛି ସମୟ ଅବସ୍ଥାନ କରି ସିଧା ଜାହାଜରେ ପୁରୀ ଆସିଥିଲେ। ଫେରିଲାବେଳେ କଟକ ରେଳଷ୍ଟେସନବାଟେ ସ୍ପେଶାଲ ଟ୍ରେନ୍‌ରେ କଲିକତା ଫେରିଯାଇଥିଲେ। ୧୯୦୦ ମସିହାରେ କଲିକତା ଓ ମାନ୍ଦ୍ରାଜ୍ ମଧ୍ୟରେ ରେଳ ଚଳାଚଳ ଆରମ୍ଭ ହେବା ପୂର୍ବରୁ କଲିକତାର ଇଂରେଜ ଶାସକମାନେ କ୍ୱଚିତ୍ ଓଡ଼ିଶା ଆସୁଥିଲେ। ଊନବିଂଶ ଶତାବ୍ଦୀର ଶେଷ ଆଡ଼କୁ ପ୍ରାୟ ବର୍ଷକୁ ଥରେ ବଙ୍ଗ ପ୍ରେସିଡେନ୍‌ସିର ଗଭର୍ଣ୍ଣର ଷ୍ଟିମର୍‌ରେ ଯୋବ୍ରା ଘାଟ ବାଟେ କଟକ ଆସୁଥିଲେ।

ମଧୁବାବୁ ଦୁଇଗୋଟି ଉଦ୍ଦେଶ୍ୟ ସାଧନ କରିବା ପାଇଁ କର୍ଜନ୍‌ଙ୍କର ସାନ୍ନିଧ ଓ ସମବେଦନା ଲାଭକରିବାକୁ ଚାହୁଁଥିଲେ। ପ୍ରଥମ ଓ ସର୍ବପ୍ରଧାନ ଉଦ୍ଦେଶ୍ୟ ଥିଲା ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନଙ୍କୁ ଏକତ୍ର କରି ଏକଶାସନାଧୀନରେ ରଖିବା ଏବଂ ଦ୍ୱିତୀୟରେ ସମ୍ବଲପୁର କୋର୍ଟ-କଚେରିରୁ ଉଠିଯାଇଥିବା ଓଡ଼ିଆ ଭାଷାକୁ ସେଠାରେ ପୁନଃ ପ୍ରଚଳିତ କରିବା। କର୍ଜନ୍ ବଡ଼ଲାଟ୍ ହେବା ପୂର୍ବରୁ

ସମ୍ବଲପୁରବାସୀ କୋର୍ଟ-କଚେରିରେ ଓଡ଼ିଆଭାଷା ପୁନଃ ପ୍ରଚଳନ କରିବା ପାଇଁ ଆନ୍ଦୋଳନ କରୁଥିଲେ ଏବଂ ଉତ୍କଳସଭା ପକ୍ଷରୁ ସେଥିପାଇଁ ବଡ଼ଲାଟ୍ ଲର୍ଡ ଏଲ୍ଗିନ୍ଙ୍କୁ ସ୍ମାରକପତ୍ର ଦିଆଯାଇଥିଲା । କର୍ଜନ ବଡ଼ଲାଟ୍ ହେବା ପରେ ୧୯୦୧ ମସିହାରେ ସମ୍ବଲପୁରରୁ ଶ୍ରୀ ବିହାରୀ ଦାସ ଓ ବ୍ରଜମୋହନ ପଟ୍ଟନାୟକ ପ୍ରଭୃତି ସେ ଉଦ୍ଦେଶ୍ୟରେ ଗୋଟିଏ ପ୍ରତିନିଧି ଦଳରେ ଲର୍ଡ କର୍ଜନ୍ଙ୍କୁ ଭେଟିବାକୁ ସିମଲା ଯାଇଥିଲେ । ସେମାନେ କର୍ଜନଙ୍କୁ ଭେଟିପାରିନଥିଲେ । କେବଳ ମଧ୍ୟପ୍ରଦେଶର ତତ୍କାଳୀନ ଚିଫ୍ କମିସନର ସାର୍ ଆଣ୍ଡ୍ରୁ ଫ୍ରେଜରଙ୍କଠାରୁ ଓଡ଼ିଆ ଭାଷାର ପୁନଃ ପ୍ରଚଳନର ପ୍ରତିଶ୍ରୁତି ପାଇ ଫେରିଆସିଥିଲେ । ତାହାପରେ ମଧୁବାବୁ ଲର୍ଡ କର୍ଜନ୍ଙ୍କୁ ଭେଟି ସମ୍ବଲପୁରର କୋର୍ଟ-କଚେରୀ ଓ ବିଦ୍ୟାଳୟମାନଙ୍କରେ ଓଡ଼ିଆ ଭାଷାର ପୁନଃ ପ୍ରଚଳନ ଏବଂ ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକଶାସନାଧୀନରେ ରଖିବାକୁ ନିବେଦନ କରିଥିଲେ । ଫ୍ରେଜର୍ ସାହେବଙ୍କ ସୁପାରିସ୍କ୍ରମେ ୧୯୦୨ ମସିହାରେ ସମ୍ବଲପୁର ଜିଲ୍ଲାର କୋର୍ଟ-କଚେରିରେ ଓଡ଼ିଆ ଭାଷାର ପୁନଃ ପ୍ରଚଳନ ଘୋଷଣା ପ୍ରକାଶପାଇଲା ଏବଂ ବହୁଦିନ ଆନ୍ଦୋଳନ ଫଳରେ ୧୯୦୫ ମସିହାରେ ଭାରତର ବୃହତ୍ତର ଶାସନ ପୁନର୍ଗଠନ ସମୟରେ ସମ୍ବଲପୁର ବଙ୍ଗ ପ୍ରେସିଡେନ୍ସିର ଓଡ଼ିଶା ଡିଭିଜନ୍ରେ ମିଶିଥିଲା ।

୧୯୦୩ ମସିହାରେ ଭାରତସରକାରଙ୍କ ଘରୋଇ ବିଭାଗ ସଚିବ ରିସ୍ଲେ ସାହେବଙ୍କ ସ୍ୱାକ୍ଷରରେ ଓଡ଼ିଶା ଡିଭିଜନ୍‌ର ପୁନର୍ଗଠନ ବିଷୟରେ ଗୋଟିଏ ସାର୍କୁଲାର୍ ପ୍ରକାଶିତ ହୋଇଥିଲା । ସେଥିରେ ସମ୍ବଲପୁର ଏବଂ ମଧ୍ୟପ୍ରଦେଶ ଅଧୀନରେ ଥିବା କେତେକ କରଦ ରାଜ୍ୟ, ବଙ୍ଗଳା ଅଧୀନରେ ଥିବା ଛୋଟନାଗପୁର ଅନ୍ତଃପାତୀ ସିଂହଭୂମି ଜିଲ୍ଲାର ଏକ ଅଂଶ, ମାନ୍ଦ୍ରାଜରେ ଥିବା ଗଞ୍ଜାମ ଜିଲ୍ଲା, ଗଞ୍ଜାମ ଏଜେନ୍ସି ଅଞ୍ଚଳ ଏବଂ ବିଶାଖାପାଟଣାର ଏଜେନ୍ସି ଅଞ୍ଚଳ ମିଶିବାର ପ୍ରସ୍ତାବ ଥିଲା । ଓଡ଼ିଶାବାସୀ ଏ ସାର୍କୁଲାର୍ ପ୍ରକାଶ ପାଇବା ପରେ ଅତ୍ୟନ୍ତ ଖୁସି ହୋଇଥିଲେ । ମାତ୍ର ମଧୁବାବୁ ସେମାନଙ୍କୁ କହିଥିଲେ ଯେ, ଏ ସାର୍କୁଲାର୍ କେବଳ ଏକ ପ୍ରସ୍ତାବ । ବ୍ରିଟିଶ୍ ପାର୍ଲିଆମେଣ୍ଟର ଅନୁମୋଦନ ବିନା ଏହା କାର୍ଯ୍ୟକାରୀ ହୋଇପାରିବ ନାହିଁ । ସେଥିପାଇଁ ଉଦ୍ୟମ କରିବାପାଇଁ ସେ ଓଡ଼ିଶାବାସୀଙ୍କୁ ପରାମର୍ଶ ଦେଇଥିଲେ ।

୧୯୦୨ ମସିହାରେ ଭାରତର ଜାତୀୟ କଂଗ୍ରେସ ଅଧିବେଶନରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନଙ୍କର ଏକତ୍ରୀକରଣ ପ୍ରସ୍ତାବ ଗ୍ରହଣ ସମ୍ଭବ ନ ହେବାରୁ ମଧୁବାବୁ କଂଗ୍ରେସ ଛାଡ଼ିଥିଲେ । ୧୯୦୩ ମସିହାରେ, ଗଞ୍ଜାମ ଜାତୀୟ ସମିତିର ପ୍ରଥମ ଅଧିବେଶନରେ ଯୋଗଦେବାପାଇଁ ସେ ବ୍ରହ୍ମପୁର ଯାଇଥିଲେ । ତାଙ୍କ ସଙ୍ଗରେ ବିଶ୍ୱନାଥ କର, ନନ୍ଦକିଶୋର ବଳ ଏବଂ ଗୋପାଳଚନ୍ଦ୍ର ପ୍ରହରାଜ

ପ୍ରଭୃତି ମଧ୍ୟ ଯାଇଥିଲେ। ସେ ସମୟରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନଙ୍କୁ ଏକତ୍ର କରି ମଧ୍ୟପ୍ରଦେଶ ଅଧୀନରେ ରଖିବାକୁ ଗୋଟିଏ ପ୍ରସ୍ତାବ ଥିଲା। ଓଡ଼ିଶାରେ ବଙ୍ଗାଳୀମାନଙ୍କର ପ୍ରଭାବ ଏବଂ ସେମାନଙ୍କର ଓଡ଼ିଆମାନଙ୍କ ପ୍ରତି ତାଚ୍ଛଲ୍ୟ ବିରୁଦ୍ଧରେ ଓଡ଼ିଶାର ବହୁ ନେତୃସ୍ଥାନୀୟ ବ୍ୟକ୍ତି ଏ ପ୍ରସ୍ତାବ ସପକ୍ଷରେ ମତ ଦେଉଥିଲେ। ମାତ୍ର ମଧୁବାବୁ ଗୋଟିଏ ହାଇକୋର୍ଟ ଓ ଗୋଟିଏ ବିଶ୍ୱବିଦ୍ୟାଳୟ ଅଧୀନରେ ରହିବା ଉଦ୍ଦେଶ୍ୟରେ, ଓଡ଼ିଆ ଭାଷାଭାଷୀ ଅଞ୍ଚଳସବୁ ବଙ୍ଗ ପ୍ରେସିଡେନ୍‌ସି ଅଧୀନରେ ରହିବା ପାଇଁ ଦୃଢ଼ ମତ ପ୍ରକାଶ କରିଥିଲେ।

୧୯୦୩ ମସିହାରେ ସବୁ ଓଡ଼ିଆଭାଷାଭାଷୀ ଅଞ୍ଚଳର ପ୍ରତିନିଧିମାନଙ୍କୁ ନେଇ ଗୋଟିଏ ଜାତୀୟ ସମ୍ମିଳନୀ କଟକରେ ବସିବାର ପ୍ରସ୍ତାବ ହେଲା। ମଧୁବାବୁ ସମ୍ମିଳନୀର ମୁଖ୍ୟ ଉଦ୍ୟୋକ୍ତା ହେଲେ ଏବଂ ତାହାର ନାମ 'ଉତ୍କଳ ସମ୍ମିଳନୀ' ହେଲା। ୧୯୦୩ ମସିହା ବେଳକୁ ମଧୁବାବୁ ତାଙ୍କ ଯଶର ଶୀର୍ଷ ସ୍ଥାନ ଅଧିକାର କରିଥିଲେ ଏବଂ ଓଡ଼ିଶାର ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ଜୀବନର କେନ୍ଦ୍ରବିନ୍ଦୁ ଥିଲେ। ସବୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଗଣ୍ୟମାନ୍ୟ ବ୍ୟକ୍ତିମାନଙ୍କୁ ନେଇ ଓଡ଼ିଶାରେ ଗୋଟିଏ ଜାତୀୟ ସମ୍ମିଳନୀ ଗଠନ କରିବା ପାଇଁ ସେତେବେଳେ ତତ୍‌କାଳୀନ ଓଡ଼ିଶାର ସେ ସର୍ବଶ୍ରେଷ୍ଠ ଏବଂ ଅଦ୍ୱିତୀୟ ବ୍ୟକ୍ତିଥିଲେ। ତାଙ୍କ ବ୍ୟତୀତ ରାଜନୈତିକ, ସାଂସ୍କୃତିକ ଓ ସାମାଜିକ ଜୀବନର ସମସ୍ୟାମାନଙ୍କର ଅନୁଶୀଳନ ଏବଂ ସମାଧାନ ଅଚିନ୍ତନୀୟ ଥିଲା। ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ୧୯୦୩ ମସିହା ଡିସେମ୍ବର ୩୦।୩୧ ତାରିଖରେ କଟକରେ ଅନୁଷ୍ଠିତ ହୋଇଥିଲା। ସେ ସମ୍ମିଳନୀରେ ଗଡ଼ଜାତ ରାଜା, ଗଞ୍ଜାମ, ସମ୍ବଲପୁର, ସିଂହଭୂମି, କଟକ, ପୁରୀ, ବାଲେଶ୍ୱର ପ୍ରଭୃତି ପ୍ରାୟ ସବୁ ଅଞ୍ଚଳର ପ୍ରତିନିଧି ଥିଲେ ଏବଂ ସେଥିରେ ରାଜା, ମହାରାଜା, ଜମିଦାର, କବି, ଲେଖକ, ଜନନାୟକ ଓ କୃଷକ ପ୍ରଭୃତି ସବୁ ଶ୍ରେଣୀର ମୁଖ୍ୟ ବ୍ୟକ୍ତିମାନେ ଯୋଗଦେଇଥିଲେ। ସେଥିରେ ଉତ୍କଳର କବି ଓ ଲେଖକ ରାଧାନାଥ ରାୟ, ଫକୀରମୋହନ ସେନାପତି, ମଧୁସୂଦନ ରାଓ, ଗଙ୍ଗାଧର ମେହେର, ବିଶ୍ୱନାଥ କର, ଅଭିରାମ ଭଞ୍ଜ, ନନ୍ଦକିଶୋର ବଳ, ଗୋପାଳଚନ୍ଦ୍ର ପ୍ରହରାଜ, ମୟୂରଭଞ୍ଜ ତାଳଚେର କେନ୍ଦୁଝର ପ୍ରଭୃତି ଅଧିକାଂଶ କରଦ ରାଜ୍ୟର ରାଜା, ଖଲ୍ଲିକୋଟ୍, କନିକା ଓ ବୈକୁଣ୍ଠନାଥ ଦେ ପ୍ରଭୃତି ରାଜା ଓ ଜମିଦାର, ରାମନାରାୟଣ ମିଶ୍ର ଓ ବ୍ରଜମୋହନ ପଟ୍ଟନାୟକ ପ୍ରଭୃତି ଓକିଲ ଏବଂ ଗୌନ୍ତିଆ, ଗୋପବନ୍ଧୁ ଦାସ ଓ ନୀଳକଣ୍ଠ ଦାସ ପ୍ରଭୃତି ସେ ସମୟର ଦେଶପ୍ରେମୀ ଯୁବନେତା ପ୍ରଭୃତି ସବୁ ଶ୍ରେଣୀର ନେତୃସ୍ଥାନୀୟ ବ୍ୟକ୍ତି ଯୋଗଦେଇଥିଲେ। ମୟୂରଭଞ୍ଜ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ଦେବ ସମ୍ମିଳନୀରେ ସଭାପତି ହୋଇଥିଲେ ଏବଂ ମଧୁବାବୁ ସମ୍ମିଳନୀର କେନ୍ଦ୍ରବିନ୍ଦୁ ଥିଲେ।

ସମ୍ମିଳନୀରେ ପ୍ରଥମେ ଓଡ଼ିଶାର ସର୍ବପ୍ରଧାନ ସମସ୍ୟା, ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନଙ୍କର ଏକତ୍ରୀକରଣ ବିଷୟ ଆଲୋଚିତ ହୋଇଥିଲା । ରିସ୍‌ଲେ ସାର୍କୁଲାର୍‌ରେ ବିଭିନ୍ନ ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନଙ୍କର ଏକତ୍ରୀକରଣ ପ୍ରସ୍ତାବ ହେତୁ ଲର୍ଡ କର୍ଜନ୍‌ଙ୍କୁ ଧନ୍ୟବାଦ ଦିଆଯାଇଥିଲା । ତା'ପରେ ଓଡ଼ିଶାର ଅର୍ଥନୈତିକ ଅଭିବୃଦ୍ଧି, ଶିଳ୍ପ ବିକାଶ, ଓଡ଼ିଆ ଭାଷା ଓ ସାହିତ୍ୟର ବିକାଶ, ଭାଷାଗତ ଓ ସାଂପ୍ରଦାୟିକ ଭେଦଭାବ ଲୋପକରି ସମସ୍ତ ଉତ୍କଳୀୟଙ୍କ ମଧ୍ୟରେ ଭ୍ରାତୃଭାବ ଜାଗରଣ ପାଇଁ ପ୍ରସ୍ତାବମାନ ଆଲୋଚିତ ହୋଇ ଗୃହୀତ ହୋଇଥିଲା ଏବଂ ପ୍ରତ୍ୟେକ ବିଷୟ ପାଇଁ ଅଭିଜ୍ଞ ଓ ଯୋଗ୍ୟ ବ୍ୟକ୍ତିମାନଙ୍କୁ ନେଇ ଗୋଟିଏ ଷ୍ଟାଣ୍ଡିଂ କମିଟି ଗଠନ କରାଯାଇଥିଲା । ସ୍ଥୂଳତଃ ସବୁ ଶ୍ରେଣୀର ଉତ୍କଳୀୟମାନଙ୍କୁ ଏକତ୍ର କରି ଓ ଓଡ଼ିଆମାନଙ୍କ ମଧ୍ୟରେ ଜାତୀୟତାଭାବ ଜାଗ୍ରତକରି, ସମସ୍ତ ଓଡ଼ିଆଭାଷାଭାଷୀ ଅଞ୍ଚଳ ଗୋଟିଏ ଶାସନ ଅଧୀନରେ ରଖିବା ଏବଂ ଉତ୍କଳୀୟମାନଙ୍କର ଅର୍ଥନୈତିକ, ସାମାଜିକ, ସାଂସ୍କୃତିକ ଓ ରାଜନୈତିକ ଉନ୍ନତି ସାଧନ କରିବା ଉତ୍କଳ ସମ୍ମିଳନୀର ଲକ୍ଷ୍ୟ ଥିଲା । ସେହି ଉଦ୍ଦେଶ୍ୟରେ ମଧୁବାବୁ ସେ ସମ୍ମିଳନୀ ଗଠନ କରିଥିଲେ ଏବଂ ସେହି ଉଦ୍ଦେଶ୍ୟ ସାଧନ ପାଇଁ ଉତ୍କଳବାସୀଙ୍କୁ ଆହ୍ୱାନ ଦେଇଥିଲେ –

''ଏହି ସମ୍ମିଳନୀ ଜାତିପ୍ରାଣ-ସିନ୍ଧୁ
କୋଟି ପ୍ରାଣବିନ୍ଦୁ ଧରେ
ତୋର ପ୍ରାଣବିନ୍ଦୁ ମିଶାଇଦେ ଭାଇ
ଡେଇଁପଡ଼ି ସିନ୍ଧୁ ନୀରେ
ଭୂମିକମ୍ପ ହେବ ଧରଣୀ ଫାଟିବ
ଉଠିବେ ସହସ୍ର-ଭୁଜା
ସେହି ତୋର ମାତା ସେହି ତୋର ଭ୍ରାତା
କର ସେହି ପାଦ ପୂଜା ।
ଗଙ୍ଗା ଗୋଦାବରୀ ଯମୁନା କାବେରୀ
ପୂଜା ପାଇ ନାନାଘାଟେ
ଛାଡ଼ି ନିଜ ମାନ ଲୋଡ଼ି ଜାତି ପ୍ରାଣ
ପ୍ରବେଶିଲେ ସିନ୍ଧୁତଟେ ।''

ଏପରି ଦେଶ ଓ ଜାତି ପ୍ରୀତି ଏବଂ ହୃଦୟସ୍ପର୍ଶୀ ଆହ୍ୱାନ ଓଡ଼ିଶା ଇତିହାସରେ ପ୍ରଥମ ଥିଲା । ପ୍ରଥମ ଉତ୍କଳ ସମ୍ମିଳନୀ ମଧୁବାବୁଙ୍କର ମହାନ୍ ଦେଶ ଓ ଜାତିପ୍ରେମ ଓ ସଂଗଠନ ଶକ୍ତିର ଜ୍ୱଳନ୍ତ ପ୍ରମାଣ ଦେଇଥିଲା ।

ମାତ୍ର ୧୯୦୩ ମସିହାର ପ୍ରଥମ ଉତ୍କଳ ସମ୍ମିଳନୀରେ ଯେଉଁ ଉଚ୍ଚ

ଆଶା ଓ ନବଜାଗରଣ ଜାଗ୍ରତ ହୋଇଥିଲା, ପରବର୍ତ୍ତୀ କେତେ ବର୍ଷରେ ତାହା ମଳିନ ପଡ଼ିଯାଇଥିଲା । ୧୯୦୪ ମସିହାରେ ଓଡ଼ିଶାର କେତେକ ନେତୃସ୍ଥାନୀୟ ବ୍ୟକ୍ତି ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ବଙ୍ଗ ପ୍ରଦେଶ ଅଧୀନରେ ନ ରହି ମଧ୍ୟପ୍ରଦେଶ ଅଧୀନରେ ରହୁ ବୋଲି ମତ ବ୍ୟକ୍ତ କରିଥିଲେ । ଅନ୍ୟ ଦିଗରେ ମଧୁବାବୁ ପ୍ରଭୃତି ସବୁ ଓଡ଼ିଆଭାଷାଭାଷୀ ଅଞ୍ଚଳ ବଙ୍ଗ ପ୍ରଦେଶ ଅଧୀନରେ ରହୁ ବୋଲି ମତ ପ୍ରକାଶ କରୁଥିଲେ । ମଧୁବାବୁଙ୍କ ଯୁକ୍ତି ଥିଲା ଯେ, ଓଡ଼ିଆଭାଷାଭାଷୀ ଅଞ୍ଚଳ ମଧ୍ୟପ୍ରଦେଶ ଅଧୀନରେ ରହିଲେ ଗଞ୍ଜାମ ଅଞ୍ଚଳ ଚିରକାଳ ମାନ୍ଦ୍ରାଜ ପ୍ରେସିଡେନ୍‌ସିରେ ରହିଯିବ । ସେତେବେଳେ ଓଡ଼ିଶାର ନେତାମାନେ ସ୍ୱତନ୍ତ୍ର ପ୍ରଦେଶ ଦାବିକରୁନଥିଲେ । ସେମାନେ କେବଳ ସବୁ ଓଡ଼ିଆଭାଷାଭାଷୀ ଅଞ୍ଚଳ ଗୋଟିଏ ଶାସନ ଅଧୀନରେ ରହିବାକୁ ଦାବିକରୁଥିଲେ ।

୧୯୦୪ ମସିହାର ନବବର୍ଷରେ ବ୍ରିଟିଶ୍ ସରକାର ମଧୁବାବୁଙ୍କୁ ସି.ଆଇ.ଇ. ଉପାଧି ଦେଇଥିଲେ । ମାତ୍ର ସେଥିପାଇଁ ତାଙ୍କର ସମାଲୋଚକମାନେ ତାଙ୍କୁ ରାଜାନୁଗତ ଓ ତୋଷାମଦକାରୀ ବୋଲି ଅପବାଦ ଦେବେ ବୋଲି ଆଶଙ୍କାକରି ସେ ବିଶେଷ ସୁଖୀ ନଥିଲେ । ୧୯୦୫ ମସିହାରେ ସମ୍ବଲପୁର ଜିଲ୍ଲା ଓଡ଼ିଶା ଡିଭିଜନ୍‌ରେ ମିଶିଲା; ମାତ୍ର ଗଞ୍ଜାମ ଜିଲ୍ଲା ଓ ଏଜେନ୍‌ସି ଅଞ୍ଚଳମାନ ଓଡ଼ିଶାରେ ମିଶିବା ପ୍ରସ୍ତାବକୁ ସେ ଅଞ୍ଚଳରେ ବାସକରୁଥିବା ପ୍ରଭାବଶାଳୀ ତେଲୁଗୁମାନେ ଏବଂ ମାନ୍ଦ୍ରାଜ ସରକାର ଘୋର ବିରୋଧ କରୁଥିଲେ । ସେଥିନିମିତ୍ତ ମଧୁବାବୁ ଅତ୍ୟନ୍ତ ଚିନ୍ତିତ ଥିଲେ । ଏହି ସମୟରେ ଉତ୍କଳ ସମ୍ମିଳନୀର ୧୯୦୩ ଓ ୧୯୦୪ ମସିହାର ପ୍ରସ୍ତାବମତେ ମଧୁବାବୁ ଓଡ଼ିଶାର ଶିଳ୍ପୋନ୍ନତି ଉପରେ ଅଧିକ ଗୁରୁତ୍ୱ ଦେଉଥିଲେ । ୧୯୦୫-୦୬ ମସିହାରେ ସେ ଉତ୍କଳ ଟାନେରୀ ଆରମ୍ଭ କରିଥିଲେ ଏବଂ ପରବର୍ତ୍ତୀ କୋଡ଼ିଏ ବର୍ଷ ସେଥିରେ ନିଜର ବହୁ ଅର୍ଥ ନିବେଶିତ କରିଥିଲେ ଏବଂ ନିଜେ ବହୁ ପରିଶ୍ରମ କରୁଥିଲେ ।

୧୯୦୫ ମସିହାରେ ଉତ୍କଳ ସମ୍ମିଳନୀର ତୃତୀୟ ଅଧିବେଶନ ବେଳକୁ କେତେକ ବ୍ୟକ୍ତି ମଧୁବାବୁଙ୍କ ଏକାଧିପତ୍ୟ ପାଇଁ ତାଙ୍କୁ କଟୁ ସମାଲୋଚନା କରିଥିଲେ । ସେଥିଯୋଗୁଁ ସେ ବ୍ୟଥିତ ହୋଇ ସମ୍ମିଳନୀରୁ ୧୯୧୨ ମସିହା ପର୍ଯ୍ୟନ୍ତ ଦୂରେଇ ରହିଥିଲେ । ଫଳରେ ସମ୍ମିଳନୀର ବାର୍ଷିକ ଅଧିବେଶନ ମାନ ନିୟମିତ ରୂପେ ପ୍ରତିବର୍ଷ ଡିସେମ୍ବର ମାସରେ ହୋଇପାରୁନଥିଲା । ୧୯୧୩ ମସିହାର ଅଧିବେଶନରେ ମଧୁବାବୁ ପୁଣି ସଭାପତି ହୋଇଥିଲେ । ୧୯୦୬ ମସିହାରେ ବଙ୍ଗଳା ଲେଜିସ୍ଲେଟିଭ୍ କାଉନ୍‌ସିଲ୍ ନିର୍ବାଚନରେ ସେ ହାରିଯାଇଥିଲେ । ୧୯୦୭ ମସିହା ଜୁଲାଇ ମାସରେ, ସେ ଦ୍ୱିତୀୟ ଥର ପାଇଁ ବିଲାତ ଯାଇଥିଲେ । ତାଙ୍କ ସଙ୍ଗରେ କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜ ଦେଓ ଯାଇଥିଲେ ।

ତା'ପୂର୍ବରୁ ଶାଢ଼ି ପିନ୍ଧି ବ୍ରିଟେନ୍‌ର ସମ୍ରାଟ୍ ଓ ସାମ୍ରାଜ୍ଞୀଙ୍କୁ ଭେଟିବାକୁ ମଧୁବାବୁଙ୍କ ପ୍ରେରଣାରେ ଶୈଳବାଳା ଜିଦ୍ କରି ସେଥିରେ ସଫଳ ହୋଇଥିଲେ। ଲଣ୍ଡନ୍‌ରେ ମଧୁବାବୁ ସେକ୍ରେଟାରୀ ଅଫ୍ ଷ୍ଟେଟ୍‌ସ ମର୍ଲି ସାହେବଙ୍କୁ ଭେଟି ଓଡ଼ିଶାର ବହୁ ସମସ୍ୟା ଆଲୋଚନା କରିଥିଲେ ଏବଂ ସମସ୍ତ ଓଡ଼ିଆଭାଷାଭାଷୀ ଅଞ୍ଚଳକୁ ଏକତ୍ର କରି ଏକ ଶାସନ ଅଧୀନରେ ରଖିବାକୁ ଅନୁରୋଧ କରିଥିଲେ। ଲଣ୍ଡନ୍‌ରେ ସେ ଗୋଟିଏ ସାମ୍ବାଦିକ ସମ୍ମିଳନୀ ଡକାଇ ସେଥିରେ ଓଡ଼ିଶାର ରାଜନୈତିକ ଓ ଅର୍ଥନୈତିକ ସମସ୍ୟାମାନ ଆଲୋଚନା କରିଥିଲେ ଏବଂ ବହୁ ପାର୍ଲିଆମେଣ୍ଟ୍ ସଭ୍ୟଙ୍କୁ ଭେଟିଥିଲେ। ତାଙ୍କ ନିମନ୍ତ୍ରଣରେ ସାମ୍ବାଦିକ ନାଭିନ୍‌ସନ ସାହେବ ଓଡ଼ିଶା ଆସି ବରୀ ଅଞ୍ଚଳର ବନ୍ୟାକ୍ଲିଷ୍ଟ ଅଞ୍ଚଳ ବୁଲି ଲୋକମାନଙ୍କର ଦୁଃସ୍ଥ ଅବସ୍ଥା ଦେଖିଥିଲେ ଏବଂ ଭାରତର ଓ ବିଲାତର ବିଭିନ୍ନ ସମ୍ବାଦପତ୍ରମାନଙ୍କୁ ରିପୋର୍ଟ ପଠାଇଥିଲେ। ସେଗୁଡ଼ିକ ବିଶଦଭାବରେ ଇଂଲଣ୍ଡ ଓ ଭାରତର ଖବରକାଗଜ-ମାନଙ୍କରେ ପ୍ରକାଶର ପ୍ରତିକ୍ରିୟାରେ ବଙ୍ଗଳାର ତତ୍କାଳୀନ ଗଭର୍ଣ୍ଣର ଆଣ୍ଡ୍ରୁ ଫ୍ରେଜର୍ ଓଡ଼ିଶାର ବନ୍ୟାକ୍ଲିଷ୍ଟ ଅଞ୍ଚଳମାନଙ୍କୁ ପରିଦର୍ଶନରେ ଆସିବାକୁ ବାଧହୋଇଥିଲେ।

୧୯୦୯ ମସିହାରେ ଭାରତବର୍ଷରେ 'ମର୍ଲି-ମିଣ୍ଟୋ ଶାସନ ସଂସ୍କାର' କାର୍ଯ୍ୟକାରୀ ହୋଇଥିଲା। ସେ ବର୍ଷ ମଧୁବାବୁ ଓଡ଼ିଶାର ଜିଲ୍ଲାବୋର୍ଡମାନଙ୍କ ତରଫରୁ ବଙ୍ଗଳା ଲେଜିସ୍ଲେଟିଭ୍ କାଉନ୍‌ସିଲ୍‌କୁ ନିର୍ବାଚିତ ହୋଇଥିଲେ। ୧୯୧୨ ମସିହାରେ ସେ କାଉନ୍‌ସିଲ୍‌ରେ ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନ୍ ବିଲ୍‌ର ଘୋର ବିରୋଧ କରିଥିଲେ। ତାଙ୍କ ବିରୋଧ ସତ୍ତ୍ୱେ କାଉନ୍‌ସିଲ୍‌ରେ ତାହା ପାସ୍ ହୋଇଥିଲା। କିନ୍ତୁ ମଧୁବାବୁଙ୍କ ଉଦ୍ୟମରେ ବଡ଼ଲାଟ୍ ଲର୍ଡ ହାର୍ଡିଞ୍ଜ ତାହାକୁ ଅନୁମୋଦନ ଦେଲେ ନାହିଁ। ୧୯୧୨ ମସିହା ଅପ୍ରେଲ୍ ମାସରେ ବିହାର-ଓଡ଼ିଶା ପ୍ରଦେଶ ଗଠିତ ହେଲା। ଓଡ଼ିଶାରେ ତାହା ବିରୁଦ୍ଧରେ କୌଣସି ଆନ୍ଦୋଳନ ହୋଇନଥିଲା କିମ୍ବା ସେ ବର୍ଷ ଅପ୍ରେଲ୍ ମାସରେ ହୋଇଥିବା ଉତ୍କଳ ସମ୍ମିଳନୀ ଅଧିବେଶନରେ ତାର ପ୍ରତିବାଦ କରାଯାଇନଥିଲା। ମଧୁବାବୁ କେବଳ ସମ୍ମିଳନୀରେ ସେ ବିଷୟରେ ଉଦ୍‌ବୋଧନ ଦେଇଥିଲେ। ୧୯୧୨ ମସିହାରେ ସେ ଗୋଟିଏ ପ୍ରଜାପ୍ରତିନିଧି ସଭା ଗଠନକରି ରାଷ୍ଟ୍ର-ସମ୍ପର୍କିତ ଜନଜୀବନର ବିଭିନ୍ନ ସମସ୍ୟାରେ ଗ୍ରାମାଞ୍ଚଳର ଲୋକମାନଙ୍କୁ ସଂଶ୍ଳିଷ୍ଟ କରିବାକୁ ଉଦ୍ୟମ କରିଥିଲେ। ସେହି ବର୍ଷ ସେ ଗଭର୍ଣ୍ଣରଙ୍କ ଦ୍ୱାରା ବିହାର-ଓଡ଼ିଶା ପ୍ରଦେଶର ଲେଜିସ୍ଲେଟିଭ୍ କାଉନସିଲ୍‌ର ସଭ୍ୟରୂପେ ମନୋନୀତ ହୋଇଥିଲେ। ସେହି ବର୍ଷ ନଭେମ୍ବର ମାସରେ ମଧ୍ୟ ସେ ଭାରତର ଇଂପିରିଆଲ୍ କାଉନ୍‌ସିଲ୍‌ରେ ଓଡ଼ିଶାର ପ୍ରତିନିଧି-ସଭ୍ୟରୂପେ ସରକାରଙ୍କଦ୍ୱାରା ମନୋନୀତ ହୋଇଥିଲେ ଏବଂ ୧୯୧୩ ମସିହାରୁ ୧୯୧୬ ମସିହା ପର୍ଯ୍ୟନ୍ତ ସେ କାଉନ୍‌ସିଲ୍‌ର ସଭ୍ୟ ଥିଲେ। ସେ କାଉନ୍‌ସିଲ୍‌ରେ ଓଡ଼ିଶାରେ

ନୂତନ ବନ୍ଦର ନିର୍ମାଣ ପ୍ରଭୃତି ଦାବିକରି ଓଡ଼ିଶାର ଅର୍ଥନୈତିକ, ସାଂସ୍କୃତିକ ଓ ରାଜନୈତିକ ବିକାଶ କରିବା ପାଇଁ ଉଦ୍ୟମ କରିଥିଲେ ।

୧୯୧୬ ମସିହାରେ, ଉତ୍କଳ ସମ୍ମିଳନୀର ଗୋଟିଏ ବିଶେଷ ଅଧିବେଶନର ସିଦ୍ଧାନ୍ତ ଅନୁସାରେ କଲିକତାରେ 'ମଣ୍ଟେଗୁ-ଚେମସ୍‌ଫୋର୍ଡ କମିଟି' ଆଗରେ ମଧୁବାବୁ ଓ କନିକା ରାଜା ସାକ୍ଷ୍ୟ ଦେବାକୁ ଯାଇଥିଲେ । କମିଟି ଆଗରେ ସେମାନେ ନିବେଦନ କରିଥିଲେ ଯେ, ସମସ୍ତ ଓଡ଼ିଆଭାଷାଭାଷୀ ଅଞ୍ଚଳକୁ ଏକତ୍ର କରି ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ କରାଯାଉ । ତାହା ସମ୍ଭବ ନହେଲେ ଅନ୍ତତଃପକ୍ଷେ ତାହାକୁ ଗୋଟିଏ ସବ୍‌ପ୍ରଭିନ୍‌ସ କରାଯାଉ । ସେତେବେଳେ ଭାଷାସୂତ୍ରରେ ପ୍ରଦେଶ ଗଠନ ନୀତିଗତ ଭାବରେ ମଣ୍ଟେଗୁ-ଚେମସ୍‌ଫୋର୍ଡ ରିପୋର୍ଟରେ ଅନୁମୋଦନ ଲାଭକରିଥିଲା । ମାତ୍ର ଭବିଷ୍ୟତରେ ପ୍ରାଦେଶିକ ସରକାରମାନେ ଜନମତ କଳନାକରି ସମୀଚୀନ ବ୍ୟବସ୍ଥା ଗ୍ରହଣ କରିବେ ବୋଲି ସୁପାରିସ୍ କରାଯାଇଥିଲା । ଓଡ଼ିଶାକୁ ଗୋଟିଏ ସବ୍‌ପ୍ରଭିନ୍‌ସ କରିବାକୁ ଯେତେ ଶୀଘ୍ର ସମ୍ଭବ ପଦକ୍ଷେପ ନେବାକୁ ସୁପାରିସ୍ କରାଯାଇଥିଲା ।

୧୯୧୯ ମସିହା ଅପ୍ରେଲ୍ ମାସରେ କଟକରେ ମ୍ୟୁନିସିପାଲିଟି ପଡ଼ିଆରେ ଉତ୍କଳ ସମ୍ମିଳନୀର ଚତୁର୍ଦ୍ଦଶ ଅଧିବେଶନରେ ପଣ୍ଡିତ ଗୋପବନ୍ଧୁ ଦାସ ସଭାପତି ହୋଇଥିଲେ । ସେହି ବର୍ଷ ଡିସେମ୍ବର ମାସରେ ପୁରୀଠାରେ ସମ୍ମିଳନୀର ପଞ୍ଚଦଶ ଅଧିବେଶନ ହୋଇଥିଲା । ସେଥିରେ ଚନ୍ଦ୍ରଶେଖର ବେହେରା ସଭାପତି ହୋଇଥିଲେ । ମଧୁବାବୁ ସେଥିରେ ଯୋଗଦେଇନଥିଲେ । ୧୯୨୦ ମସିହା ଡିସେମ୍ବର ମାସ ପ୍ରଥମ ସପ୍ତାହରେ ଚକ୍ରଧରପୁରଠାରେ ସମ୍ମିଳନୀର ଷୋଡ଼ଶ ଅଧିବେଶନ ହେବା ସ୍ଥିରହୋଇଥିଲା ଏବଂ ମଧୁବାବୁ ସେଥିରେ ସଭାପତି ହେବେ ବୋଲି ସ୍ୱୀକୃତି ଦେଇଥିଲେ । ମାତ୍ର ସେ ବର୍ଷ ଡିସେମ୍ବର ମାସ ଶେଷ ସପ୍ତାହରେ ନାଗପୁରଠାରେ କଂଗ୍ରେସ ଅଧିବେଶନ ବସୁଥିଲା । ମଧୁବାବୁଙ୍କ ସମ୍ମତି ନ ନେଇ ଗୋପବନ୍ଧୁବାବୁ ପ୍ରଭୃତି ଉତ୍କଳ ସମ୍ମିଳନୀ ଅଧିବେଶନର ତାରିଖ ଘୁଞ୍ଚାଇ ଦେଇଥିଲେ । ସେଥିଯୋଗୁଁ ମଧୁବାବୁ ସେଥିରେ ସଭାପତି ହେବାକୁ ରାଜି ହେଲେନାହିଁ; ତେଣୁ ଜଗବନ୍ଧୁ ସିଂହ ସେଥିରେ ସଭାପତି ହୋଇଥିଲେ । ୧୯୨୦ ମସିହାରୁ ଭାରତବର୍ଷରେ ଗାନ୍ଧିଯୁଗର ଆରମ୍ଭ ହୋଇଥିଲା । ଚକ୍ରଧରପୁର ଅଧିବେଶନରେ ଭାରତୀୟ ଜାତୀୟ କଂଗ୍ରେସର ଉଦ୍ଦେଶ୍ୟ ଓ ଆକାଂକ୍ଷା ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ ହେଉ ବୋଲି ଗୋପବନ୍ଧୁବାବୁ ପ୍ରସ୍ତାବ କରିଥିଲେ । ସମ୍ମିଳନୀରେ ସେ ପ୍ରସ୍ତାବ ବହୁ ଭୋଟରେ ଗୃହୀତ ହୋଇଥିଲା । ମଧୁବାବୁ କିନ୍ତୁ ସବୁବେଳେ ମତ ପ୍ରକାଶ କରୁଥିଲେ ଯେ, ଅସହଯୋଗ ଆଭିମୁଖ୍ୟ ମାଧ୍ୟମରେ ଓଡ଼ିଶା ସହଜରେ ସ୍ୱତନ୍ତ୍ର ପ୍ରଦେଶ ହୋଇପାରିବ ନାହିଁ । ବ୍ରିଟିଶ୍ ସରକାରଙ୍କ ନ୍ୟାୟ ବିଚାରରେ ତାଙ୍କର

ବିଶ୍ୱାସ ଥିଲା । ସେଥିଯୋଗୁଁ ସେ ଭାବୁଥିଲେ ବ୍ରିଟିଶ୍ ସରକାରଙ୍କ ସହିତ ସହଯୋଗ କରି ଯୁକ୍ତିଯୁକ୍ତ ଦାବି ଉପସ୍ଥାପନଦ୍ୱାରା ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ହୋଇପାରିବ ।

୧୯୨୧ ମସିହାରେ ମଣ୍ଟେଗୁ-ଚେମସ୍‌ଫୋର୍ଡ ଶାସନ-ସଂସ୍କାର ବ୍ୟବସ୍ଥା ଅନୁସାରେ ମଧୁବାବୁ ବିହାର-ଓଡ଼ିଶା ପ୍ରଦେଶର ସ୍ୱାୟତ୍ତଶାସନ, ଶିକ୍ଷା ଓ ସ୍ୱାସ୍ଥ୍ୟ ବିଭାଗର ମନ୍ତ୍ରୀ ହେଲେ । ସେତେବେଳେ କଂଗ୍ରେସ ନେତୃତ୍ୱରେ ଭାରତ ସବୁ ପ୍ରଦେଶରେ ଅସହଯୋଗ ଆନ୍ଦୋଳନ ଚାଲିଥାଏ । ସୁତରାଂ ଓଡ଼ିଶାର କଂଗ୍ରେସ ଲୋକମାନେ ମଧୁବାବୁଙ୍କ ମନ୍ତ୍ରୀପଦ ଗ୍ରହଣକୁ ବିରୋଧ କଲେ । ନବବାବୁ ପ୍ରଭୃତି ସେ ସମୟର ତରୁଣ କଂଗ୍ରେସ ନେତାମାନେ ମଧୁବାବୁଙ୍କ କୁଶପୁତ୍ତଳିକା ଦାହ କରିଥିଲେ । କିନ୍ତୁ ଓଡ଼ିଆଭାଷାଭାଷୀ ଅଞ୍ଚଳମାନଙ୍କର ଏକତ୍ରୀକରଣ ଏବଂ ଓଡ଼ିଶାବାସୀଙ୍କ ଦୁର୍ଦ୍ଦଶାମୋଚନ ମଧୁବାବୁଙ୍କ ମନ୍ତ୍ରୀ ହେବାର ପ୍ରଧାନ ଉଦ୍ଦେଶ୍ୟ ଥିଲା । ମନ୍ତ୍ରୀମାନଙ୍କର ଦରମା କାଟ ପାଇଁ ସମ୍ବାଦପତ୍ରମାନଙ୍କରେ ଆଲୋଚନା ପରେ ଅବୈତନିକ ମନ୍ତ୍ରୀପଦ ଏବଂ ନିଜର ଓକିଲାତି ବ୍ୟବସାୟ ସହିତ ମନ୍ତ୍ରୀଙ୍କ କାର୍ଯ୍ୟ ପରିଚାଳନା ନିମିତ୍ତ ମଧୁବାବୁଙ୍କ ପ୍ରସ୍ତାବ ପ୍ରଦେଶର ଗଭର୍ଣ୍ଣର ଅଗ୍ରାହ୍ୟ କଲେ । ମଧୁବାବୁ ୧୯୨୩ ମସିହାରେ ମନ୍ତ୍ରୀ ପଦରୁ ଇସ୍ତଫା ଦେଲେ । ଓଡ଼ିଆମାନଙ୍କ ମଧ୍ୟରେ ମନ୍ତ୍ରୀ ହେବା ଏବଂ ମନ୍ତ୍ରୀପଦରୁ ଇସ୍ତଫା ଦେବାରେ ମଧୁବାବୁ ପ୍ରଥମ ଥିଲେ । ସେହି ସମୟରେ ସୁଧାଂଶୁବାଳା ହାଜରାଙ୍କୁ ଓକିଲାତି ବ୍ୟବସାୟରେ ଯୋଗଦେବାକୁ ମଧୁବାବୁ ପରାମର୍ଶ ଦେଇଥିଲେ । ମାତ୍ର ଆଇନ୍ ଅନୁସାରେ ନାରୀମାନେ ସେତେବେଳେ କଚେରିରେ ଓକିଲାତି କରିପାରୁନଥିଲେ । ମଧୁବାବୁ ତା ବିରୁଦ୍ଧରେ ମକଦ୍ଦମା କଲେ । ଶେଷରେ କେନ୍ଦ୍ର ଲେଜିସ୍ଲେଟିଭ୍ କାଉନ୍‌ସିଲ୍‌ରେ ନାରୀମାନେ କୋର୍ଟରେ ଓକିଲାତି କରିବା ସପକ୍ଷରେ ପ୍ରସ୍ତାବ ଗୃହୀତ ହେଲା ଏବଂ ମଧୁବାବୁଙ୍କ ଅପିଲ୍ ମକଦ୍ଦମା ପ୍ରିଭି କାଉନ୍‌ସିଲ୍‌ରେ ମଞ୍ଜୁର ହେଲା । ମକଦ୍ଦମାରେ ସୁଧାଂଶୁବାଳା ଜିତିଲେ ଏବଂ କୋର୍ଟରେ ଓକିଲାତି କରିବା ପାଇଁ ଅନୁମତି ପାଇଲେ ।

**ଶେଷଜୀବନ –**

୧୯୨୩ ମସିହା ଶେଷରେ, ମଧୁବାବୁ ପୁନର୍ବାର ଓଡ଼ିଶାର ମ୍ୟୁନିସିପାଲିଟି ନିର୍ବାଚନ ମଣ୍ଡଳୀରୁ ବିହାର-ଓଡ଼ିଶା ଲେଜିସ୍ଲେଟିଭ୍ କାଉନ୍‌ସିଲ୍‌କୁ ନିର୍ବାଚିତ ହୋଇଥିଲେ । ସେତେବେଳକୁ ମଧୁବାବୁଙ୍କଦ୍ୱାରା ପ୍ରତିଷ୍ଠିତ ଓ ପରିଚାଳିତ ଉତ୍କଳ ଟାନେରୀର ଆର୍ଥିକ ଅବସ୍ଥା ଶୋଚନୀୟ ହୋଇଥିଲା ଏବଂ ସେଥିଯୋଗୁଁ ସେ ବହୁମାତ୍ରାରେ ଋଣଗ୍ରସ୍ତ ହୋଇଥିଲେ । ଉତ୍କଳ ଟାନେରୀକୁ ରକ୍ଷା କରିବା ପାଇଁ

ଏବଂ ଓଡ଼ିଆଭାଷାଭାଷୀ ଅଞ୍ଚଳମାନଙ୍କୁ ଏକତ୍ର କରିବା ପାଇଁ ମଧୁବାବୁ ପୁଣି କଂଗ୍ରେସରେ ମିଶିବାକୁ ମନବଳାଇଲେ। ସେତେବେଳକୁ କଂଗ୍ରେସର ଅସହଯୋଗ ଆନ୍ଦୋଳନ ବନ୍ଦହୋଇଯାଇଥାଏ। ୧୯୨୪ ମସିହାରେ ଉତ୍କଳ ପ୍ରାଦେଶିକ କଂଗ୍ରେସ କର୍ମୀ ସମ୍ମିଳନୀ କଟକରେ ଅନୁଷ୍ଠିତ ହେଉଥିଲା। ଏହି ସମ୍ମିଳନୀରେ ପ୍ରଫୁଲ୍ଲଚନ୍ଦ୍ର ରାୟ ସଭାପତି ହୋଇଥିଲେ ଏବଂ ଏଥିରେ ସେ ଗୋପବନ୍ଧୁବାବୁଙ୍କୁ 'ଉତ୍କଳମଣି' ପଦବୀରେ ସମ୍ମାନିତ କରିଥିଲେ। ମଧୁବାବୁ ସେ ସମ୍ମିଳନୀରେ ଯୋଗଦେଇଥିଲେ। ସମ୍ମିଳନୀରେ ସମସ୍ତ ଓଡ଼ିଆଭାଷାଭାଷୀ ଲୋକଙ୍କ ମଧ୍ୟରେ ଜାତୀୟତା ଜାଗରଣ ପାଇଁ ଗୋଟିଏ କମିଟି ଗଠିତ ହେଉ ଏବଂ ଏ ସମ୍ବନ୍ଧରେ ମୀମାଂସା ଭାର ମହାତ୍ମା ଗାନ୍ଧି ନିଅନ୍ତୁ ବୋଲି ଅନୁରୋଧ କରି ଗୋଟିଏ ପ୍ରସ୍ତାବ ଗୃହୀତ ହୋଇଥିଲା। ଅନ୍ୟ ଏକ ପ୍ରସ୍ତାବରେ ଉତ୍କଳ ଟାନେରୀକୁ ଯୌଥ କମ୍ପାନୀରେ ପରିଣତ କରି ଏହାକୁ ବିଦେଶୀଙ୍କ ହାତରୁ ରକ୍ଷା କରି ଦେଶର ଉପକାରରେ ଲଗାଇବା କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ ଦେଶବାସୀଙ୍କୁ ଅନୁରୋଧ କରାଯାଇଥିଲା। କିନ୍ତୁ ଏ ସମ୍ମିଳନୀ ମହାତ୍ମା ଗାନ୍ଧିଙ୍କଦ୍ୱାରା ପ୍ରବର୍ତ୍ତିତ ଅସହଯୋଗ ନୀତି ଏବଂ କାର୍ଯ୍ୟକ୍ରମକୁ କାର୍ଯ୍ୟରେ ପରିଣତ କରିବାକୁ ପ୍ରତ୍ୟେକ କଂଗ୍ରେସ ଅନୁଷ୍ଠାନ ଓ ତାହାର ସଭ୍ୟମାନଙ୍କୁ ପରାମର୍ଶ ଦେବାରୁ ମଧୁବାବୁ ତାହା ବିରୁଦ୍ଧରେ ଯୁକ୍ତି କରିଥିଲେ। ତାଙ୍କ ବିରୋଧ ସତ୍ତ୍ୱେ ପ୍ରସ୍ତାବ ଗୃହୀତ ହେବାରୁ ସେ ସମ୍ମିଳନୀ ଛାଡ଼ି ଚାଲିଯାଇଥିଲେ। ସବୁବେଳେ ଅସହଯୋଗ ନୀତିକି ସେ ବିରୋଧ କରୁଥିଲେ। ସମ୍ମିଳନୀ ଶେଷ ହେବା ପରେ ପ୍ରଫୁଲ୍ଲଚନ୍ଦ୍ର ରାୟ ଟାନେରୀ ବୁଲି ଦେଖିଥିଲେ ଏବଂ କମ୍ପାନୀର ଅଧିକ ଅଂଶ ବିକ୍ରିରେ ସାହାଯ୍ୟ କରିବା ପାଇଁ ମଧୁବାବୁ ତାଙ୍କୁ ଅନୁରୋଧ କରିଥିଲେ।

ଟାନେରୀକୁ ରକ୍ଷା କରିବା ପାଇଁ ମଧୁବାବୁ ବିହାର ଓ ବଙ୍ଗଳାରେ ତାର ଅଂଶ ବିକ୍ରିକରିବା ପାଇଁ ଚେଷ୍ଟା କରିଥିଲେ। ମାତ୍ର ସେ ଚେଷ୍ଟା ବିଶେଷ ସଫଳ ହୋଇନଥିଲା। କଲିକତାର ହ୍ୱାଇଟ୍ ଓ୍ୱେ ଲେଡଲ୍ କମ୍ପାନୀ ଟାନେରୀ କିଣିନେବା କିମ୍ବା ଟାନେରୀର ଜୋତାରେ ତାଙ୍କ କମ୍ପାନୀର ମୋହର ରଖିବା ପ୍ରସ୍ତାବ ମଧୁବାବୁ ପ୍ରତ୍ୟାଖ୍ୟାନ କରିଦେଇଥିଲେ। ଟାନେରୀର ପରିଚାଳନା ଦାୟିତ୍ୱ କଲିକତାର ବ୍ୟବସାୟୀ ରଙ୍ଗଲାଲ୍‌ଙ୍କୁ ଦେବାପାଇଁ ଗୋପବନ୍ଧୁ ଚୌଧୁରୀ ପ୍ରଭୃତି ମଧୁବାବୁଙ୍କୁ ପରାମର୍ଶ ଦେଇଥିଲେ। ମାତ୍ର ଟାନେରୀ ପରିଚାଳନା ଦାୟିତ୍ୱ ଓ ସ୍ୱତ୍ୱ ଓଡ଼ିଶା ବାହାରେ କୌଣସି ବ୍ୟକ୍ତିକୁ ଦେବାକୁ ମଧୁବାବୁ ରାଜି ହୋଇନଥିଲେ। ୧୯୨୫ ମସିହା ଅଗଷ୍ଟ ମାସରେ ମହାତ୍ମା ଗାନ୍ଧି ଓଡ଼ିଶା ଆସି ମଧୁବାବୁଙ୍କର ଅତିଥି ହୋଇଥିଲେ। ଗାନ୍ଧିଜୀ ଟାନେରୀ ପରିଦର୍ଶନ କରିଥିଲେ; ମାତ୍ର ତାକୁ ରକ୍ଷାକରିବାକୁ କୌଣସି ପ୍ରତିଶ୍ରୁତି ଦେଇନଥିଲେ। କଂଗ୍ରେସ ସହିତ ଟାନେରୀର

କୌଣସି ଆଦର୍ଶଗତ ସମ୍ପର୍କ ନଥିଲା ଏବଂ କଂଗ୍ରେସ ସହିତ ସମ୍ପର୍କ ହେତୁ ଟାନେରୀର ଅଧିକ ଅଂଶ ବିକ୍ରି ହେବାର ସମ୍ଭାବନା ନଥିଲା ।

କଲିକତାର କକ୍ସ କମ୍ପାନୀ ଟାନେରୀକୁ ଦେଇଥିବା ଋଣ ପରିଶୋଧ ନିମିତ୍ତ ଡିଗ୍ରିଜାରି କରିଥିଲେ । ସେତେବେଳକୁ ମଧୁବାବୁଙ୍କର ସମସ୍ତ ଆୟ, ସଞ୍ଚୟ ଏବଂ ଋଣ ଟାନେରୀରେ ନିୟୋଜିତ ହୋଇଥିଲା । ଟାନେରୀ ନିମିତ୍ତ ମଧୁବାବୁ ବହୁ ବ୍ୟକ୍ତି ଓ ସଂସ୍ଥାରୁ ଋଣ କରିଥିଲେ । ସେମାନେ ସମସ୍ତେ ମକଦ୍ଦମା କରି ଡିଗ୍ରି ପାଇଥିଲେ । କଲିକତାର କକ୍ସ କମ୍ପାନୀଠାରୁ ଆରମ୍ଭକରି ବିହାରର କେତେକ ଜମିଦାର, ଓଡ଼ିଶାର ରାଧାପ୍ରସାଦ ଭଗତ, ଗଣେଶ ଲାଲ୍ ପଣ୍ଡିତ, ନନ୍ଦ କୁମାର ଇଷ୍ଟେଟ୍, ପାରଳା ମହାରାଜା ପ୍ରଭୃତି ବହୁ ଜମିଦାର ଓ ମହାଜନ ତାଙ୍କର ଡିଗ୍ରିଦାର ଥିଲେ । ସେ ସବୁ ଋଣ ପରିଶୋଧ କରିବା ପାଇଁ ତାଙ୍କର ଶକ୍ତି ନଥିଲା । ୧୯୨୬ ନଭେମ୍ବର ମାସରେ ଟାନେରୀ ନିଲାମ ହେଲା । ମଧୁବାବୁଙ୍କ ଅନୁରୋଧରେ ପୁରୀ ରାଜା ରାମଚନ୍ଦ୍ର ଦେବ ମାତ୍ର ୬୫,୦୦୦ ଟଙ୍କାରେ ନିଲାମରେ ଟାନେରୀ କିଣିନେଲେ । ୧୯୨୫ ଅକ୍ଟୋବର ମାସରେ ମଧୁବାବୁଙ୍କ କଟକ କୋଠା ଓ ହତା ନିଲାମହେଲା । ତିନିଥର ନିଲାମ ଡାକରେ ତାକୁ ନେବାକୁ କେହି ବାହାରିଲେନାହିଁ । ଶେଷକୁ ଚନ୍ଦ୍ର କୁମାର ହାଜରା ଶୈଳବାଳାଙ୍କ ନାମରେ ତାହାକୁ ନିଲାମରେ ଧରିଲେ । ନନ୍ଦ କୁମାର ଇଷ୍ଟେଟ୍ ମଧୁବାବୁଙ୍କର ତୁଳସୀପୁରଠାରେ ଥିବା ଚାରି ଏକର ଜମି ରହଣି ବନ୍ଧକ ବଳରେ ଦଖଲକଲେ । ତଥାପି ଅନ୍ୟ ଡିଗ୍ରିଦାରମାନଙ୍କର ଋଣ ବାକି ରହିଥିଲା । ବିହାରର ତାଙ୍କର ରାଜନୈତିକ ପ୍ରତିଦ୍ୱନ୍ଦ୍ୱୀ ରାଜା କର୍ତ୍ତ୍ୟାନନ୍ଦ ସିଂହ ପାଞ୍ଚହଜାର ଛଅଶହ ଟଙ୍କାରେ ତାଙ୍କର ସବୁ ଆସବାବପତ୍ର ବିକ୍ରି କରି ଟଙ୍କା ନେଇଗଲେ । ୧୯୨୭ ମସିହା ଅଗଷ୍ଟ ୪ ତାରିଖରେ ମଧୁବାବୁ ଦିବାଳିଆ ବୋଲି ଘୋଷିତହେଲେ । ସେତେବେଳକୁ ତାଙ୍କୁ ଅଣାଅଶି ବର୍ଷ ବୟସ ହୋଇଥିଲା ଏବଂ ସେ ଭୀଷଣ ଶୂଳ ରୋଗରେ ପୀଡ଼ିତ ଥିଲେ ।

ନିଃସ୍ୱ ହୋଇ ସୁଦ୍ଧା କାହାଠାରୁ ସାହାଯ୍ୟ ଗ୍ରହଣ କରିବାକୁ ସେ ପ୍ରସ୍ତୁତ ନଥିଲେ । ଓକିଲାତି କରିବାପାଇଁ କୋର୍ଟକୁ ଆବେଦନ କରି ଅନୁମତି ପାଇଲେ । ମାତ୍ର ଓକିଲାତିରୁ ଆୟର ହିସାବ ନିୟମିତ ଭାବରେ କୋର୍ଟରେ ଦାଖଲ କରିବାକୁ ହେଉଥିଲା । ଓକିଲାତିରୁ ମାସିକ ଆୟ ମଧ୍ୟ ଖୁବ୍ କମିଯାଇଥିଲା । ସେ ସେତେବେଳେ ମାସକୁ ହାରାହାରି ପ୍ରାୟ ପାଞ୍ଚଶହ ଟଙ୍କା ଆୟ କରୁଥିଲେ ଏବଂ ମକଦ୍ଦମା ସଂକ୍ରାନ୍ତରେ ପୁରୀ ଓ ଖୋର୍ଦ୍ଧା ପ୍ରଭୃତି ସ୍ଥାନକୁ ଯାଉଥିଲେ । ବସ୍ତୁତଃ ମଧୁବାବୁଙ୍କ ଦୁର୍ଦ୍ଦିନ ୧୯୨୩ ମସିହାରୁ ଆରମ୍ଭ ହୋଇଥିଲା । ତାଙ୍କର ଅଧିକାଂଶ ଋଣ ଓଡ଼ିଆଲୋକଙ୍କ ହିତ ଉଦ୍ଦେଶ୍ୟରେ କରାଯାଇଥିବା ଉତ୍କଳ

ଟାନେରୀ, ଓଡ଼ିଶା ଆର୍ଟ ୱେଆରସ୍, ଆର୍ଟସ୍କୁଲ ପ୍ରଭୃତି ବାଣିଜ୍ୟିକ ଅନୁଷ୍ଠାନ ଯୋଗୁଁ ହୋଇଥିଲା। ତାହା ବ୍ୟତୀତ ଉତ୍କଳ ସମ୍ମିଳନୀ ଏବଂ ବହୁ ରାଜନୈତିକ କାର୍ଯ୍ୟ ପାଇ, ସେ ମଧ୍ୟ ବହୁ ଋଣ କରିଥିଲେ।

ବାର୍ଦ୍ଧକ୍ୟ, ଧନହାନି ଓ ସ୍ୱାସ୍ଥ୍ୟହାନି ସତ୍ତ୍ୱେ ଜୀବନର ଶେଷ ପର୍ଯ୍ୟନ୍ତ ତାଙ୍କ ଜୀବନର ମୂଳ ଲକ୍ଷ୍ୟ ସମସ୍ତ ଓଡ଼ିଆଭାଷାଭାଷୀ ଲୋକଙ୍କୁ ଏକତ୍ର କରି ଏକ ଶାସନ ଅଧୀନରେ ରଖିବା, ଓଡ଼ିଆମାନଙ୍କର ସ୍ୱାଭିମାନ ରକ୍ଷାକରିବା ଏବଂ ଓଡ଼ିଶାର ଅର୍ଥନୈତିକ, ରାଜନୈତିକ ଓ ସାମାଜିକ ଉନ୍ନତିକରିବା ଉଦ୍ୟମରୁ କ୍ଷାନ୍ତ ହୋଇନଥିଲେ। ୧୯୨୮ ମସିହା ଫେବୃଆରୀ ମାସରେ ସାଇମନ କମିସନ୍‌ଙ୍କୁ ଓଡ଼ିଶା ଆଣିବାକୁ ସେ ଉଦ୍ୟମ କଲେ। ମାତ୍ର କମିସନଙ୍କୁ କଂଗ୍ରେସ ବୟକଟ୍ କରୁଥିବାରୁ କମିସନ କଟକ ଆସିପାରିଲେନାହିଁ। ମଧୁବାବୁଙ୍କ ଚେଷ୍ଟାରେ, ୧୯୨୮ ମସିହା ନଭେମ୍ବର ୧୦ ତାରିଖରେ ଉତ୍କଳ ୟୁନିଅନ୍ କମିଟି ତରଫରୁ କଟକ ଟାଉନ୍‌ହଲ୍‌ରେ ଗୋଟିଏ ସଭା ହେଲା ଏବଂ ସାଇମନ୍ କମିସନ ପାଟନାରେ ପହଞ୍ଚିବାମାତ୍ରେ ଓଡ଼ିଶା ଲିବରାଲ୍ ଲିଗ୍ ତରଫରୁ ତାଙ୍କୁ ସ୍ୱାଗତ କରାଯାଇ ସମସ୍ତ ଓଡ଼ିଆଭାଷାଭାଷୀ ଅଞ୍ଚଳକୁ ଏକତ୍ର କରି ସ୍ୱତନ୍ତ୍ର ପ୍ରଦେଶ କରିବାକୁ ସ୍ମାରକପତ୍ର ପ୍ରଦାନ କରାଯାଇଥିଲା। କମିସନ୍ ତରଫରୁ ନିଯୁକ୍ତ ଆଟଲୀ ସବ୍‌କମିଟି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନକୁ ସମର୍ଥନ କଲେ। ୧୯୩୧ ମସିହା ସେପ୍ଟେମ୍ବର ମାସରେ ପ୍ରସ୍ତାବିତ ଓଡ଼ିଶା ପ୍ରଦେଶର ସୀମା ନିର୍ଦ୍ଧାରଣ ପାଇଁ ଓଡ଼େନେଲ୍ କମିଟି ନିଯୁକ୍ତ ହୋଇଥିଲା। ସିଂହଭୂମିକୁ ଓଡ଼ିଶାରେ ମିଶାଇବାକୁ ଜନମତ ସୃଷ୍ଟି କରିବା ପାଇଁ ମଧୁବାବୁ ଜାମସେଦ୍‌ପୁର ଯାଇଥିଲେ ଏବଂ ସେନ୍‌ସସ୍ ସୁପରିଣ୍ଟେଣ୍ଡେଣ୍ଟଙ୍କ ପାଖକୁ ଓଡ଼ିଶାକୁ ସାହାଯ୍ୟ କରିବା ପାଇଁ ଚିଠି ଲେଖିଥିଲେ। ୧୯୩୧ ମସିହା ନଭେମ୍ବର ମାସରେ ଓଡ଼େନେଲ୍ କମିଟି କଟକରେ ପହଞ୍ଚିଥିଲେ। ଅତ୍ୟନ୍ତ ଅସୁସ୍ଥତା ସତ୍ତ୍ୱେ, ମଧୁବାବୁ କଟକ ଷ୍ଟେସନ୍‌ରେ ତାଙ୍କୁ ଅଭ୍ୟର୍ଥନା କରିଥିଲେ ଏବଂ ଗୋଟିଏ ସଂକ୍ଷିପ୍ତ ଭାଷଣ ଦେଇଥିଲେ। ମାତ୍ର ଓଡ଼େନେଲ୍ କମିଟି ସିଂହଭୂମି, ପାରଳାଖେମୁଣ୍ଡି ଓ ଜୟପୁର ପ୍ରଭୃତି ଅଞ୍ଚଳ ଓଡ଼ିଶାରେ ମିଶିବାକୁ ସୁପାରିସ କରିନଥିଲେ। ୧୯୩୩ ମସିହା ଫେବୃଆରୀ ମାସ ୧୨ ଓ ୧୩ ତାରିଖରେ ଉତ୍କଳ ସମ୍ମିଳନୀର ଅଧିବେଶନ ହୋଇଥିଲା ଏବଂ ସେଥିରେ ଓଡ଼େନେଲ୍ କମିଟିର ଅବିଚାରର ଘୋର ପ୍ରତିବାଦ କରାଯାଇଥିଲା। ମଧୁବାବୁ ସେ ସମ୍ମିଳନୀରେ ଯୋଗଦେଇ ଅଭିଭାଷଣ ଦେଇଥିଲେ।

୧୯୩୩ ମସିହା ମାର୍ଚ୍ଚ ମାସରେ ଭାରତଶାସନ ସଂସ୍କାର ସମ୍ପର୍କରେ ବ୍ରିଟିଶ୍ ସରକାର ଶ୍ୱେତପତ୍ର ପ୍ରକାଶ କରିଥିଲେ। ସେଥିରେ ଓଡ଼ିଶା ଓ ସିନ୍ଧୁ ସ୍ୱତନ୍ତ୍ର ପ୍ରଦେଶ ହେବାର ଘୋଷଣା କରାଯାଇଥିଲା। ମାତ୍ର ସେଥିରେ ମଧ୍ୟ

ପାରଳାଖେମୁଣ୍ଡି ଓ ଜୟପୁର ଓଡ଼ିଶା ପ୍ରଦେଶରୁ ବାଦ୍ ପଡ଼ିଥିଲା । ସେଥି-ନିମିତ୍ତ ପାରଳା ମହାରାଜା ବିଲାତ ଯାଇଥିଲେ ଏବଂ ତାଙ୍କର ଅକ୍ଳାନ୍ତ ଚେଷ୍ଟାରେ ସେ ଦୁଇ ଅଞ୍ଚଳ ଓଡ଼ିଶାରେ ମିଶିଥିଲା । ସେହି ୧୯୩୩ ମସିହାରେ ହବାକ୍ ସାହେବଙ୍କ ଅଧକ୍ଷତାରେ ଓଡ଼ିଶା ଆଡ୍‌ମିନିଷ୍ଟ୍ରେଟିଭ୍ କମିଟି ଗଠିତ ହୋଇଥିଲା । ମଧୁବାବୁ ସେଥିରେ ସଭ୍ୟ ହୋଇଥିଲେ । ମାତ୍ର ସେତେବେଳକୁ ସେ ଶଯ୍ୟାଶାୟୀ ହୋଇଥିଲେ । ରୋଗଶଯ୍ୟାରେ, ସେ ସେହି ଆଡ୍‌ମିନିଷ୍ଟ୍ରେଟିଭ୍ କମିଟିର ନୋଟ୍ ଓ ମେମୋରାଣ୍ଡମ୍ ପ୍ରଭୃତି ଲେଖିଥିଲେ । ସେ ରିପୋର୍ଟ ୧୯୩୩ ମସିହା ଅକ୍ଟୋବର ମାସରେ ସଂପୂର୍ଣ୍ଣ ହୋଇଥିଲା ।

୧୯୩୧ ମସିହା ଜାନୁଆରୀ ପହିଲାରେ ତାଙ୍କର ଦେବାଳିଆ ସମୟ ଶେଷହୋଇଥିଲା ଏବଂ ସେହି ବର୍ଷ ତାଙ୍କର ଓଡ଼ିଶାରେ ଓକିଲାତି ବ୍ୟବସାୟରେ ପ୍ରବେଶର ସୁବର୍ଣ୍ଣ ଜୟନ୍ତୀ ପାଳିତ ହୋଇଥିଲା । ମାତ୍ର ତାଙ୍କର ସ୍ୱାସ୍ଥ୍ୟର ଅବସ୍ଥା କ୍ରମେ ଅବନତ ହେଉଥିଲା । ୧୯୩୩ ମସିହା ଶେଷରେ ତାଙ୍କ ସ୍ୱାସ୍ଥ୍ୟ ଅବସ୍ଥାରେ ଦ୍ରୁତ ଅବନତି ହୋଇଥିଲା । ୧୯୩୪ ମସିହା ଜାନୁଆରୀ ୧୫ ତାରିଖରେ ବିହାରରେ ଭୂମିକମ୍ପ ହୋଇ ବହୁ ଧନ-ଜୀବନ କ୍ଷୟ ହୋଇଥିଲା । ମଧୁବାବୁ ସେଥିରେ ଅତ୍ୟନ୍ତ ମ୍ରିୟମାଣ ହୋଇଥିଲେ । ସେହି ଜାନୁଆରୀ ମାସରେ ତାଙ୍କର ସ୍ୱାସ୍ଥ୍ୟର ଉନ୍ନତି ପାଇଁ କଟକ ଟାଉନ୍‌ହଲ୍‌ରେ ଗୋଟିଏ ପ୍ରାର୍ଥନାସଭା ଅନୁଷ୍ଠିତ ହୋଇଥିଲା । ସେଥିରେ ଭାଷା-ଜାତି-ଧର୍ମ-ନିର୍ବିଶେଷରେ ବହୁ ଲୋକ ଯୋଗଦେଇଥିଲେ । ମୃତ୍ୟୁ ପୂର୍ବରୁ ମଧୁବାବୁ ନୀଳକଣ୍ଠ ଦାସଙ୍କୁ ଦେଖିବାକୁ ବ୍ୟାକୁଳ ହୋଇଥିଲେ । ନୀଳକଣ୍ଠବାବୁ ତାଙ୍କ ପାଖକୁ ଆସିବାରୁ, ମଧୁବାବୁ ତାଙ୍କୁ ନିଜର ଅସଂପୂର୍ଣ୍ଣ କାର୍ଯ୍ୟ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ୧୯୩୪ ମସିହା ଫେବୃଆରୀ ମାସ ୩ ତାରିଖ ରାତି ଗୋଟାଏ କୋଡ଼ିଏ ମିନିଟରେ ମଧୁବାବୁଙ୍କର ଜୀବନ-ପ୍ରଦୀପ ନିର୍ବାପିତ ହେଲା । ଫେବୃଆରୀ ୪ ତାରିଖ ଦିନ ସବୁ ସମ୍ପ୍ରଦାୟର ଲୋକ ଗୋଟିଏ ବିରାଟ ପଟୁଆରରେ ତାଙ୍କର ଶବକୁ କଟକର ବିଭିନ୍ନ ରାସ୍ତା ଦେଇ କିଲ୍ଲାପଡ଼ିଆ ନିକଟକୁ ନେଇଥିଲେ ଏବଂ ସେଦିନ ସୂର୍ଯ୍ୟାସ୍ତ ସମୟରେ ଗୋରାକବରଠାରେ ତାଙ୍କର ମରଶରୀରକୁ କବର ଦାନ କରାଯାଇଥିଲା । ସେହି ଗୋରାକବରଠାରେ ପ୍ରତିବର୍ଷ ତାଙ୍କର ଶ୍ରାଦ୍ଧ-ତିଥିରେ ଉତ୍କଳବାସୀ ତାଙ୍କର ଅମର ଆତ୍ମାପାଇଁ ପ୍ରାର୍ଥନା କରୁଛନ୍ତି ଏବଂ ଓଡ଼ିଶାର ଚାରିଆଡ଼େ ସଭାସମିତି ହୋଇ ତାଙ୍କର ସ୍ମୃତି ଉଦ୍ଦେଶ୍ୟରେ ଲୋକମାନେ ଶ୍ରଦ୍ଧାଞ୍ଜଳି ଦେଉଛନ୍ତି । ଏହା ହେଉଛି ସଂକ୍ଷେପରେ ଉତ୍କଳଗୌରବ ମଧୁସୂଦନ ଦାସଙ୍କ ଜୀବନବୃତ୍ତାନ୍ତ ।

ମଧୁବାବୁ ତାଙ୍କ ସମୟରେ ଭାରତବର୍ଷର ଜଣେ ମହାନ୍ ନେତା ଥିଲେ । ରାଜନୈତିକ ଏବଂ ଅର୍ଥନୈତିକ କ୍ଷେତ୍ରରେ ଯେଉଁ ଚିନ୍ତାଧାରା ସବୁ ବିଂଶ

ଶତାବ୍ଦୀରେ ସ୍ୱାଧୀନତା ସଂଗ୍ରାମ ସମୟରେ ଏବଂ ସ୍ୱାଧୀନତା ସଂଗ୍ରାମ ପରେ ଭାରତୀୟ ନେତାମାନଙ୍କ ମଧ୍ୟରେ ପ୍ରକାଶ ପାଇଥିଲା, ତାହାର ବହୁପୂର୍ବରୁ ମଧୁବାବୁ ସେ ବିଷୟରେ ଚିନ୍ତା କରି ପାରିଥିଲେ। ଭାଷାଭିତ୍ତିରେ ପ୍ରଦେଶ ଗଠନ, କ୍ଷୁଦ୍ରଶିଳ୍ପ ମାଧ୍ୟମରେ ବେକାରୀ ଓ ଦାରିଦ୍ର୍ୟ ଦୂରୀକରଣ, କୃଷି ଓ କୁଟୀରଶିଳ୍ପର ସମନ୍ୱୟ, ଭୂମିରେ କୃଷକଙ୍କୁ ଅଧିକାର ଦେବା ନିମିତ୍ତ ଭୂସଂସ୍କାର ଆଇନ ପ୍ରଣୟନ, ସାମାଜିକ ପ୍ରଗତିରେ ନାରୀଶିକ୍ଷାର ପ୍ରାଧାନ୍ୟ, ରାଜନୈତିକ କ୍ଷେତ୍ରରେ ସାଂପ୍ରଦାୟିକତା ଲୋପ ପ୍ରଭୃତି ଯେଉଁ ସବୁ ରାଜନୈତିକ, ଅର୍ଥନୈତିକ ଓ ସାମାଜିକ କାର୍ଯ୍ୟକ୍ରମ ଉପରେ ସ୍ୱାଧୀନ ଭାରତରେ ଦେଶର ପ୍ରଗତି ନିମିତ୍ତ ପ୍ରାଧାନ୍ୟ ଦିଆଯାଉଛି, ତାହା ସେ ଆଗରୁ ଚିନ୍ତାକରି କାର୍ଯ୍ୟକାରୀ କରିବାକୁ ଉଦ୍ୟମ କରିଥିଲେ।

ଓଡ଼ିଶାର ନବଜାଗରଣର ସେ ଆଦିପ୍ରବର୍ତ୍ତକ ଥିଲେ। ଓଡ଼ିଶାର ସେ ପ୍ରଥମ ଗ୍ରାଜୁଏଟ୍, ପ୍ରଥମ ଏମ୍.ଏ. ପ୍ରଥମ ଆଡ଼ଭୋକେଟ୍, ବେଙ୍ଗଲ୍ ଲେଜିସ୍ଲେଟିଭ୍ କାଉନସିଲ୍‌ର ପ୍ରଥମ ନିର୍ବାଚିତ ସଭ୍ୟ, ଭାରତର ଇମ୍ପିରିଆଲ୍ କାଉନ୍‌ସିଲ୍‌ରେ ପ୍ରଥମ ଓଡ଼ିଶା ସଭ୍ୟ ଓ ବିହାର-ଓଡ଼ିଶା ପ୍ରଦେଶରେ ପ୍ରଥମ ମନ୍ତ୍ରୀ ହୋଇଥିଲେ। ଓଡ଼ିଶାର ରାଜନୈତିକ, ସାମାଜିକ ଏବଂ ସାଂସ୍କୃତିକ କ୍ଷେତ୍ରରେ ସେ ନବଯୁଗର ପ୍ରବର୍ତ୍ତକ ଥିଲେ। ଓଡ଼ିଶାରେ ଏକ ଅନ୍ଧକାର ଯୁଗରେ ଜନ୍ମହୋଇ ଓଡ଼ିଆମାନଙ୍କର ଏକତ୍ରୀକରଣ, ସେମାନଙ୍କର ଅର୍ଥନୈତିକ ଏବଂ ସାଂସ୍କୃତିକ ଉନ୍ନତି, ସେମାନଙ୍କର ସ୍ୱାଭିମାନ ରକ୍ଷା ଓ ପୂର୍ବ-ଗୌରବର ପୁନରୁଦ୍ଧାର ପାଇଁ ସେ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସଂଗ୍ରାମ କରିଥିଲେ। ପ୍ରଧାନତଃ ତାଙ୍କର ସଂଗ୍ରାମ ଫଳରେ ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ରାଜ୍ୟ ହୋଇପାରିଛି ଏବଂ ଭାରତୀୟ ରାଷ୍ଟ୍ରସଂଘରେ ଅନ୍ୟ ରାଜ୍ୟମାନଙ୍କ ସହିତ ପ୍ରତିଯୋଗିତା କରିବାପାଇଁ ଦଣ୍ଡାୟମାନ ହୋଇଛି। ଆଧୁନିକ ଓଡ଼ିଶାର ସେ ପ୍ରଥମ ଓ ଅଦ୍ୱିତୀୟ ନେତା ଥିଲେ। ନିଜର ସ୍ୱାର୍ଥକୁ ଆହୁତି ଦେଇ ସେ ଓଡ଼ିଆ ଜାତିର ସ୍ୱାର୍ଥ ରକ୍ଷାକରିବାପାଇଁ ଜୀବନ ଉତ୍ସର୍ଗ କରିଥିଲେ। ପିଲାଦିନୁ ସେ ଅତ୍ୟନ୍ତ ଏକଜିଦିଆ ବ୍ୟକ୍ତି ଥିଲେ। ଯୌବନକାଳରୁ ଅନ୍ତିମ ସମୟ ପର୍ଯ୍ୟନ୍ତ ତାଙ୍କର ଗୋଟିଏ ପ୍ରଧାନ ଜିଦ୍ ଥିଲା, ବିକ୍ଷିପ୍ତ ଭାବରେ ରହିଥିବା ଓଡ଼ିଆମାନଙ୍କର ଏକତ୍ରୀକରଣ ଏବଂ ସେମାନଙ୍କର ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ଗଠନ। ସେହି ଲକ୍ଷ୍ୟ ତାଙ୍କ ମୃତ୍ୟୁପୂର୍ବରୁ ସଫଳ ହୋଇଥିଲା। ସେ ଓଡ଼ିଆଜାତିର ଇତିହାସରେ ଚିରସ୍ମରଣୀୟ ହୋଇ ରହିବେ।

□ □ □

**ସହାୟକ ପୁସ୍ତକ :**

୧। ଶତାବ୍ଦୀର ସୂର୍ଯ୍ୟ ଏବଂ କୁଳବୃଦ୍ଧ ମଧୁସୂଦନ – ସୁରେନ୍ଦ୍ରନାଥ ମହାନ୍ତି।

# ପଞ୍ଚମ ପରିଚ୍ଛେଦ

## କବିବର ରାଧାନାଥ ରାୟ

### ବାଲ୍ୟଜୀବନ, ଶିକ୍ଷା ଏବଂ ଶିକ୍ଷକତା –

ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଓଡ଼ିଶାର ନବଜାଗରଣ ଯୁଗର ପ୍ରାକ୍‌କାଳରେ, ଯେଉଁ ବର୍ଷ ଉତ୍କଳଗୌରବ ମଧୁସୂଦନ ଜନ୍ମହୋଇଥିଲେ, ସେହି ବର୍ଷ କବିବର ରାଧାନାଥ ରାୟ ଜନ୍ମ ହୋଇଥିଲେ। ୧୮୪୮ ମସିହା ସେପ୍ଟେମ୍ବର ମାସ ୨୮ ତାରିଖରେ ରାଧାନାଥ ବାଲେଶ୍ୱର ଜିଲ୍ଲାର ସୋରୋ ନିକଟସ୍ଥ କେଦାରପୁର ଗ୍ରାମରେ ଜନ୍ମହୋଇଥିଲେ। ତାଙ୍କର ପୂର୍ବପୁରୁଷମାନେ ମେଦିନୀପୁର ଜିଲ୍ଲାର ରାଧାନଗରଠାରୁ ଆସି ବାଲେଶ୍ୱର ଜିଲ୍ଲାର ଦେଶମଙ୍ଗଳ ଗ୍ରାମରେ ବାସକରୁଥିଲେ। ସେମାନେ ଗୋଟିଏ କାୟସ୍ଥ ପରିବାର ଥିଲେ ଏବଂ ସେମାନଙ୍କର ସଂଜ୍ଞା 'ଦେ' ଥିଲା। ରାଧାନାଥଙ୍କ ପିତାମହ ନାରାୟଣ ପ୍ରସାଦ ଦେ ସୋରୋ ଦଣ୍ଡପାଟରେ ଜମିଦାର ଜୟନାରାୟଣ ରାୟଙ୍କ କଚେରିରେ କାମ କରୁଥିଲେ। ସେହି ଜମିଦାରଙ୍କ ଅନୁଗ୍ରହରୁ ତାଙ୍କ ଉପାଧି 'ଦେ' ପରିବର୍ତ୍ତେ 'ରାୟ' ହୋଇଥିଲା। ସେହି ନାରାୟଣ ପ୍ରସାଦ ରାୟଙ୍କ ଜ୍ୟେଷ୍ଠପୁତ୍ର ସୁନ୍ଦର ନାରାୟଣ ରାୟ ରାଧାନାଥଙ୍କ ପିତା ଥିଲେ। ସୁନ୍ଦର ନାରାୟଣ ରାୟ ବାଲେଶ୍ୱର କଲେକ୍ଟରଙ୍କ କଚେରିରେ କାନୁନ୍‌ଗୋ କାର୍ଯ୍ୟ କରୁଥିଲେ। ସେ ବଙ୍ଗଳା ଏବଂ ଓଡ଼ିଆ ଭାଷା ବ୍ୟତୀତ ସଂସ୍କୃତ ଏବଂ ପାର୍ସି ଭାଷା ମଧ୍ୟ ଶିକ୍ଷାକରିଥିଲେ। ସୁନ୍ଦର ନାରାୟଣ ରାୟଙ୍କ ଅନ୍ୟ ତିନି ଭାଇ ବାଲେଶ୍ୱରର ନିମକମାହାଲ ଏବଂ ସରକାରୀ କଚେରିରେ କାର୍ଯ୍ୟ କରୁଥିଲେ ଏବଂ ତାଙ୍କର ବହୁକୁଟୁମ୍ବୀ ଯୌଥପରିବାର ଅତି ସ୍ୱଚ୍ଛଳ ନଥିଲା।

ରାଧାନାଥଙ୍କୁ ଛଅବର୍ଷ ବୟସ ହୋଇଥିବାବେଳେ ତାଙ୍କ ମାତା ତାରିଣୀ ଦେବୀଙ୍କର ମୃତ୍ୟୁ ହୋଇଥିଲା। ଏହି ଘଟଣା ତାଙ୍କ ଜୀବନ ଉପରେ ବିଶେଷ ପ୍ରଭାବ ପକାଇଥିଲା। ପିଲାଦିନୁ ରାଧାନାଥ ଧୀର ସ୍ଥିର, ଉଦାସୀନ ଏବଂ ଚିନ୍ତାଶୀଳ ବାଳକ ହୋଇଥିଲେ ଏବଂ ଜୀବନଯାକ ତାଙ୍କ ସ୍ୱଭାବ ମଧ୍ୟ ଚିନ୍ତାଶୀଳ ହୋଇଥିଲା। ତାରିଣୀଦେବୀଙ୍କ ମୃତ୍ୟୁ ପରେ ରାଧାନାଥଙ୍କ ପିତା ସୁନ୍ଦର ନାରାୟଣ ରାୟ ରୂପଦାସୀ ନାମ୍ନୀ ଜଣେ ମହିଳାଙ୍କୁ ବିବାହ କରିଥିଲେ। ତାଙ୍କର ସ୍ନେହ,

ଦୟା ଓ ପିତାମହୀଙ୍କ ଯତ୍ନରେ ପିଲାଦିନେ ରାଧାନାଥ ଲାଳିତପାଳିତ ହୋଇଥିଲେ। ମାତ୍ର ରାଧାନାଥ ମାତାଙ୍କର ମୃତ୍ୟୁ ଜୀବନରେ କେବେ ଭୁଲିପାରି ନଥିଲେ। ପରବର୍ତ୍ତୀ କାଳରେ ତାଙ୍କର 'ଗ୍ରାମ୍ୟ ଶ୍ମଶାନଦର୍ଶନେ ବିଦେଶ ପ୍ରତ୍ୟାଗତ ମାତୃହୀନର ଉକ୍ତି' ବଙ୍ଗଳା କବିତାରୁ ଏହା ସ୍ପଷ୍ଟ ଜଣାପଡ଼େ। ମାତୃହୀନ ହୋଇଥିବାରୁ ରାଧାନାଥ ମଧ୍ୟ ସୁସ୍ଥ ସବଳ ନଥିଲେ। ତାଙ୍କର ସମସ୍ତ ଜୀବନକାଳରେ ସେ ଜଣେ ସ୍ୱାସ୍ଥ୍ୟବାନ୍ ଲୋକ ନଥିଲେ ଏବଂ ଜୀବନଯାକ ନାନାପ୍ରକାର ରୋଗ ଭୋଗୁଥିଲେ।

ସୁନ୍ଦର ନାରାୟଣ ରାୟ ନିଜେ ବିଦ୍ୟାନୁରାଗୀ ଥିବାରୁ ପୁତ୍ର ରାଧାନାଥଙ୍କୁ ଉତ୍ତମ ଶିକ୍ଷା ଦେବାକୁ ସର୍ବଦା ଯତ୍ନବାନ୍ ଥିଲେ। ଛ'ବର୍ଷ ବୟସରେ ରାଧାନାଥ ଗୋଟିଏ ଘରୋଇ ଚାଟଶାଳୀରେ ନାରାୟଣଚନ୍ଦ୍ର ନାୟକ ନାମରେ ଜଣେ ଅବଧାନଙ୍କ ତତ୍ତ୍ୱାବଧାନରେ ଶିକ୍ଷା ଆରମ୍ଭ କରିଥିଲେ। ଚାଟଶାଳୀରେ ସେ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ ଦାସ ଏବଂ ଅଭିମନ୍ୟୁ ସାମନ୍ତସିଂହାରଙ୍କ କାବ୍ୟ ସବୁ ପଢ଼ିଥିଲେ; କାରଣ ସେ ସମୟରେ ପାଠଶାଳାମାନଙ୍କରେ ପିଲାମାନଙ୍କୁ ଓଡ଼ିଶାର ପ୍ରାଚୀନ ସାହିତ୍ୟସବୁ ପଢ଼ାହେଉଥିଲା।

୧୮୫୭ ମସିହାରେ ଗାଁ ଚାଟଶାଳୀ ଶିକ୍ଷା ଶେଷକରି ରାଧାନାଥ ସୋରୋରେ ଥିବା ଭର୍ଣ୍ଣାକୁଲାର୍ ସ୍କୁଲରେ ପ୍ରବେଶ କରିଥିଲେ। ସେଠାରେ ସେ ପଣ୍ଡିତ ସଦାଶିବ ନନ୍ଦଙ୍କଠାରୁ ସଂସ୍କୃତ କାବ୍ୟ ଓ ବ୍ୟାକରଣ ଶିକ୍ଷାକରିଥିଲେ। ସୁତରାଂ ପିଲାଦିନୁ ତାଙ୍କର ଭାଷାଶିକ୍ଷା ଓ ସାହିତ୍ୟଚର୍ଚ୍ଚା ପାଇଁ ଆଗ୍ରହ ଜାତହୋଇଥିଲା। ଗାଁ ସ୍କୁଲମାନଙ୍କରେ ପାଠପଢ଼ା ଶେଷକରି ସେ ୧୮୫୮ ମସିହାରେ ବାଲେଶ୍ୱର ଇଂରାଜୀ ସ୍କୁଲର ଦ୍ୱିତୀୟ ଶ୍ରେଣୀରେ ନାମ ଲେଖାଇଥିଲେ। ସେ ସ୍କୁଲ ଗୋଟିଏ ହାଇସ୍କୁଲ ଭାବରେ ୧୮୫୩ ମସିହାରୁ ଇଷ୍ଟ୍ ଇଣ୍ଡିଆ କମ୍ପାନୀଙ୍କଦ୍ୱାରା ପ୍ରତିଷ୍ଠିତ ହୋଇଥିଲା ଏବଂ ପରେ ସେ ସ୍କୁଲ ବାଲେଶ୍ୱର ଜିଲ୍ଲାସ୍କୁଲରେ ପରିଣତ ହୋଇଥିଲା। ସେ ସ୍କୁଲରେ ରାଧାନାଥ ସର୍ବଦା ଶ୍ରେଷ୍ଠ ଛାତ୍ରମାନଙ୍କ ମଧ୍ୟରେ ଜଣେ ଛାତ୍ରରୂପେ ଗଣ୍ୟ ହେଉଥିଲେ। ଉକ୍ତ ସ୍କୁଲରେ ସେ ସମୟରେ ବାଲେଶ୍ୱରର କେତେକ ଧନୀ ଜମିଦାର ଘରର ପିଲା ତାଙ୍କର ବନ୍ଧୁ ହୋଇଥିଲେ। ରାଜା ବୈକୁଣ୍ଠନାଥ ଦେ ସେହି ସମୟରୁ ଜୀବନଯାକ ତାଙ୍କ ବନ୍ଧୁ ହୋଇଥିଲେ। ପରେ ଦେ'ଙ୍କ ପ୍ରେସ୍‌ରେ ରାଧାନାଥଙ୍କର ଲିଖିତ ଅଧିକାଂଶ ପାଠ୍ୟପୁସ୍ତକ ଛପାହୋଇଥିଲା। ସେହି ବାଲେଶ୍ୱର ଜିଲ୍ଲାସ୍କୁଲରୁ ସେ ୧୮୬୩ ମସିହାରେ କଲିକତା ବିଶ୍ୱବିଦ୍ୟାଳୟର ଏଣ୍ଟ୍ରାନ୍‌ସ ପରୀକ୍ଷାରେ ପାଶ୍ କରି ବୃତ୍ତି ପାଇଥିଲେ ଏବଂ ୧୮୬୪ ମସିହାରେ କଲିକତାର ପ୍ରେସିଡେନ୍‌ସି କଲେଜରେ ଏଫ୍.ଏ. କ୍ଲାସ୍‌ରେ ନାମ ଲେଖାଇଥିଲେ। ମାତ୍ର କଲିକତାରେ ଆମାଶୟ ରୋଗରେ ପୀଡ଼ିତ ହେବାରୁ ଅଳ୍ପ କେତେ

ମାସ ପରେ ବାଲେଶ୍ୱରକୁ ଫେରିଆସିଥିଲେ। ବାଲେଶ୍ୱର ଜିଲ୍ଲାସ୍କୁଲରେ ସେ ସମୟର ପାଠ୍ୟକ୍ରମ ଅନୁସାରେ ଇଂରାଜୀ, ଭୂଗୋଳ, ଇତିହାସ, ଗଣିତ ଏବଂ ବଙ୍ଗଳା ସାହିତ୍ୟ ଅଧ୍ୟୟନ କରିଥିଲେ। ସେହି ସମୟରେ ସେ ବଙ୍ଗଳା ସାହିତ୍ୟରେ ବିଦ୍ୟାସାଗରଙ୍କ ବତ୍ରିଶସିଂହାସନ, ମାଇକେଲ୍ ମଧୁସୂଦନଙ୍କ ବୀରାଙ୍ଗନା ଓ ମେଘନାଦ-ବଧ ପ୍ରଭୃତି କାବ୍ୟ ପାଠକରିଥିଲେ। କେତେକ ଲେଖକ ଲେଖିଛନ୍ତି ଯେ, ରାଧାନାଥ ୧୮୬୩ ମସିହାର ଡିସେମ୍ବର ମାସରେ ଏଣ୍ଟ୍ରାନ୍ସ ପରୀକ୍ଷାରେ ପାଶ୍ ନକରି ପରେ ଘରୋଇ ଛାତ୍ର ଭାବରେ ଏଣ୍ଟ୍ରାନ୍ସ ପାଶ୍ କରିଥିଲେ। ମାତ୍ର ଅଧିକାଂଶ ଲେଖକ କହନ୍ତି ଯେ, ସେ ବାଲେଶ୍ୱର ଜିଲ୍ଲା ସ୍କୁଲରୁ ୧୮୬୩ ମସିହାରେ ଏଣ୍ଟ୍ରାନ୍ସ ପାଶ୍ କରି ୧୮୬୪ ମସିହାରେ ପ୍ରେସିଡେନ୍ସି କଲେଜରେ ଏଫ୍.ଏ. କ୍ଲାସ୍‌ରେ ନାମଲେଖାଇଥିଲେ।

ଯାହା ହେଉ, ୧୮୬୪ ମସିହାରେ ସେ କଲିକତାରେ ଏଫ୍.ଏ. କ୍ଲାସ୍‌ରେ ବେଶୀ ଦିନ ପଢ଼ିନଥିଲେ। ଅସୁସ୍ଥତା ହେତୁ ବାଲେଶ୍ୱର ଫେରିଆସିଥିଲେ ଏବଂ ୧୮୬୪ ମସିହା ମଇ ମାସ ପହିଲାଠାରୁ ବାଲେଶ୍ୱର ଜିଲ୍ଲାସ୍କୁଲରେ ମାସକୁ ତିରିଶ ଟଙ୍କା ବେତନରେ ତୃତୀୟ ଶିକ୍ଷକରୂପେ ନିଯୁକ୍ତ ହୋଇଥିଲେ। ସେତେବେଳେ ଗଙ୍ଗାଧର ଆଚାର୍ଯ୍ୟ ସେ ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ। ସେ ରାଧାନାଥଙ୍କୁ ଉଚ୍ଚତର ଶିକ୍ଷାପାଇଁ ପ୍ରୋତ୍ସାହନ ଦେଉଥିଲେ। ସେ ସ୍କୁଲରେ ଶିକ୍ଷକ ଥାଇ ରାଧାନାଥ ଘରୋଇ ଭାବରେ ୧୮୬୮ ମସିହା ଡିସେମ୍ବର ମାସରେ କଲିକତା ବିଶ୍ୱବିଦ୍ୟାଳୟର ଏଫ୍.ଏ. ପରୀକ୍ଷାରେ ପାଶ୍ କରିଥିଲେ। ଷୋହଳ ବର୍ଷ ବୟସରେ ୧୮୬୪ ମସିହାରେ ବାଲେଶ୍ୱର ଜିଲ୍ଲାସ୍କୁଲରେ ଚାକିରି କରିବା ଦିନଠାରୁ ସରକାରଙ୍କ ଶିକ୍ଷାବିଭାଗରେ ତାଙ୍କର ଚାକିରିକାଳ ଆରମ୍ଭ ହୋଇଥିଲା। ସେହି ବିଭାଗର ବିଭିନ୍ନ ପଦବୀରେ କାର୍ଯ୍ୟ କରି ୧୯୦୩ ମସିହାରେ ସେ ଚାକିରିରୁ ଅବସର ଗ୍ରହଣ କରିଥିଲେ।

ବାଲେଶ୍ୱର ଜିଲ୍ଲାସ୍କୁଲରେ ଶିକ୍ଷକତା କରୁଥିବା ସମୟରେ, ରାଧାନାଥଙ୍କର ଦାମୋଦର ଦାସ ନାମରେ ଜଣେ ବନ୍ଧୁ ତାଙ୍କ ଘରେ ଗୋଟିଏ ପାଠାଗାର କରିଥିଲେ। ରାଧାନାଥ ପ୍ରତିଦିନ ସେଠାକୁ ଯାଇ ବିଭିନ୍ନ ଗ୍ରନ୍ଥ ଅଧ୍ୟୟନ କରୁଥିଲେ। ଦାମୋଦର ଦାସଙ୍କ ଅନ୍ତେ, ସେ ଗ୍ରନ୍ଥାଳୟକୁ ରାଜା ବୈକୁଣ୍ଠନାଥ ଦେ କିଣିନେଇଥିଲେ। ସେହି ଗ୍ରନ୍ଥାଳୟରେ ରାଧାନାଥ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ବହୁ କବି ଓ ଲେଖକଙ୍କ ଲିଖିତ ଗ୍ରନ୍ଥ ପଢ଼ିଥିଲେ। ସେଠାରେ ସେ ଚସର୍, ସ୍ପେନ୍‌ସର୍, ମିଲ୍‌ଟନ୍, ସେକ୍‌ସପିଅର୍, ଗ୍ରେ, କାଉପର୍, ଗୋଲ୍‌ଡ୍ ସ୍ମିଥ୍, ବାଇରନ୍, ସେଲି, ଓ୍ୱାର୍ଡସ୍‌ଓ୍ୱାର୍ଥ, ସ୍ମିଥ୍, ଟେନିସନ୍, ପେଟ୍ରାର୍କ, ଗେଟେ ପ୍ରଭୃତି କବିମାନଙ୍କର କାବ୍ୟ-କବିତା ପଢ଼ିଥିଲେ। ଅନ୍ୟ ଦିଗରେ ସେ ସେସମୟର ପ୍ରାୟ ସମସ୍ତ

ବଙ୍ଗଳାଭାଷାର କବି ଓ ଲେଖକଙ୍କ ଲେଖା, ସଂସ୍କୃତରେ କାଳିଦାସ, ଭବଭୂତି, ଶ୍ରୀହର୍ଷ, ଭାରବୀ, ମାଘ, ବାଣ ଓ ଜୟଦେବ ପ୍ରଭୃତିଙ୍କ କାବ୍ୟ ସଂସ୍କୃତ ପଣ୍ଡିତଙ୍କ ସାହାଯ୍ୟରେ ପଢ଼ିଥିଲେ । ସେଥି ସଙ୍ଗେ ସଙ୍ଗେ ଓଡ଼ିଶାର ଉପେନ୍ଦ୍ରଭଞ୍ଜ, ଅଭିମନ୍ୟୁ ସାମନ୍ତସିଂହାର, ଦୀନକୃଷ୍ଣ ଦାସ ପ୍ରଭୃତି ପ୍ରାଚୀନ କବିମାନଙ୍କର କାବ୍ୟ ପୋଥିମାନଙ୍କରୁ ଅଧ୍ୟୟନ କରିଥିଲେ । କେତେକ ଓଡ଼ିଆ ଛାନ୍ଦକୁ ମଧ୍ୟ କଣ୍ଠସ୍ଥ କରିଥିଲେ । ସୁତରାଂ ପ୍ରାୟ କୋଡ଼ିଏ ବର୍ଷ ବୟସ ବେଳକୁ ସେ ଇଂରାଜୀ, ସଂସ୍କୃତ, ବଙ୍ଗଳା ଓ ଓଡ଼ିଆ କବି ଓ ଲେଖକମାନଙ୍କ କାବ୍ୟ, କବିତା ଓ ଲେଖା ପଢ଼ି ସେସବୁ ସାହିତ୍ୟରେ ଜଣେ ବିଶିଷ୍ଟ ପଣ୍ଡିତ ଲୋକ ହୋଇଥିଲେ । ତାହାଦ୍ୱାରା ପରବର୍ତ୍ତୀ କାଳରେ ଜଣେ ପ୍ରତିଷ୍ଠିତ କବି ଏବଂ ଲେଖକ ହେବା ପାଇଁ ତାଙ୍କର ମୂଳଭିତ୍ତି ଅତ୍ୟନ୍ତ ସୁଦୃଢ଼ ହୋଇଥିଲା । ବାଲେଶ୍ୱରରେ ସେସମୟରେ ସେ ବୈକୁଣ୍ଠନାଥ ଦେ, ଦାମୋଦର ଦାସ, ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ, ଫକୀରମୋହନ ସେନାପତି ପ୍ରଭୃତି ସାହିତ୍ୟାନୁରାଗୀ ଏବଂ ବିଦ୍ୟୋତ୍ସାହୀ ବ୍ୟକ୍ତିଙ୍କ ସଙ୍ଗରେ ବହୁ ସମୟରେ ମିଳାମିଶା କରୁଥିଲେ ଏବଂ ସେମାନଙ୍କ ସହିତ ସାହିତ୍ୟ-ଚର୍ଚ୍ଚାଦ୍ୱାରା ତାଙ୍କର କବିପ୍ରତିଭାର ଉନ୍ମେଷ ହୋଇଥିଲା ।

୧୮୬୮ ମସିହା ବେଳକୁ ସେ ବଙ୍ଗଳା ଭାଷାରେ କବିତା ଲେଖିବାକୁ ଆରମ୍ଭକଲେ । ସେଥିରୁ କେତେକ ବଙ୍ଗଳା ପତ୍ରିକା 'ନବ୍ୟଭାରତ' ଏବଂ ଭୂଦେବ ମୁଖାର୍ଜୀଙ୍କଦ୍ୱାରା ସଂପାଦିତ 'ଏଡୁକେଶନ୍ ଗେଜେଟ୍'ରେ ପ୍ରକାଶିତ ହୋଇଥିଲା । ୧୮୬୮ ମସିହାରେ ସେ ବଙ୍ଗଳାରେ 'କବିତାବଳୀ' ପ୍ରଥମ ଭାଗ ଏବଂ ୧୮୭୨ ମସିହାରେ 'କବିତାବଳୀ' ଦ୍ୱିତୀୟ ଭାଗ ପ୍ରକାଶ କରିଥିଲେ । ସେତେବେଳେ ବାଲେଶ୍ୱରରେ ବଙ୍ଗାଳୀ କର୍ମଚାରୀମାନେ ଓଡ଼ିଆ ଭାଷା ସରକାରୀ ସ୍କୁଲ ଓ ଅଫିସ୍‌ମାନଙ୍କରୁ ଉଠାଇଦେଇ ବଙ୍ଗଳାଭାଷା ପ୍ରଚଳନ କରିବାକୁ ଉଦ୍ୟମ କରୁଥିଲେ । ୧୮୬୯ ମସିହାରେ ବାଲେଶ୍ୱର ଜିଲ୍ଲାସ୍କୁଲର ହେଡ୍‌ପଣ୍ଡିତ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ 'ଉଡ଼ିୟା ଏକଟି ସ୍ୱତନ୍ତ୍ର ଭାଷା ନୟ' ନାମରେ ଖଣ୍ଡିଏ ପୁସ୍ତକ ବଙ୍ଗଳା ଭାଷାରେ ପ୍ରକାଶକଲେ । ଫକୀରମୋହନ ସେନାପତି ଏବଂ ଗୌରୀଶଙ୍କର ରାୟ ପ୍ରଭୃତି 'ବାଲେଶ୍ୱର ସମ୍ବାଦବାହିକା' ଓ 'ଉତ୍କଳ ଦୀପିକା' ପତ୍ରିକା ମାଧ୍ୟମରେ ତାହାର ଘୋର ବିରୋଧ କଲେ । ବାଲେଶ୍ୱରର ତତ୍‌କାଳୀନ ଜିଲ୍ଲା ମାଜିଷ୍ଟ୍ରେଟ୍ ଜନ୍ ବୀମ୍‌ସ ସାହେବ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ହୃଦୟଙ୍ଗମ କରି ସେମାନଙ୍କୁ ସାହାଯ୍ୟ କରୁଥିଲେ । ୧୮୭୦ ମସିହାରେ ଭାଷା-ଆନ୍ଦୋଳନର ପରିସମାପ୍ତି ଘଟିଲା ଏବଂ ଓଡ଼ିଶାର ସ୍କୁଲମାନଙ୍କରେ ବିଭିନ୍ନ ବିଷୟ ଓଡ଼ିଆରେ ପଢ଼ାହେବାର ସିଦ୍ଧାନ୍ତ ହେଲା । ରାଧାନାଥ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ବିଷୟରେ ଫକୀରମୋହନ ପ୍ରଭୃତିଙ୍କ ସହିତ ପ୍ରଥମରୁ ଏକମତ ଥିଲେ; ମାତ୍ର ସକ୍ରିୟ

ଭାବରେ ବଙ୍ଗାଳୀମାନଙ୍କର ଓଡ଼ିଆଭାଷାର ଲୋପ ଉଦ୍ୟମକୁ ବିରୋଧ କରୁନଥିଲେ। ଏପରି ପରିସ୍ଥିତିରେ ସେ ପ୍ରଥମେ ବଙ୍ଗଳାରେ କବିତା ଲେଖିବାକୁ ଆରମ୍ଭ କରିଥିଲେ। ମାତ୍ର ଜନ୍ ବୀମ୍‌ସ ସାହେବ ରାଧାନାଥ ପ୍ରଭୃତିଙ୍କୁ ଓଡ଼ିଆ ଭାଷାରେ ଲେଖିବାକୁ ପ୍ରେରଣା ଦେଉଥିଲେ। ସେହି ପ୍ରେରଣାରେ ୧୮୭୩ ମସିହାରେ, ବୈକୁଣ୍ଠନାଥ ଦେ'ଙ୍କ ଦେଜ୍ ଉତ୍କଳ ପ୍ରେସ୍‌ରୁ ରାଧାନାଥ ଏବଂ ବୈକୁଣ୍ଠନାଥଙ୍କ ଉଦ୍ୟମରେ 'ଉତ୍କଳ ଦର୍ପଣ' ନାମରେ ଗୋଟିଏ ପତ୍ରିକା ପ୍ରକାଶିତ ହେଉଥିଲା। ସେ ପତ୍ରିକା ୧୮୮୪ ମସିହା ପର୍ଯ୍ୟନ୍ତ ଚାଲିଥିଲା। ରାଧାନାଥ ନିୟମିତ ଭାବରେ ସେଥିରେ ଲେଖାଲେଖି କରୁଥିଲେ। ୧୮୭୩-୭୪ ମସିହାରେ ରାଧାନାଥଙ୍କର ବିବେକୀ, ଇତାଲୀୟ ଯୁବା, ମେଘଦୂତ ଓ ପବନ ପ୍ରଭୃତି ଲେଖା ସେଥିରେ ପ୍ରକାଶିତ ହୋଇଥିଲା। ସେଥିମଧ୍ୟରୁ 'ବିବେକୀ' ଓ 'ଇତାଲୀୟ ଯୁବା' ହେଉଛି ଗଦ୍ୟ ରଚନା ଏବଂ 'ମେଘଦୂତ' ଓ 'ପବନ' କବିତା। ମେଘଦୂତ ଅନୁବାଦ କବିତା ଥିଲା; ମାତ୍ର ପବନ ଥିଲା ମୌଳିକ କବିତା।

୧୮୬୮ ମସିହା ଡିସେମ୍ବର ମାସରେ ରାଧାନାଥ ବାଲେଶ୍ୱର ଜିଲ୍ଲାସ୍କୁଲରୁ ପୁରୀ ଜିଲ୍ଲାସ୍କୁଲକୁ ବଦଳି ହୋଇଥିଲେ ଏବଂ ପୁରୀ ଜିଲ୍ଲା ସ୍କୁଲରେ ୧୮୭୨ ମସିହା ଜାନୁୟାରୀ ମାସ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ। ପୁରୀରେ ତାଙ୍କର ତିନିବର୍ଷ ରହଣି ସମୟରେ ସେ ସଂସ୍କୃତ ଭାଷାରେ ଅଧିକ ଜ୍ଞାନ ଅର୍ଜନ କରିବା ପାଇଁ ଯତ୍ନ କରିଥିଲେ ଏବଂ ପୁରୀ ସଂସ୍କୃତ ସ୍କୁଲର ହେଡ୍‌ମାଷ୍ଟର୍ ପଣ୍ଡିତ ହରିହର ଦାଶଙ୍କ ସାହାଯ୍ୟରେ ସଂସ୍କୃତ ସାହିତ୍ୟ ଅଧ୍ୟୟନ କରିଥିଲେ। ପୁରୀ ସ୍କୁଲରେ ଚାକିରି କରୁଥିବାବେଳେ ୧୮୭୦ ମସିହାରେ ସେ ରେମୁଣାରେ ଚନ୍ଦ୍ରମୋହନ ଆଦିତ୍ୟଙ୍କ କନ୍ୟା ପରଶମଣିଙ୍କୁ ବିବାହ କରିଥିଲେ। ୧୮୭୨ ମସିହା ଜାନୁଆରୀ ମାସରେ ସେ ପୁରୀ ସ୍କୁଲରୁ ବାଙ୍କୁଡ଼ା ସ୍କୁଲକୁ ଦ୍ୱିତୀୟ ଶିକ୍ଷକରୂପେ ବଦଳି ହୋଇଥିଲେ। ମାତ୍ର ବାଙ୍କୁଡ଼ାରେ ଛଅମାସ କାର୍ଯ୍ୟ କଲାପରେ ସେ ବାଲେଶ୍ୱର ଜିଲ୍ଲାର ଡେପୁଟି ଇନ୍‌ସପେକ୍ଟରରୂପେ ନିଯୁକ୍ତ ହେବା ପରେ ତାଙ୍କର ଶିକ୍ଷକ-ଜୀବନ ଶେଷହୋଇଥିଲା ଏବଂ ଅବସର ଗ୍ରହଣ ପର୍ଯ୍ୟନ୍ତ ସେ ଶିକ୍ଷା-ପରିଦର୍ଶକରୂପେ ବିଭିନ୍ନ ପଦବୀରେ କାର୍ଯ୍ୟ କରିଥିଲେ।

**ଶିକ୍ଷା-ପରିଦର୍ଶକ କାର୍ଯ୍ୟ ଏବଂ ସାହିତ୍ୟ-ସାଧନା –**

ଡେପୁଟି ଇନ୍‌ସପେକ୍ଟର୍ ଥିବା ସମୟରେ ସେ ୧୮୭୩ ମସିହାରେ ଉତ୍କଳ ଦର୍ପଣରେ ମେଘଦୂତର ପୂର୍ଣ୍ଣ ଅନୁବାଦ ପ୍ରକାଶ କରିଥିଲେ। ତାହାପରେ ସେହି ପତ୍ରିକାରେ ଇଟାଲୀୟ ଯୁବା, ବିବେକୀ ଏବଂ ପବନ ପ୍ରକାଶିତ ହୋଇଥିଲା। ସେହି ସମୟରେ ସେ ଓଡ଼ିଆରେ ସ୍କୁଲ ପାଠ୍ୟପୁସ୍ତକ ଲେଖିବା ଆରମ୍ଭ କରିଥିଲେ।

୧୮୭୬ ମସିହାରେ ଓଡ଼ିଆରେ 'କବିତାବଳୀ' ପ୍ରଥମ ଭାଗ ପ୍ରକାଶିତ ହୋଇଥିଲା। ସେଥିରେ ରାଧାନାଥଙ୍କର ତିନିଗୋଟି କବିତା ଥିଲା ଏବଂ ବାକୀ କବିତା ଭକ୍ତକବି ମଧୁସୂଦନ ରାଓଙ୍କ ଦ୍ୱାରା ଲିଖିତ ହୋଇଥିଲା। ତାର ଦଶବର୍ଷ ପରେ ୧୮୮୬ ମସିହାରେ 'କବିତାବଳୀ' ଦ୍ୱିତୀୟ ଭାଗ ପ୍ରକାଶିତ ହୋଇଥିଲା। ସେଥିରେ ରାଧାନାଥ ରାୟଙ୍କର ମାତ୍ର ଦୁଇଗୋଟି କବିତା ଥିଲା; ଅନ୍ୟ ସବୁ କବିତା ମଧୁସୂଦନ ରାଓଙ୍କ ଦ୍ୱାରା ଲିଖିତ ହୋଇଥିଲା। ତାଙ୍କର ପାଠ୍ୟପୁସ୍ତକ ରଚନା କେବଳ ସାହିତ୍ୟ ମଧ୍ୟରେ ସୀମାବଦ୍ଧ ନଥିଲା। ୧୮୭୬ ଏବଂ ୧୮୭୯ ମସିହା ମଧ୍ୟରେ ସେ ଜ୍ୟାମିତି, ମେନ୍‌ସୁରେସନ୍, ଭୂଗୋଳ ବିଷୟକ ପାଠ୍ୟପୁସ୍ତକ ମଧ୍ୟ ଲେଖିଥିଲେ ଏବଂ ଓଡ଼ିଆ ସାହିତ୍ୟ ଏବଂ ମାନସାଙ୍କ ଉପରେ ଆଦର୍ଶ ପ୍ରଶ୍ନାବଳୀ ପ୍ରକାଶ କରିଥିଲେ। ତାଙ୍କର ଅଧିକାଂଶ ପାଠ୍ୟପୁସ୍ତକ ବାଲେଶ୍ୱରର ବୈକୁଣ୍ଠନାଥ ଦେଙ୍କ ପ୍ରେସ୍‌ରେ ପ୍ରକାଶିତ ହୋଇଥିଲା।

୧୮୭୩ ମସିହାରେ ତାଙ୍କ ପିତା ସୁନ୍ଦର ନାରାୟଣ ରାୟଙ୍କର ତିରୋଧାନ ହୋଇଥିଲା ଏବଂ ୧୮୭୬ ମସିହାରେ ତାଙ୍କର ଜ୍ୟେଷ୍ଠପୁତ୍ର ଶଶିଭୂଷଣ ରାୟ ଜନ୍ମହୋଇଥିଲେ। ୧୮୭୭ ମସିହା ନଭେମ୍ବର ମାସ ୨୬ ତାରିଖରେ ସେ ଓଡ଼ିଶା ଡିଭିଜନ୍‌ର ସ୍କୁଲମାନଙ୍କର ଜଏଣ୍ଟ୍ ଇନ୍‌ସପେକ୍ଟର୍ ପଦକୁ ପଦୋନ୍ନତି ପାଇଥିଲେ। ସେହି ସମୟଠାରୁ ୧୯୦୦ ମସିହା ପର୍ଯ୍ୟନ୍ତ ସେ କଟକରେ ରହିଥିଲେ। କଟକରେ ସେ ୧୮୮୦ରୁ ୧୮୯୩ ମସିହା ପର୍ଯ୍ୟନ୍ତ ତେରବର୍ଷ ଶେଖ୍‌ବଜାରସ୍ଥ ବାଲେଶ୍ୱରର ଜଣେ ଜମିଦାରଙ୍କର ଭଡ଼ାଘରେ ରହିଥିଲେ। ତାହାପରେ ୧୮୯୩ ମସିହାରେ କାଳିଗଳିରେ ନିଜର ଗୋଟିଏ ଦୋ'ମହଲା ଘର ତିଆରିକରି ସେଥିରେ ରହିଲେ। ତାଙ୍କର ସର୍ବଶ୍ରେଷ୍ଠ କାବ୍ୟ-କବିତା ସବୁ ସେ ଶେଖ୍‌ବଜାରର ଭଡ଼ାଘରେ ରହିଥିବା ସମୟରେ ଲେଖାହୋଇଥିଲା। ସେ ସମୟରେ ମଧ୍ୟ ସେ ଉତ୍କଳସଭା ପ୍ରଭୃତି ସଂଗଠନମାନଙ୍କରେ ସକ୍ରିୟ ସଭ୍ୟରୂପେ କାର୍ଯ୍ୟ କରୁଥିଲେ ଏବଂ କଟକରେ ଅନ୍ୟ ସାହିତ୍ୟିକ ଓ ଲେଖକମାନଙ୍କ ସମ୍ପର୍କରେ ଆସିଥିଲେ। ୧୮୭୮ ମସିହାରେ ତାଙ୍କର ଦ୍ୱିତୀୟ ପୁତ୍ର ରଜନୀଭୂଷଣ ଜନ୍ମହୋଇଥିଲେ।

୧୮୭୯ ମସିହାରେ ସେ ତାଙ୍କର ଉପରିସ୍ଥ ଅଫିସର୍ ଭୂଦେବ ମୁଖର୍ଜିଙ୍କ ସମ୍ପର୍କରେ ଆସିଲେ। ଭୂଦେବ ମୁଖର୍ଜି ବଙ୍ଗଳାର ଜଣେ ପ୍ରସିଦ୍ଧ ଲେଖକ ଥିଲେ। ସେବର୍ଷ ସେ ଓଡ଼ିଶା ଗସ୍ତରେ ଆସିଥିଲେ। ରାଧାନାଥବାବୁ ତାଙ୍କ ସଙ୍ଗରେ ଗସ୍ତ କରିଥିଲେ ଏବଂ ତାଙ୍କ ସହିତ ସାହିତ୍ୟ-ଚର୍ଚ୍ଚା କରିଥିଲେ। ଭୂଦେବବାବୁ ରାଧାନାଥଙ୍କଠାରୁ ପ୍ରାୟ ୨୧ ବର୍ଷ ବଡ଼ ଥିଲେ ଏବଂ ସେ ରାଧାନାଥଙ୍କୁ ପୁତ୍ରପରି ସ୍ନେହ କରୁଥିଲେ। ୧୮୮୮ ମସିହାରେ ରାଧାନାଥ

ପୁନର୍ବାର ଭୂଦେବବାବୁଙ୍କୁ ଚିନ୍‌ସୁରାରେ ଦେଖାକରିବାକୁ ଯାଇଥିଲେ ଏବଂ ୧୮୮୨ ମସିହାରେ ଭୂଦେବବାବୁଙ୍କ ସହ ତିନିମାସ ବୀରଭୂମି, ପାଟନା, ଗୟା ପ୍ରଭୃତି ବିଭିନ୍ନ ସ୍ଥାନ ଭ୍ରମଣ କରିଥିଲେ। ୧୮୮୦ ମସିହାରେ ତାଙ୍କର ଭଉଣୀ କାଉପୁର ଜମିଦାର ପରିବାରରେ ବିବାହ କରିଥିଲେ। ସେହି ବର୍ଷ ମୟୂରଭଞ୍ଜର ମହାରାଜା ତାଙ୍କୁ ରାଜ୍ୟର ଦେଓ୍ୟାନ୍ ପଦରେ ନିଯୁକ୍ତ କରିବାକୁ ଡାକିଥିଲେ; ମାତ୍ର ରାଧାନାଥ ସେଥିରେ ରାଜି ହୋଇନଥିଲେ।

ସ୍କୁଲ-ପରିଦର୍ଶକ ଭାବରେ ସେ ବର୍ଷର ବହୁମାସ ଓଡ଼ିଶାର ବିଭିନ୍ନ ସ୍ଥାନକୁ ଗସ୍ତରେ ଯାଉଥିଲେ। ପ୍ରତିବର୍ଷ ବିଭିନ୍ନ ଗଡ଼ଜାତ ରାଜ୍ୟକୁ ମଧ୍ୟ ଗସ୍ତରେ ଯାଉଥିଲେ। ସେଠାରେ ସେ ଜଙ୍ଗଲ, ପାହାଡ଼, ଝରଣା ପ୍ରଭୃତି ପ୍ରାକୃତିକ ଦୃଶ୍ୟ ଦେଖିବାକୁ ଭଲପାଉଥିଲେ। ୧୮୮୩ ମସିହାରେ ସେ ତିନିମାସ ଉତ୍ତର-ଭାରତ, ମଧ୍ୟ-ଭାରତ ଏବଂ ଦାର୍ଜିଲିଂ ପ୍ରଭୃତି ସ୍ଥାନ ବୁଲି ଦେଖିଥିଲେ। ତାଙ୍କର ବିଭିନ୍ନ ସ୍ଥାନ ଭ୍ରମଣ ଏବଂ ପ୍ରାକୃତିକ ଦୃଶ୍ୟ-ଦର୍ଶନର ଅଭିଜ୍ଞତା ସେ ତାଙ୍କର ବିଭିନ୍ନ କାବ୍ୟ-କବିତା ଲେଖାରେ ଉପଯୋଗ କରିଥିଲେ।

୧୮୮୬ ମସିହାରେ ସାହିତ୍ୟପ୍ରେମୀ ବାମଣ୍ଡାର ରାଜା ବାସୁଦେବ ସୁଢ଼ଳ ଦେବଙ୍କ ସହିତ ତାଙ୍କର ପରିଚୟ ହୋଇଥିଲା। ପରେ ୧୮୯୭ ମସିହାରେ ବାମଣ୍ଡା ରାଜାଙ୍କ ଆନୁକୂଲ୍ୟରେ ପ୍ରକାଶିତ 'ସମ୍ବଲପୁର ହିତୈଷିଣୀ' ପତ୍ରିକାରେ ସେ ଲେଖିଥିଲେ ଯେ ସୁଢ଼ଳଦେବଙ୍କ ସହିତ ପରିଚୟ ହେବା ପରେ ତାଙ୍କଠାରୁ ଉତ୍ସାହ ପାଇ ସେ ଜଣେ ସାହିତ୍ୟସେବୀ ଓ ସାହିତ୍ୟସ୍ରଷ୍ଟା ଭାବରେ କାର୍ଯ୍ୟ କରିଥିଲେ। ସୁଢ଼ଳଦେବ ୧୮୯୭ ମସିହାରେ ତାଙ୍କୁ 'କବିବର' ଉପାଧିରେ ଭୂଷିତ କରିଥିଲେ ଏବଂ ତାଙ୍କର ସାହିତ୍ୟକୃତି ପାଇଁ ତାଙ୍କୁ ୫୦୦ ଟଙ୍କା ପୁରସ୍କାର ଦେଇଥିଲେ। ରାଧାନାଥ ୧୮୮୬ ମସିହାରେ ପ୍ରକାଶିତ ତାଙ୍କର କାବ୍ୟ 'ଚନ୍ଦ୍ରଭାଗା', ୧୮୮୭ ମସିହାରେ ପ୍ରକାଶିତ କାବ୍ୟ 'ନନ୍ଦିକେଶ୍ୱରୀ' ଏବଂ ୧୮୮୫ ମସିହାରେ ପ୍ରକାଶିତ କାବ୍ୟ 'ଯଯାତିକେଶରୀ' ସୁଢ଼ଳଦେବଙ୍କ ନାମରେ ଉତ୍ସର୍ଗ କରିଥିଲେ। ସୁଢ଼ଳଦେବ ରାଧାନାଥଙ୍କର ନନ୍ଦିକେଶ୍ୱରୀ, ଉଷା, ପାର୍ବତୀ ଓ ଯଯାତିକେଶରୀ କାବ୍ୟ ତାଙ୍କର 'ସମ୍ବଲପୁର ହିତୈଷିଣୀ' ପତ୍ରିକାରେ ପ୍ରକାଶ କରିଥିଲେ। ସୁଢ଼ଳଦେବ ସର୍ବଦା ତାଙ୍କର ଜଣେ ଗୁଣମୁଗ୍ଧ ଏବଂ ପ୍ରଶଂସକ ବନ୍ଧୁ ଥିଲେ। ଯେଉଁ ସମୟରେ ରାଧାନାଥଙ୍କୁ ଉପେନ୍ଦ୍ରଭଞ୍ଜଙ୍କ ସହିତ ତୁଳନା କରାଯାଉଥିଲା, ସେହି ସମୟରେ ସୁଢ଼ଳଦେବଙ୍କ ସହାୟତାରେ ପ୍ରକାଶିତ 'ବିଜୁଳି' ପତ୍ରିକାରେ ରାଧାନାଥଙ୍କ ଉତ୍କର୍ଷ ପ୍ରତିପାଦିତ କରାଯାଉଥିଲା। ୧୯୦୨ ମସିହାରେ ସୁଢ଼ଳଦେବଙ୍କ ଦ୍ୱିତୀୟ ପୁତ୍ର ରାଧାନାଥଙ୍କର ବଙ୍ଗଳା 'ଲେଖାବଳୀ'ର ଦ୍ୱିତୀୟ ଭାଗ ପ୍ରକାଶ କରିବାର ଖର୍ଚ୍ଚ ବହନ କରିଥିଲେ।

ସୁଢ଼ଳଦେବଙ୍କ ବ୍ୟତୀତ ମୟୂରଭଞ୍ଜର ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ଦେବ ତାଙ୍କର ଜଣେ ପ୍ରଶଂସକ ଥିଲେ। ରାଧାନାଥଙ୍କ କାବ୍ୟ 'ଚିଲିକା' ଓ 'ମହାଯାତ୍ରା' ତାଙ୍କ ପତ୍ରିକା 'ଉତ୍କଳ-ପ୍ରଭା'ରେ ପ୍ରକାଶିତ ହୋଇଥିଲା ଏବଂ ମହାରାଜା ସେଥିପାଇଁ ତାଙ୍କୁ ଶହେ ଟଙ୍କା ଲେଖାଏଁ ପୁରସ୍କାର ଦେଇଥିଲେ। ଏହି ସ୍ୱଳ୍ପ ପୁରସ୍କାରରେ ରାଧାନାଥ ହତୋତ୍ସାହ ହୋଇଥିଲେ ଏବଂ ଏ ବିଷୟରେ ତାଙ୍କ ଅସନ୍ତୋଷ ଏକ ପତ୍ରରେ ୧୮୯୫ ମସିହାରେ କବି ଗଙ୍ଗାଧର ମେହେରଙ୍କ ପାଖକୁ ଲେଖିଥିଲେ। ସେଥିରେ ସେ ଲେଖିଥିଲେ ଯେ, ପରାଧୀନ ଭାରତରେ କାବ୍ୟ-କବିତା ଲେଖିବାରେ କୌଣସି ଭୌତିକ ଏବଂ ମାନସିକ ଲାଭ ନାହିଁ। କବି ଓ ଲେଖକମାନେ ଉପଯୁକ୍ତ ସମ୍ମାନ ଓ ପୁରସ୍କାର ପାଉନାହାନ୍ତି। ସେ ତାଙ୍କର 'ଉଷା' କାବ୍ୟ ତାଳଚେର ରାଜାଙ୍କ ନାମରେ ଏବଂ 'ଚିଲିକା' କାବ୍ୟ ମୟୂରଭଞ୍ଜ ମହାରାଜାଙ୍କ ନାମରେ ଉତ୍ସର୍ଗ କରିଥିଲେ।

ରାଜାମାନଙ୍କଦ୍ୱାରା ହତୋତ୍ସାହିତ ହୋଇ ସେ ତାଙ୍କ 'ଦରବାର' କାବ୍ୟରେ ରାଜା ମହାରାଜାମାନଙ୍କର ତୀବ୍ର ନିନ୍ଦା କରିଥିଲେ। ତଥାପି ବହୁ ରାଜା, ମହାରାଜା ଓ ଜମିଦାର ତାଙ୍କୁ ସାହାଯ୍ୟ ଓ ଉତ୍ସାହ ଦେଉଥିଲେ। ୧୮୯୨ ମସିହାରେ ଆଠମଲ୍ଲିକ ରାଜା 'ମହାଯାତ୍ରା' କାବ୍ୟପାଇଁ ତାଙ୍କୁ ୩୦୦ ଟଙ୍କା ଏବଂ ଦର୍ପଣୀର ଜମିଦାର ସେହି କାବ୍ୟପାଇଁ ୨୦୦ ଟଙ୍କା ପୁରସ୍କାର ଦେଇଥିଲେ। ୧୯୦୨ ମସିହାରେ ତାଙ୍କର ପୂର୍ଣ୍ଣ ଗ୍ରନ୍ଥାବଳୀ ଛପାଇବାପାଇଁ ଖଡ଼ିଆଳର ରାଜା ସମସ୍ତ ଖର୍ଚ୍ଚ ବହନ କରିଥିଲେ। ତାଙ୍କର ମୃତ୍ୟୁର ବହୁବର୍ଷ ପରେ ଦୁର୍ଗାଚରଣ ରାୟଙ୍କଦ୍ୱାରା ଲିଖିତ ତାଙ୍କର ସୁଦୀର୍ଘ ଜୀବନୀ ୧୯୪୧ ମସିହାରେ ପ୍ରକାଶ କରିବାପାଇଁ ସମସ୍ତ ଖର୍ଚ୍ଚ ଆଠଗଡ଼ର ରାଜା ବହନକରିଥିଲେ।

୧୮୮୦ ମସିହାଠାରୁ ୧୯୦୩ ମସିହା ମଧ୍ୟରେ ତାଙ୍କର ଲେଖା ଓଡ଼ିଶାର ଚାରିଆଡ଼େ ପ୍ରଶଂସିତ ହେଲା। ଲେଖାର ଉପାଦେୟତା ବ୍ୟତୀତ ଭାଷା-ଆନ୍ଦୋଳନ, ରାଜା ମହାରାଜାମାନଙ୍କ ସହିତ ତାଙ୍କର ସୁସଂପର୍କ, ଶିକ୍ଷାବିଭାଗରେ ତାଙ୍କର କ୍ଷମତା ଓ ପ୍ରଭାବ, ତାଙ୍କ ଅଧୀନରେ ଥିବା ଶହ ଶହ ଶିକ୍ଷକ ଓ ଶିକ୍ଷା ବିଭାଗର କର୍ମଚାରୀ, ବହୁ ପତ୍ରପତ୍ରିକାର ସଂପାଦକ ଏବଂ ତାଙ୍କର ଅନୁଗ୍ରହ-ପ୍ରାର୍ଥୀ ବହୁ ବିଦ୍ୟାର୍ଥୀ ଏବଂ ଅନ୍ୟ ଲୋକଙ୍କ ଯୋଗୁଁ ସେସମୟର ଓଡ଼ିଶାର ସାହିତ୍ୟିକମାନଙ୍କ ମଧ୍ୟରେ ସେ ସର୍ବପ୍ରଧାନ ହୋଇଥିଲେ। ୧୮୭୬ ମସିହାରୁ ୧୮୮୬ ମସିହା ମଧ୍ୟରେ ସେ ମୁଖ୍ୟତଃ ପାଠ୍ୟପୁସ୍ତକ ଲେଖୁଥିଲେ। ତାହାପରେ ୧୮୮୬ ମସିହାଠାରୁ ୧୮୯୭ ମସିହା ମଧ୍ୟରେ ତାଙ୍କର ଅଧିକାଂଶ କାବ୍ୟ ରଚିତ ଓ ପ୍ରକାଶିତ ହୋଇଥିଲା। ତାଙ୍କର ଶେଷ ପାଠ୍ୟପୁସ୍ତକ 'ବ୍ୟାକରଣ ପ୍ରବେଶ' ୧୮୯୯ ମସିହାରେ ପ୍ରକାଶିତ ହୋଇଥିଲା। ତାଙ୍କର ପ୍ରାୟ ସମସ୍ତ ପାଠ୍ୟପୁସ୍ତକ ଦେଢ଼

ପ୍ରେସ୍‌ରେ ପ୍ରକାଶିତ ହୋଇଥିଲା ଏବଂ ଶିକ୍ଷାବିଭାଗର ଜଏଣ୍ଟ ଇନ୍‌ସପେକ୍ଟର୍ ହିସାବରେ ପାଠ୍ୟପୁସ୍ତକ ନିର୍ବାଚନରେ ତାଙ୍କର ବିଶେଷ ପ୍ରଭାବ ଥିଲା। ସେ ଲେଖିଥିବା ବା ସୁପାରିସ୍ କରିଥିବା ପାଠ୍ୟପୁସ୍ତକମାନଙ୍କୁ ସ୍କୁଲମାନଙ୍କରେ ଶିକ୍ଷକ ଓ ପ୍ରଧାନ ଶିକ୍ଷକମାନେ ସ୍ୱଭାବତଃ ଅଗ୍ରାଧିକାର ଭିତ୍ତିରେ ପ୍ରଚଳନ କରୁଥିଲେ। ସେଥିଯୋଗୁଁ ଖବରକାଗଜମାନଙ୍କରେ ଏବଂ ସାଧାରଣ ଭାବରେ ସମାଲୋଚନା ହେଲା ଯେ ସେ ଦେଜ୍ ପ୍ରେସ୍‌କୁ ଏବଂ ନିଜର ବନ୍ଧୁ ଓ ପ୍ରିୟଲୋକମାନଙ୍କୁ ଅନୁଗ୍ରହ ପ୍ରଦର୍ଶନ କରୁଛନ୍ତି। ସେ ସମୟରେ ଅନ୍ୟତମ ପାଠ୍ୟପୁସ୍ତକ ଲେଖକ ଗୋବିନ୍ଦ ରଥ ତାଙ୍କ ବିରୁଦ୍ଧରେ ପ୍ରିୟାପ୍ରୀତିତୋଷଣର ଅଭିଯୋଗ କରି ଶିକ୍ଷାବିଭାଗର ଉଚ୍ଚ କର୍ତ୍ତୃପକ୍ଷଙ୍କ ନିକଟରେ ଗୋଟିଏ ଲିଖିତ ଆପତ୍ତି କଲେ। ୧୮୯୦ ମସିହାରେ ତତ୍କାଳୀନ ଇନ୍‌ସପେକ୍ଟର୍ ବ୍ରହ୍ମମୋହନ ମଲ୍ଲିକ ସେ ଅଭିଯୋଗର ତଦନ୍ତ କରି ତାହା ପ୍ରତ୍ୟାଖ୍ୟାନ କରିଥିଲେ। ଏ ସବୁ ଅଭିଯୋଗ ହେତୁ ସେ ଆଉ ପାଠ୍ୟପୁସ୍ତକ ଲେଖିଲେ ନାହିଁ। ୧୮୯୨ ମସିହାରେ ସେ ଓଡ଼ିଶା ଡିଭିଜନ୍‌ର ଶିକ୍ଷାବିଭାଗର ଆକ୍ଟିଂ ଇନ୍‌ସପେକ୍ଟର୍ ଭାବେ ପଦୋନ୍ନତି ପାଇଲେ।

ମାତ୍ର ପାଠ୍ୟପୁସ୍ତକ ବିଷୟରୁ ଶିକ୍ଷିତ ଲୋକମାନଙ୍କ ମଧ୍ୟରେ ତାଙ୍କର ଅନେକ ଶତ୍ରୁ ହୋଇଥିଲେ। ସେମାନେ ତାଙ୍କର କାବ୍ୟ-କବିତାର କଥାବସ୍ତୁକୁ ମଧ୍ୟ ତୀବ୍ର ସମାଲୋଚନା କଲେ; ଯଦିଓ ତାଙ୍କର ଲେଖାର ଶୈଳୀକୁ ସମସ୍ତେ ପ୍ରଶଂସା କରୁଥିଲେ। ସେମାନେ ସମାଲୋଚନା କରୁଥିଲେ ଯେ ତାଙ୍କ କାବ୍ୟମାନଙ୍କର କଥାବସ୍ତୁ ଓଡ଼ିଶାର ନୈତିକ ମୂଲ୍ୟବୋଧ ଏବଂ ଲୋକମାନଙ୍କର ପାରମ୍ପରିକ ରୁଚିବିରୁଦ୍ଧ ଥିଲା। ୧୮୯୩ ମସିହାରେ ତାଙ୍କର ସମର୍ଥକମାନେ ତାଙ୍କୁ ଉପେନ୍ଦ୍ରଭଞ୍ଜଙ୍କଠାରୁ ଉତ୍କୃଷ୍ଟ କବି ବୋଲି 'ବିଜୁଳି' ନାମରେ ବାମଣ୍ଡାରୁ ପ୍ରକାଶିତ ପତ୍ରିକାରେ ପ୍ରତିପାଦିତ କରୁଥିଲେ। ତାହାର ପ୍ରତିବାଦରେ କଟକର 'ଇନ୍ଦ୍ରଧନୁ' ନାମରେ ଗୋଟିଏ ପତ୍ରିକା ତାଙ୍କୁ ତୀବ୍ର ସମାଲୋଚନା କରୁଥିଲା। 'ବିଜୁଳି' ବାମଣ୍ଡାରୁ ସୁଢ଼ଳଦେବଙ୍କ ପୃଷ୍ଠପୋଷକତାରେ ଏବଂ 'ଇନ୍ଦ୍ରଧନୁ' କଟକରୁ ଉତ୍କଳ ଦୀପିକାର ପୃଷ୍ଠପୋଷକତାରେ ପ୍ରକାଶିତ ହେଉଥିଲା। 'ବିଜୁଳି'ରେ ନୀଳମଣି ବିଦ୍ୟାରତ୍ନ, ସୁଢ଼ଳଦେବ, ବିଶ୍ୱନାଥ କର ଏବଂ ଚନ୍ଦ୍ରମୋହନ ମହାରଣା ପ୍ରଭୃତି ଲେଖୁଥିଲେ। 'ଇନ୍ଦ୍ରଧନୁ'ରେ ଗୌରୀଶଙ୍କର ରାୟ, ଗୋପାଳବଲ୍ଲଭ ଦାସ, ଦାମୋଦର ପଟ୍ଟନାୟକ ଓ ସୁଦାମ ଚରଣ ନାୟକ ପ୍ରଭୃତି ଲେଖୁଥିଲେ। ଉତ୍କଳ ଦୀପିକାର ସ୍ତମ୍ଭମାନଙ୍କରେ ରାଧାନାଥଙ୍କର ଜାତୀୟ ଇତିହାସ ପ୍ରତି ନିଷ୍ଠୁରତା ଏବଂ ଓଡ଼ିଶାର ଚିରାଚରିତ ଚଳଣିକୁ ଓଲଟା ଭାବରେ ଦେଖୁଥିବା ପ୍ରେମ-ବ୍ୟାପାରର କାବ୍ୟାୟନକୁ ଘୋର ବିରୋଧ କରାଯାଉଥିଲା। 'ନନ୍ଦିକେଶ୍ୱରୀ' ଏବଂ 'ପାର୍ବତୀ' କାବ୍ୟରୁ ଉଦାହରଣ ଦେଇ ଉତ୍କଳ ଦୀପିକାରେ ସମାଲୋଚନା

କରାଯାଉଥିଲା ଯେ କବିଙ୍କର କଳ୍ପନା ସମ୍ଭୃତ କାବ୍ୟକବିତା ଅଶ୍ରାବ୍ୟ, ଅପାଠ୍ୟ, ଜଘନ୍ୟ, ନୀଚ୍ ଓ କଦର୍ଯ୍ୟ। ପରିଶେଷରେ ରାଧାନାଥ ଓଡ଼ିଶାର ପ୍ରାଚୀନ ସାହିତ୍ୟ ଓ କବିମାନଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରିବାରୁ 'ବିଜୁଳି' ୧୮୯୪ ଏବଂ 'ଇନ୍ଦ୍ରଧନୁ' ୧୮୯୭ରେ ବନ୍ଦହୋଇଯାଇଥିଲା।

୧୮୯୭ ମସିହାରେ ରାଧାନାଥ ସରକାରଙ୍କଠାରୁ 'ରାୟବାହାଦୂର' ଉପାଧି ପାଇଥିଲେ। ମାତ୍ର ୧୮୯୯ ମସିହାରେ ତାଙ୍କର କେତେକ ବିଭାଗୀୟ ପ୍ରତିଦ୍ୱନ୍ଦ୍ୱୀ ଶତ୍ରୁ ଲୋକ ତାଙ୍କର 'ଶିବାଜୀଙ୍କର ଉତ୍ସାହବାକ୍ୟ' କବିତାରୁ ଏବଂ 'ମହାଯାତ୍ରା'ର ପଞ୍ଚମ ସର୍ଗରୁ ଉଦ୍ଧାର କରି ତାଙ୍କ ବିରୁଦ୍ଧରେ ସରକାରଙ୍କ ପାଖରେ ରାଜଦ୍ରୋହର ଅଭିଯୋଗ କରିଥିଲେ। ସେତେବେଳେ ରାଧାନାଥ ମନୋଦୁଃଖରେ ଲେଖିଥିବା ମହାଯାତ୍ରାର ଅନ୍ୟ ପାଞ୍ଚସର୍ଗ ନଷ୍ଟକରିଦେଇଥିଲେ ଏବଂ ଅନ୍ୟ ୧୮ ସର୍ଗ ଯାହା ଲେଖିବାକୁ ଯୋଜନା କରିଥିଲେ, ତାହା ବନ୍ଦ କରି ଦେଇଥିଲେ। 'ମହାଯାତ୍ରା' କାବ୍ୟ ଚିରକାଳ ପାଇଁ ଅସମ୍ପୂର୍ଣ୍ଣ ରହିଗଲା। ଉପରୋକ୍ତ ଅଭିଯୋଗର ତଦନ୍ତ ସରକାର ୧୮୯୯ ମସିହାରେ ବନ୍ଦ କରି ଦେଇଥିଲେ। ୧୯୦୦ ମସିହା ଜାନୁଆରୀ ମାସରେ ରାଧାନାଥ ବଙ୍ଗଳାର ବର୍ଦ୍ଧମାନ ଡିଭିଜନ୍‌ର ସ୍କୁଲ ଇନ୍‌ସପେକ୍ଟରରୂପେ ନିଯୁକ୍ତ ହୋଇ ହୁଗୁଳିରେ ଅବସ୍ଥାପିତ ହୋଇଥିଲେ।

ତାଙ୍କର ବାଲେଶ୍ୱରରେ ଡେପୁଟି ଇନ୍‌ସପେକ୍ଟର୍ ଏବଂ କଟକରେ ଜଏଣ୍ଟ୍ ଏବଂ ଆକ୍ଟିଂ ଇନ୍‌ସପେକ୍ଟରରୂପେ କାର୍ଯ୍ୟକୁ ତାଙ୍କର ଉପରିସ୍ଥ ଅଫିସରମାନେ ସର୍ବଦା ଉଚ୍ଚ ପ୍ରଶଂସା କରିଥିଲେ। ବାସ୍ତବରେ ସ୍କୁଲ ପରିଦର୍ଶନ କାର୍ଯ୍ୟରେ ସେ ଅତ୍ୟନ୍ତ କର୍ତ୍ତବ୍ୟନିଷ୍ଠ ଥିଲେ। ସେ ଶିକ୍ଷକମାନଙ୍କ ସହିତ ସାଧାରଣ ଭାବରେ ମିଶୁଥିଲେ ଏବଂ ଶିକ୍ଷାଦାନ ପ୍ରଣାଳୀ ବିଷୟରେ ସେମାନଙ୍କୁ ଶିକ୍ଷା ଦେଇଥିଲେ। ସ୍କୁଲମାନଙ୍କର ଶ୍ରେଣୀମାନଙ୍କରେ ସେ ନିଜେ ଶିକ୍ଷାଦାନ କରି ଶିକ୍ଷକମାନଙ୍କୁ ଆଦର୍ଶ ଶିକ୍ଷାଦାନ ପ୍ରଣାଳୀ ବୁଝାଉଥିଲେ। ସ୍କୁଲ ଶିକ୍ଷକମାନଙ୍କ ବ୍ୟବହାର ପାଇଁ ସେ ସାହିତ୍ୟରେ ଏବଂ ମାନସାଙ୍କରେ ଆଦର୍ଶ ପ୍ରଶ୍ନାବଳୀ ବହି ଲେଖି ପ୍ରକାଶ କରିଥିଲେ। ସାହିତ୍ୟ ପ୍ରଶ୍ନାବଳୀରେ ଶିକ୍ଷକମାନଙ୍କୁ ବ୍ୟାକରଣ, ଶବ୍ଦମାନଙ୍କର ପ୍ରୟୋଗ ଏବଂ ଅର୍ଥ ବିଷୟରେ ଶିକ୍ଷାଦେବା ତାଙ୍କର ଉଦ୍ଦେଶ୍ୟ ଥିଲା। ପିଲାମାନେ କବିମାନଙ୍କର ଜୀବନୀ ଓ ସେମାନଙ୍କର ଜୀବନର ଆଦର୍ଶ ବିଷୟରେ ଏବଂ ବିଭିନ୍ନ କବି ଓ ଲେଖକମାନଙ୍କ ମଧ୍ୟରେ ତୁଳନା କରିବାରେ ଯୋଗ୍ୟତା ଅର୍ଜନ କରିବା ମଧ୍ୟ ତାଙ୍କର ଉଦ୍ଦେଶ୍ୟ ଥିଲା। ଛାତ୍ରମାନଙ୍କୁ ଲେଖାଲେଖି କରିବାକୁ ଏବଂ ବିଭିନ୍ନ ଲେଖକମାନଙ୍କ ଲେଖା ଚର୍ଚ୍ଚା କରିବାକୁ ସେ ଉପଦେଶ ଦେଉଥିଲେ।

ହୁଗୁଳିରେ ସେ ବହୁ ଶିକ୍ଷାବିତ୍ ଓ ଲେଖକମାନଙ୍କ ସମ୍ପର୍କରେ ଆସିଥିଲେ। ସେ 'ଅମୃତବଜାର ପତ୍ରିକା'ର ପ୍ରତିଷ୍ଠାତା ଶିଶିର କୁମାର ଘୋଷ, ବଙ୍ଗଳା

ପତ୍ରିକା 'ଭାରତବର୍ଷ'ର ସମ୍ପାଦକ ଜଳଧର ସେନ୍, ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ ପ୍ରଭୃତିଙ୍କ ସହିତ ବନ୍ଧୁତା ସ୍ଥାପନ କରିଥିଲେ। ବଙ୍ଗଳାର କେତେକ ଯୁବ ଲେଖକଙ୍କୁ ମଧ୍ୟ ଓଡ଼ିଆ ସାହିତ୍ୟର ମହନୀୟତା ବୁଝାଉଥିଲେ। ସେହି ଯୁବ ଲେଖକ ଓ ଲେଖିକାମାନଙ୍କ ମଧ୍ୟରେ ନଗେନ୍ଦ୍ରବାଳା ସରସ୍ୱତୀ ନାମରେ ଜଣେ ବିବାହିତା ମହିଳା ଥିଲେ। ତାଙ୍କ ସହିତ ରାଧାନାଥଙ୍କର ୧୯୦୧ ମସିହାରୁ ୧୯୦୩ ମସିହା ପର୍ଯ୍ୟନ୍ତ ଗୁପ୍ତ ପ୍ରଣୟ ହୋଇଥିଲା। ଏ ଘଟଣା ତାଙ୍କ ଜୀବନର ସବୁଠାରୁ ଅଧିକ ଦୁଃଖଦାୟକ ଏବଂ କଳଙ୍କିତ ଘଟଣା ଥିଲା। ନଗେନ୍ଦ୍ରବାଳା ତାଙ୍କଠାରୁ ପ୍ରାୟ ୩୦ ବର୍ଷ ସାନ ଥିଲେ ଏବଂ ବାହାରେ ସେ ତାଙ୍କର ଶିଷ୍ୟାରୂପେ ପରିଚିତ ହେଉଥିଲେ। ସେ ମଧ୍ୟ କେତେଥର କଟକ ଆସିଥିଲେ ଏବଂ ରାଧାନାଥଙ୍କ ସ୍ତ୍ରୀଙ୍କୁ ମାତାରୂପେ ସମ୍ମାନ ଦେଖାଉଥିଲେ। ସେ ବଙ୍ଗଳାରେ ଅନେକ କବିତାବହି ଲେଖିଥିଲେ ଏବଂ ଜଣେ କବୟିତ୍ରୀ ଏବଂ ଲେଖିକା ଭାବରେ ତାଙ୍କର ସୁନାମ ଥିଲା। ତାଙ୍କର କେତେକ କବିତା ବହିରେ ରାଧାନାଥ ମଧ୍ୟ ମୁଖବନ୍ଧ ଲେଖିଥିଲେ। ନଗେନ୍ଦ୍ରବାଳାଙ୍କୁ ଦୁରାରୋଗ୍ୟ ବ୍ୟାଧି ହୋଇଥିଲା ଏବଂ ୧୯୦୬ ମସିହାରେ ତାଙ୍କର ମୃତ୍ୟୁ ହୋଇଥିଲା। ତାଙ୍କର ମୃତ୍ୟୁରେ ରାଧାନାଥ ଅତ୍ୟନ୍ତ ମର୍ମାହତ ହୋଇଥିଲେ ଏବଂ ନଗେନ୍ଦ୍ରବାଳାଙ୍କ ସହିତ ତାଙ୍କର ଗୁପ୍ତ ପ୍ରଣୟକୁ ଗୁରୁତର ପାପ ବୋଲି ଅନୁଭବ କରି ଶେଷ ଜୀବନରେ ବହୁ ଅନୁତାପ କରିଥିଲେ। ଏହି ଅନୁତାପରେ ତାଙ୍କ ଜୀବନର ଶେଷ ତିନିବର୍ଷରେ ସେ ପାଗଳ ପ୍ରାୟ ହୋଇଯାଇଥିଲେ। ୧୯୦୩ ମସିହା ସେପ୍ଟେମ୍ବର୍ ୧୫ ତାରିଖରେ ସରକାରୀ ଚାକିରିରୁ ଅବସର ଗ୍ରହଣ କରି କଟକ ଚାଲିଆସିଥିଲେ। ଚାକିରି ଶେଷ ଆଡ଼କୁ ପଦୋନ୍ନତି ନପାଇ ଏବଂ ଚାକିରି କାଳରେ କୌଣସି ବୃଦ୍ଧି-ବେତନ ନପାଇ ସେ ମର୍ମାହତ ହୋଇଥିଲେ। ଚାକିରିର ଶେଷ ଅବସ୍ଥାରେ ୧୮୯୭ ମସିହା ପରେ ସେ ଓଡ଼ିଆ ସାହିତ୍ୟରେ ଆଉ ବଡ଼ କାବ୍ୟ-କବିତା ଲେଖିନଥିଲେ। ଯାହା ଲେଖିଥିଲେ ତାହା ତାଙ୍କର ପୂର୍ବ କାବ୍ୟ କବିତାମାନଙ୍କଠାରୁ ନିକୃଷ୍ଟ ହୋଇଥିଲା।

କଟକ ଫେରିଲା ପରେ ଓଡ଼ିଆ ସାହିତ୍ୟକୁ ତାଙ୍କର ଅବଦାନ ପାଇଁ ସେ ବହୁ ସମ୍ମାନ ପାଇଥିଲେ। ୧୯୦୩ ମସିହାରେ ସେ ଉତ୍କଳ ସାହିତ୍ୟ ସମାଜର ସଭାପତି ହୋଇଥିଲେ। ସେହି ୧୯୦୩ ମସିହା ଡିସେମ୍ବର ମାସ ଶେଷରେ ସେ ଉତ୍କଳ ସମ୍ମିଳନୀରେ ଯୋଗଦେଇ ଓଡ଼ିଆ ସାହିତ୍ୟର ଉନ୍ନତି ପାଇଁ ଗୋଟିଏ ପ୍ରସ୍ତାବ ଆଗତ କରିଥିଲେ ଏବଂ ଉତ୍କଳ ସମ୍ମିଳନୀର ପ୍ରାରମ୍ଭିକ ସଙ୍ଗୀତ "ସର୍ବେଷାଂ ନୋ ଜନନୀ ଭାରତ ଧରଣୀକଳ୍ପଲତେୟଂ" ଲେଖିଥିଲେ। ୧୯୦୬ ମସିହାରେ ତାଙ୍କ ସ୍ୱାସ୍ଥ୍ୟ ବିଶେଷ ଖରାପ ହୋଇଯାଇଥିଲା। ୧୮୯୮

ମସିହାରେ ଭୂଦେବ ମୁଖର୍ଜିଙ୍କ ମୃତ୍ୟୁ ଏବଂ ୧୯୦୪ ମସିହାରେ ସୁଦ୍ଧଳଦେବଙ୍କ ମୃତ୍ୟୁ ତାଙ୍କୁ ଅତ୍ୟନ୍ତ ଦୁଃଖ ଦେଇଥିଲା । ୧୯୦୭ ମସିହାରେ ନଗେନ୍ଦ୍ରବାଳାଙ୍କ ମୃତ୍ୟୁପରେ ପୂର୍ବ ଗୁପ୍ତ ପ୍ରଣୟ କଥା ଚିନ୍ତାକରି ସେ ନିଜର ଭାରସାମ୍ୟ ହରାଇଲେ । ସେହି ପାପ ପାଇଁ ସେ ନିଜକୁ ଘୃଣାକଲେ ଏବଂ ମୃତା ନଗେନ୍ଦ୍ରବାଳାଙ୍କ ନାମ ପ୍ରକାଶ ନକରି ତାଙ୍କୁ ଅତି ଘୃଣାଚକ୍ଷୁରେ ଦେଖିଲେ । ଅନୁତାପରେ ପାଗଳପ୍ରାୟ ହୋଇ ସେ ଆହାର ନିଦ୍ରା ତ୍ୟାଗ କଲେ ଏବଂ ଭୀଷଣ ମାନସିକ ଯନ୍ତ୍ରଣା ଅନୁଭବ କଲେ । ଶେଷକୁ ସର୍ବସାଧାରଣରେ ତାଙ୍କର ପାପ ଓ ଦୋଷକୁ ପ୍ରକାଶ କରିବାକୁ ସିଦ୍ଧାନ୍ତକଲେ । ତାଙ୍କର ବନ୍ଧୁ ବାନ୍ଧବଙ୍କ ବାରଣ ସତ୍ତ୍ୱେ ସେ 'ପାପଂ କୃତ୍ୱା ପ୍ରକାଶୟେତ୍' ମତରେ ଅଟଳ ରହିଥିଲେ ଏବଂ ତାଙ୍କର ମନର ଭାବ ୧୯୦୭ ମସିହା ଜୁଲାଇ ମାସରେ 'ଆତ୍ମନିବେଦନ' ନାମରେ ଗୋଟିଏ ପତ୍ର ପ୍ରକାଶ କରି ସର୍ବସାଧାରଣରେ ବାଣ୍ଟିଥିଲେ । ଏହି 'ଆତ୍ମନିବେଦନ' ଓଡ଼ିଆରେ ଏବଂ ବଙ୍ଗଳାରେ ହଜାରେ ଲେଖାଏଁ କପି ଛାପି ବଙ୍ଗଳାରେ ଲେଖାହୋଇଥିବା କପିଗୁଡ଼ିକୁ ବଙ୍ଗଳାକୁ ପଠାଇଥିଲେ ଏବଂ ଓଡ଼ିଆରେ ଲେଖାହୋଇଥିବା କପିଗୁଡ଼ିକୁ ଓଡ଼ିଶାରେ ବାଣ୍ଟିଥିଲେ । ସେ 'ଆତ୍ମନିବେଦନ' ମଧ୍ୟ ସେ ସମୟର ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ହୋଇଥିଲା । ଏପରିକି ସେଥିରୁ ଖଣ୍ଡିଏ ସେ ତତ୍‌କାଳୀନ ବଙ୍ଗଳାର ଲାଟ୍ ସାହେବଙ୍କ ପାଖକୁ ପଠାଇଥିଲେ । ସେ ନିବେଦନରେ ନଗେନ୍ଦ୍ରବାଳାଙ୍କ ନାମ ଉଲ୍ଲେଖ କରିନଥିଲେ; କେବଳ ତାଙ୍କର ମାନସିକ ବେଦନା ବିଶଦ ଭାବରେ ଲେଖିଥିଲେ ।

ସେ ଲେଖିଥିଲେ – "ପରସ୍ତ୍ରୀ ସହସ୍ର ଭ୍ରଷ୍ଟା ହେଲେହେଁ ତାହାପ୍ରତି ସାମୟିକ ଆସକ୍ତିର ଫଳ କି ଦାରୁଣ, କି ଭୟଙ୍କର ! ବୋଧହୁଏ ଏ ସମ୍ବନ୍ଧରେ ଯେପରି ପୁସ୍ତକ ରଚନା ହେବା ଉଚିତ, ତାହା ଭାରତରେ ଏପର୍ଯ୍ୟନ୍ତ ହୋଇନାହିଁ । ମୋହର ଯେରୂପ ଯନ୍ତ୍ରଣା ଭୋଗ ହେଉଅଛି, ଏରୂପ ଯନ୍ତ୍ରଣା ଜୀବନରେ ଭୋଗ ହୋଇପାରେ କଳ୍ପନାରେ ତାହା ମନେକରିନାହିଁ । ଯନ୍ତ୍ରଣା ମାନସିକ ଓ ଶାରୀରିକ । ନରକ-ଯନ୍ତ୍ରଣା କିରୂପ ତାହା ଇହଲୋକରେ ମୁଁ ଭୋଗ କରୁଅଛି । ଅନ୍ୟର ଉପକାର କଥା ନୁହେଁ, ମୋର ନିଜର ରଚନା ଯେତେବେଳେ ମୁଁ ମନେକରେ ଯେ ମୁଁ 'ତୁଳସୀସ୍ତବକ', 'ଦରବାର' ଏବଂ 'ମହାଯାତ୍ରା' ପ୍ରଭୃତିର ରଚୟିତା, ସେତେବେଳେ ଲଜ୍ଜାରେ ମୁଁ ମ୍ରିୟମାଣ ହୋଇଥାଏ । ଭଗବାନଙ୍କର ଅପରନାମ ବିଧି, ଜଗତରେ ପ୍ରତ୍ୟେକ ଅଣୁ-ପରମାଣୁ ବିଧିଦ୍ୱାରା ଚାଳିତ ଓ ନିୟନ୍ତ୍ରିତ । ସେହି ବିଧି ମୁଁ କାହିଁକି ଲଂଘନ କଲି, ଏହାର କେଉଁ ପ୍ରତିକାର କରିବି ଏହା ଭାବି ଅସ୍ଥିର ହୁଏଁ । ...ପାପର ଏଭଳି ପ୍ରଭାବ ଯେ, ଥରେ ସେଥିରେ ପଶିଗଲେ ପାପୀ ଯେବେ ତାହା ପରିତ୍ୟାଗ କରି ପୁଣ୍ୟମାର୍ଗରେ

ବିଚ଼ରଣ କରିବାକୁ ଇଚ୍ଛାକରେ, ଆଉ ବାଟ ପାଏ ନାହିଁ। ମୋହର ଇଚ୍ଛା ମୁଁ ମୁକ୍ତଜୀବନ ପାଇ ପୁଣ୍ୟମାର୍ଗରେ ବିଚ଼ରଣ କରନ୍ତି, ସର୍ବଦା ଠିକ୍ ବାଟରେ ଥାଆନ୍ତି। ଧର୍ମ ଓ ଜନସେବାରେ ଜୀବନ ଉତ୍ସର୍ଗ କରନ୍ତି। ହାୟ, ବର୍ତ୍ତମାନ ସେ ଉପାୟରୁ ମୁଁ ବଞ୍ଚିତ। ...ଏରୂପ ପାପରୁ ଯେ ପାପୀ ମନରେ ସର୍ବଦା ଆତ୍ମହତ୍ୟାର ଦୁଶ୍ଚିନ୍ତା ଉଠିଥାଏ, ତାହା ଭୁକ୍ତଭୋଗୀ ବ୍ୟତୀତ ଅପର ଜାଣିବ କିପରି ? ହାୟ, ବର୍ତ୍ତମାନ ସୁଦ୍ଧା ଲୋକେ ମୋତେ ଋଷିତୁଲ୍ୟ ବ୍ୟକ୍ତି କହିଥାନ୍ତି। ମୁଁ ଯେଉଁଠାକୁ ଯାଇଅଛି, ଅଧିକାଂଶ ସ୍ଥାନରେ ଲୋକେ ମୋତେ ଏହି ରୂପ କହନ୍ତି ଓ କହିଅଛନ୍ତି। ବାସ୍ତବିକ ଜୀବନର ଅଧିକାଂଶ ସମୟରେ ମୋହର ଆଚ଼ରଣ ସେହିପରି ଥିଲା। ହୁଗୁଳିରେ ଶେଷ ତିନି ବର୍ଷରେ ମଧ୍ୟେ ମଧ୍ୟେ ମୋହର ଚରିତ୍ର କଳୁଷିତ ହୋଇଗଲା। ହାୟ, ଜୀବନର ଅନ୍ତିମ ସମୟରେ ଏରୂପ ଦୁର୍ଗତି କେତେ ଜଣଙ୍କର ହୋଇଥାଏ ? ...ପ୍ରଥମରୁ ପାପ ମୋତେ ସାହିତ୍ୟ ପରିଚ୍ଛଦରେ ପ୍ରଲୋଭିତ କଲା। ସେତେବେଳେ ତାହାର ମୂର୍ତ୍ତି ଦେଖି ସୁଦ୍ଧା ଭଲରୂପେ ଦେଖିନାହିଁ। ବର୍ତ୍ତମାନ ତାହାର ରୂପ ପ୍ରତିକ୍ଷଣରେ ଚାରିଆଡ଼େ ଦେଖୁଅଛି। ...ମନେକରିଥିଲି, ପେନ୍‌ସନ୍ ଘେନି ଅବସରମେ ମାତୃଭାଷାର (ଓଡ଼ିଆ ଭାଷାର) ସେବା କରିବି। ଧର୍ମ ଏବଂ ନୀତି ସମ୍ବନ୍ଧେ ସଂସ୍କୃତରେ କବିତା ଲେଖିବି। ମୋହର ଆଶା କେବଳ ଆଶାରେ ପରିଣତ ହେଲା। ସଂସାର ନିକଟରେ ମୋହର ବିନୀତ ନିବେଦନ, କୃତାଞ୍ଜଳିପୁଟରେ ନିବେଦନ, ମୁଁ ନିଜର ସ୍ଖଳନ ସକାଶେ ଆପଣାକୁ ଯେପରି ତିରସ୍କାର, ଯେରୂପ ଧିକ୍କାର ଦେଉଅଛି, ସଂସାର ତାହା ଅପେକ୍ଷା ଅଧିକ ଦେଇ ପାରିବ ନାହିଁ। ସଂସାର ନିକଟରେ ମୋହର କରପୁଟରେ ନିବେଦନ, ମୋହର ଦୁଷ୍କର୍ମ ସକାଶେ ମୋହର ଲେଖାକୁ ଯେପରି କେହି ଦୋଷ ନ ଦିଅନ୍ତି। ମୁଁ ଯାହା ଲେଖିଥିଲି ସରଳ ମନରେ ଲେଖିଥିଲି। ବର୍ତ୍ତମାନ ମୁଁ ମହାପାପୀ ହେଲେହେଁ 'ଧର୍ମ ଏକା ସିନା ମହତପଣିଆ' ଏହାହିଁ ମୋହର ମନର କଥା। ୫୨ ବର୍ଷ ପର୍ଯ୍ୟନ୍ତ ମୋହର କୌଣସି ଗୁରୁତର ସ୍ଖଳନ ହୋଇନଥିଲା। ୫୩ ବର୍ଷ ବୟସରେ ବିଦେଶରେ ମୁଁ କୌଣସି ବିଦୁଷୀ ମହିଳା ସହିତ ପରିଚ଼ିତ ହେଲି...''

ସେ ତାଙ୍କର ସ୍ତ୍ରୀଙ୍କ ଉଦ୍ଦେଶ୍ୟରେ ମଧ୍ୟ ପାପ ପ୍ରକାଶ କରି ''ସତୀ ପ୍ରତି ସତୀଦ୍ରୋହୀ ପତିର ଉକ୍ତି'' ବୋଲି ଗୋଟିଏ କବିତା ଲେଖିଥିଲେ। ତାଙ୍କର ଏହି ପାପ ପ୍ରକାଶକୁ ଲୋକମାନେ ଘୃଣା ନକରି ତାଙ୍କର ପ୍ରଶଂସା କରିଥିଲେ। ତାଙ୍କର ଏହା ଗୋଟିଏ ସାହସିକ ପଦକ୍ଷେପ ବୋଲି ଲୋକମାନେ କହିଥିଲେ। ବାସ୍ତବରେ ନୀତିବାନ୍ ଓ ନୀତିସାହିତ୍ୟ ଲେଖକ ରାଧାନାଥଙ୍କ ପକ୍ଷରେ ଏପରି ପଦସ୍ଖଳନ ବିସ୍ମୟକର। ଏହାଦ୍ୱାରା ସେ ସାମୟିକ ମାନସିକ

ଦୁର୍ବଳତାର ବଶବର୍ତ୍ତୀ ହୋଇଥିଲେ। ପରେ ଯେତେବେଳେ ନୀତିପୂର୍ଣ୍ଣ ଦିବ୍ୟଚକ୍ଷୁରେ ଏହା ଦେଖିଛନ୍ତି, ସେତେବେଳେ ଏପରି ଅନୁତାପ ସ୍ୱାଭାବିକ।

ଏ ନିବେଦନ ପ୍ରକାଶନର କେତେ ମାସ ପରେ ସେ ତାଙ୍କର ପୁତ୍ର ଶଶିଭୂଷଣଙ୍କ ସହିତ ୧୯୦୮ ମସିହା ଜାନୁଆରୀ ୧୯ ତାରିଖରେ ପାଲଲହଡ଼ା ଓ ବାମଣ୍ଡାରେ ତାଙ୍କ ପୂର୍ବ-ପରିଚିତ ସ୍ଥାନମାନ ଦେଖିବାକୁ ଯାଇଥିଲେ। ସେତେବେଳକୁ ବାମଣ୍ଡାର ରାଜା ସୁଢ଼ଳଦେବ ମରିଯାଇଥିଲେ। ସେ ଦୁଇ ରାଜ୍ୟର ତତ୍କାଳୀନ ରାଜାମାନେ ତାଙ୍କର ଯଥୋଚିତ ଆଦର କରିଥିଲେ। ଫେରିଲାବେଳେ ବଳଦଗାଡ଼ିରେ ମେରାମୁଣ୍ଡଳିରେ ରେଳଗାଡ଼ି ଧରିବାକୁ ଆସିବା ସମୟରେ ଗୋବିନ୍ଦପୁର ପାଖରେ ୧୯୦୮ ମସିହା ଅପ୍ରେଲ୍ ୭ ତାରିଖରେ ସେ ରକ୍ତ-ଆମାଶୟ ରୋଗରେ ପୀଡ଼ିତ ହେଲେ। ସେହି ଅବସ୍ଥାରେ ସେଦିନ ସେ କଟକ ଫେରିଲେ। ସେଠାରେ ଜ୍ୱର ଏବଂ ଆମାଶୟ ରୋଗରେ ସେ ଶଯ୍ୟାଶୟୀ ହେଲେ। ସେହି ରୋଗରେ ୧୯୦୮ ମସିହା ଅପ୍ରେଲ୍ ମାସ ୧୮ ତାରିଖରେ ତାଙ୍କ ତିରୋଧାନ ହେଲା। ତାଙ୍କର ମରଶରୀରକୁ କଟକ ସତୀଚଉରା ଶ୍ମଶାନରେ ସଂସ୍କାର କରାଯାଇଥିଲା। ପରେ ମଧୁସୂଦନ ଦାସଙ୍କ ଦାନରେ ସେଠାରେ ଗୋଟିଏ ସ୍ମୃତି-ସ୍ତମ୍ଭ ନିର୍ମିତ ହୋଇଥିଲା। ତାଙ୍କର ମୃତ୍ୟୁରେ ସମସ୍ତ ଉତ୍କଳବାସୀ ଗଭୀର ଶୋକ ପ୍ରକାଶ କରି ତାଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ। ବର୍ତ୍ତମାନ ଉତ୍କଳର ବହୁ ସ୍ଥାନରେ ତାଙ୍କର ପ୍ରତିମୂର୍ତ୍ତି ସ୍ଥାପିତ ହୋଇଛି ଏବଂ ତାଙ୍କର ଜନ୍ମ ଓ ଶ୍ରାଦ୍ଧ ଦିବସ ପାଳିତ ହେଉଛି। ତାଙ୍କର ମୃତ୍ୟୁ ବେଳକୁ ତାଙ୍କ ସ୍ତ୍ରୀ ଓ ଏବଂ ତିନି ପୁଅ ଜୀବିତ ଥିଲେ।

ରାଧାନାଥଙ୍କ ଜୀବନ ଓ କାର୍ଯ୍ୟ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ, ସେ ବାଲେଶ୍ୱର ଜିଲ୍ଲାର ଗୋଟିଏ ଅଖ୍ୟାତ ପଲ୍ଲୀରେ ଗୋଟିଏ ନିମ୍ନ ମଧ୍ୟବିତ୍ତ ପରିବାରରେ ଜନ୍ମ ହୋଇ ତାଙ୍କର ପ୍ରତିଭା, ଅଧ୍ୟବସାୟ ଓ ସାଧନା ଫଳରେ ତାଙ୍କ ସମୟର ଉତ୍କଳୀୟ ସମାଜର ଶୀର୍ଷ ସ୍ଥାନକୁ ଉଠିପାରିଥିଲେ ଏବଂ ଓଡ଼ିଆ ସାହିତ୍ୟରେ ଏକ ନବଯୁଗ ସୃଷ୍ଟି କରିଥିଲେ। ମାଟ୍ରିକ୍ୟୁଲେଶନ୍ ପରେ ସ୍କୁଲ କଲେଜ ଶିକ୍ଷା ଶେଷକରିଥିଲେ ମଧ୍ୟ ସେ ନିଜର ଇଚ୍ଛାଶକ୍ତିରେ ନିଜେ ଅଧ୍ୟୟନ କରି ଇଂରାଜୀ, ସଂସ୍କୃତ, ଓଡ଼ିଆ, ବଙ୍ଗଳା ଏବଂ ହିନ୍ଦୀ ଭାଷା ଓ ସାହିତ୍ୟରେ ଜଣେ ଅତି ବଡ଼ ବିଦ୍ୱାନ୍ ଓ ପଣ୍ଡିତ ବ୍ୟକ୍ତି ହୋଇଥିଲେ। ତାଙ୍କ ସମୟରେ ସେ ଓଡ଼ିଶାରେ ଶିକ୍ଷା ନୀତି ନିର୍ଦ୍ଧାରଣରେ ପ୍ରଧାନ ଭୂମିକା ଗ୍ରହଣ କରିଥିଲେ ଏବଂ ଶିକ୍ଷାବିଭାଗର ଉଚ୍ଚ ପଦବୀମାନଙ୍କରେ ରହି ତାହା କାର୍ଯ୍ୟକାରୀ କରିଥିଲେ। ତାଙ୍କର ଲେଖା ଏବଂ ଶିକ୍ଷା ଓ ଶିକ୍ଷାଦାନ ପ୍ରଣାଳୀ କ୍ଷେତ୍ରରେ ଅବଦାନ ହେତୁ ସେ ଓଡ଼ିଶାର ପରବର୍ତ୍ତୀ ପୁରୁଷର ଶିକ୍ଷକ ଓ ଛାତ୍ରମାନଙ୍କର ପଥପ୍ରଦର୍ଶକ

ହୋଇଥିଲେ। ତାଙ୍କର କାବ୍ୟ, କବିତା ଓ ଗଦ୍ୟ ସାହିତ୍ୟ ଲେଖାଦ୍ୱାରା ସେ ଉନବିଂଶ ଶତାବ୍ଦୀରେ ଓଡ଼ିଆ ଜାତିର ପୁନରୁତ୍ଥାନ ନିମିତ୍ତ ନବଜାଗରଣ ସମୟରେ ଗୋଟିଏ ନୂତନ ଯୁଗ ଆରମ୍ଭ କରିଥିଲେ। ତାଙ୍କ ସମୟରେ ଏବଂ ପରବର୍ତ୍ତୀ ଯୁଗରେ ଓଡ଼ିଶାର ଲେଖକ, କବି ଓ ସାହିତ୍ୟିକ ମାନଙ୍କୁ ବିଶେଷଭାବରେ ପ୍ରଭାବିତ କରିଥିଲେ। ତାଙ୍କ ସମୟର ଓଡ଼ିଆ କବି ଓ ଲେଖକମାନଙ୍କ ମଧ୍ୟରେ ସେ ଅଗ୍ରଣୀ ଥିଲେ ଏବଂ ଅନ୍ୟ କବି ଓ ଲେଖକମାନେ ତାଙ୍କରି ଶୈଳୀ ଅନୁସରଣ କରି କାବ୍ୟ-କବିତା ଲେଖୁଥିଲେ। ସେ ସମୟ ଓଡ଼ିଆ ସାହିତ୍ୟରେ 'ରାଧାନାଥ ଯୁଗ' ବୋଲି ଅଭିହିତ ହେଉଅଛି।

କ୍ଷୀଣ ଶରୀର, ରୋଗ ଓ ଦୁର୍ବଳ ସ୍ୱାସ୍ଥ୍ୟ ସତ୍ତ୍ୱେ ସେ କଠିନ ପରିଶ୍ରମ ଓ ଅଧ୍ୟବସାୟ କରି ଓଡ଼ିଆ ସାହିତ୍ୟକୁ ଅମୂଲ୍ୟ ଓ ଚିରନ୍ତନ ଅବଦାନ ଦେଇଯାଇଛନ୍ତି। ତାଙ୍କ ଜୀବନ କାଳରେ ସେ ରାଜା ମହାରାଜା, ଜମିଦାର, କବି, ଲେଖକ ଏବଂ ସବୁ ଶ୍ରେଣୀର ଶିକ୍ଷିତ ଲୋକଙ୍କର ପ୍ରଶଂସାଭାଜନ ହୋଇଥିଲେ ଏବଂ ତାଙ୍କର କର୍ତ୍ତବ୍ୟନିଷ୍ଠା ଏବଂ ଆଦର୍ଶ ଶିକ୍ଷାଦାନ କାର୍ଯ୍ୟ ଦ୍ୱାରା ସରକାର ଏବଂ ଶିକ୍ଷିତ ଜନସାଧାରଣଙ୍କର ପ୍ରୀତିଭାଜନ ହୋଇଥିଲେ ଓ ସମାଜରେ ବହୁ ସମ୍ମାନ ପାଇଥିଲେ। ଗୋଟିଏ ବଙ୍ଗାଳୀ ପରିବାରରେ ଜନ୍ମହୋଇ ସେ ଦେଶପ୍ରେମ ଓ ଉଦାର ଭାବ ଘେନି ଓଡ଼ିଆ ସାହିତ୍ୟକୁ ଅବଦାନ ହେତୁ ଓଡ଼ିଆ ସାହିତ୍ୟ ଇତିହାସରେ ଚିର ପ୍ରତିଷ୍ଠିତ ହୋଇଛନ୍ତି।

## ରାଧାନାଥଙ୍କ ସାହିତ୍ୟ-କୃତି –

ରାଧାନାଥଙ୍କ ରଚନାବଳୀ ସାଧାରଣତଃ ଛଅ ଭାଗରେ ବିଭକ୍ତ କରାଯାଇଛି; ଯଥା– ବଙ୍ଗଳାରେ ଲିଖିତ ତାଙ୍କର କବିତାବଳୀ, ଓଡ଼ିଆରେ ରଚିତ ବିଭିନ୍ନ ବିଷୟରେ ପାଠ୍ୟପୁସ୍ତକ, ଅନ୍ୟ ଭାଷାର କାବ୍ୟ-କବିତାମାନଙ୍କର ଓଡ଼ିଆ ଭାଷାରେ ଅନୁବାଦ, ଓଡ଼ିଆରେ ରଚିତ ତାଙ୍କର ଗଦ୍ୟ-ସାହିତ୍ୟ, ଓଡ଼ିଆରେ ଲିଖିତ କବିତାବଳୀ ଏବଂ ତାଙ୍କର କାବ୍ୟମାନ। ଶେଷୋକ୍ତ ତାଙ୍କର କାବ୍ୟମାନ ଓଡ଼ିଆ ସାହିତ୍ୟକୁ ସର୍ବଶ୍ରେଷ୍ଠ ଅବଦାନ।

ତାଙ୍କର ମାତୃଭାଷା ବଙ୍ଗଳା ଥିଲା ଏବଂ ତାଙ୍କ ଜୀବନର ତରୁଣ ଅବସ୍ଥାରେ ସେ ବଙ୍ଗଳାରେ କବିତା ଲେଖିବାକୁ ଆରମ୍ଭ କରିଥିଲେ। ସେ କବିତାରୁ ଅନେକ ସେ ସମୟର ବଙ୍ଗଳା ପତ୍ରପତ୍ରିକାରେ ପ୍ରକାଶ ପାଇଥିଲା। ପରେ ସେ ସେସବୁ ଏକତ୍ର କରି 'କବିତାବଳୀ'– ପ୍ରଥମ ଭାଗ, 'କବିତାବଳୀ'– ଦ୍ୱିତୀୟ ଭାଗ ଏବଂ 'ଲେଖାବଳୀ' ରୂପେ ଯଥାକ୍ରମେ ୧୮୬୮, ୧୮୭୮ ଏବଂ ୧୯୦୨ ମସିହାରେ ପ୍ରକାଶ କରିଥିଲେ। ସେ ସମୟରେ ବଙ୍ଗଳାର କବି

ମାଇକେଲ୍ ମଧୁସୂଦନ ଦତ୍ତ ଏବଂ ନବୀନଚନ୍ଦ୍ର ସେନ୍‌ଙ୍କ ଲେଖାଦ୍ୱାରା ପ୍ରଭାବିତ ହୋଇ ତରୁଣ ବୟସରେ ସେ ବଙ୍ଗଳାରେ କବିତା ଲେଖୁଥିଲେ ଏବଂ କାଳିଦାସଙ୍କ କେତେକ ସଂସ୍କୃତ କାବ୍ୟକୁ ବଙ୍ଗଳାରେ ଅନୁବାଦ କରିଥିଲେ। ମାତୃଭାଷାରେ ଲିଖିତ ହୋଇଥିବାରୁ ସେସବୁ ଲେଖାରେ ସ୍ୱାଭାବିକ ସ୍ପନ୍ଦନ ଥିଲା ଏବଂ ତାଙ୍କ ସମୟର ବଙ୍ଗଳା ଲେଖକମାନେ ସେଗୁଡ଼ିକୁ ପ୍ରଶଂସା କରିଥିଲେ।

ଓଡ଼ିଶାର ଶିକ୍ଷାବିଭାଗର ଡେପୁଟି ଇନସ୍‌ପେକ୍ଟର୍ ଏବଂ ପରେ ଜଏଣ୍ଟ୍ ଇନସ୍‌ପେକ୍ଟର୍ ନିଯୁକ୍ତ ହେବା ପରେ ସେ ଓଡ଼ିଆରେ ପାଠ୍ୟପୁସ୍ତକ ଲେଖିଲେ। ସେ ପାଠ୍ୟପୁସ୍ତକ କେବଳ ସାହିତ୍ୟ ବିଷୟରେ ସୀମାବଦ୍ଧ ନଥିଲା। ବ୍ୟାକରଣ, ଭୂଗୋଳ, ଜ୍ୟାମିତି ଏବଂ ମେନ୍‌ସୁରେସନ୍ ପ୍ରଭୃତି ବିଷୟରେ ସେ ଏକାକୀ କିମ୍ବା ଅନ୍ୟମାନଙ୍କ ସହିତ ଯୁଗ୍ମ-ଲେଖକ ଭାବରେ ପାଠ୍ୟପୁସ୍ତକ ଲେଖିଥିଲେ। ଏହି ପାଠ୍ୟପୁସ୍ତକ ସବୁ ସେ ପ୍ରଧାନତଃ ୧୮୭୬ ମସିହାଠାରୁ ୧୮୮୬ ମସିହା ସମୟ ମଧ୍ୟରେ ଲେଖିଥିଲେ। ସେସବୁ ପାଠ୍ୟପୁସ୍ତକ ଅତି ଉଚ୍ଚ ମାନର ହୋଇଥିଲେ ମଧ୍ୟ ଅନ୍ୟ ପାଠ୍ୟପୁସ୍ତକ ଲେଖକମାନେ ତାଙ୍କ ନାମରେ ବହୁ ଅପପ୍ରଚାର ଏବଂ ଅଭିଯୋଗ କରିଥିଲେ।

୧୮୭୩ ମସିହାଠାରୁ ସେ ଓଡ଼ିଆରେ କବିତା ଲେଖିବାକୁ ଆରମ୍ଭ କରିଥିଲେ। ସେହି ବର୍ଷ ସେ କାଳିଦାସଙ୍କର 'ମେଘଦୂତ' କାବ୍ୟର ଓଡ଼ିଆରେ ପଦ୍ୟାନୁବାଦ କରିଥିଲେ। ଅନୁବାଦ ହେଲେହେଁ ଏହା ଗୋଟିଏ ମୌଳିକ ଲେଖାରୂପେ ଜନପ୍ରିୟ ହୋଇଥିଲା। ପରେ ୧୮୯୪ ମସିହାରେ ସେ ତୁଳସୀଦାସଙ୍କ ହିନ୍ଦୀରେ ଲିଖିତ ରାମଚରିତମାନସରୁ କେତେକ ଅଂଶ 'ତୁଳସୀ ସ୍ତବକ' ନାମରେ ଓଡ଼ିଆ କବିତା ଲେଖିଥିଲେ।

ସେହି ୧୮୭୩ ମସିହା ସମୟରେ ସେ ଓଡ଼ିଆରେ ଗଦ୍ୟ ରଚନା କରିବାକୁ ଉଦ୍ୟମ କଲେ। ସେହି ବର୍ଷ ତାଙ୍କର 'ଇଟାଲୀୟ ଯୁବା' ଏବଂ 'ବିବେକୀ' ନାମରେ ଦୁଇଗୋଟି ଗଦ୍ୟ-ରଚନା 'ଉତ୍କଳ ଦର୍ପଣ'ରେ ପ୍ରକାଶ ପାଇଥିଲା। ଇଟାଲୀୟ ଯୁବା ବିଦେଶୀ ସାହିତ୍ୟରୁ ସଂଗୃହୀତ ହୋଇଥିଲା; ମାତ୍ର ବିବେକୀ ତାଙ୍କର ମୌଳିକ ଲେଖା ଥିଲା। ସେଥିରେ ସେ ଲୋକମାନଙ୍କୁ ଜୀବନରେ ବିଭିନ୍ନ ସମସ୍ୟାମାନ ସାହସ ଓ ଧୈର୍ଯ୍ୟର ସହ କିପରି ସମ୍ମୁଖୀନ ହେବାକୁ ହେବ, ସେସବୁ ବିଷୟରେ ଉପଦେଶ ଦେଇଥିଲେ। ତାଙ୍କର ଅନ୍ୟ ଗଦ୍ୟଲେଖା ମଧ୍ୟରେ କବି ଗଙ୍ଗାଧର ମେହେର ପ୍ରଭୃତିଙ୍କୁ ତାଙ୍କର ପତ୍ର ଏବଂ ଶେଷ ଜୀବନରେ ପ୍ରକାଶିତ ହୋଇଥିବା 'ନିବେଦନପତ୍ର' ପ୍ରଭୃତି ଅନ୍ତର୍ଭୁକ୍ତ। ସେ ସାଧାରଣତଃ ଜଣେ ପ୍ରଖ୍ୟାତ କବି ଭାବରେ ପରିଚିତ। ତାଙ୍କର ଗଦ୍ୟ-ରଚନା ବେଶି ନାହିଁ।

ତାଙ୍କର ଲିଖିତ କବିତା ମଧ୍ୟରେ ଅନେକ ଛୋଟ ଛୋଟ କବିତା ଅନ୍ତର୍ଭୁକ୍ତ।

ସେଗୁଡ଼ିକ 'କବିତାବଳୀ' ପ୍ରଥମ ଓ ଦ୍ୱିତୀୟ ଭାଗରେ ମଧୁସୂଦନ ରାଓଙ୍କ କବିତା ସହିତ ପ୍ରକାଶ ପାଇଥିଲା ଏବଂ ପାଠ୍ୟପୁସ୍ତକରୂପେ ପ୍ରଚଳିତ ହୋଇଥିଲା। ସେଗୁଡ଼ିକ ମଧ୍ୟରେ 'ପବନ' ଏବଂ 'ଶିବାଜୀଙ୍କର ଉତ୍ସାହବାକ୍ୟ' ପ୍ରଖ୍ୟାତ। ସେଥିରେ ଉଭୟ ଇଂରାଜୀ ଓ ବଙ୍ଗଳା କବିତାର ପ୍ରଭାବ ଥିବା ପରିଲକ୍ଷିତ ହୁଏ। ତାଙ୍କର ଅନ୍ୟ କବିତା 'ବେଣୀସଂହାର', 'ଉର୍ବଶୀ', 'ବାଣହରଣ' ଓ 'ଦୁର୍ଯ୍ୟୋଧନର ରକ୍ତନଦୀ ସନ୍ତରଣ' ମହାଭାରତର ବିଷୟବସ୍ତୁ ଉପରେ ଆଧାରିତ ଏବଂ 'ଶ୍ମଶାନ ଦୃଶ୍ୟ' ନିଜ ଅନୁଭୂତି ଉପରେ ଆଧାରିତ। ତାଙ୍କର ଅନ୍ୟ ବହୁ କବିତା– 'ଦଶରଥ ବିୟୋଗ', 'କାଳିଦାସ ସୁକ୍ତୟଃ', 'ଭାରତ ଗୀତିକା', 'ଧବଳେଶ୍ୱରସ୍ତୋତ୍ରଂ', 'ଏକାଗ୍ରତା', 'ସାବିତ୍ରୀ ଚରିତ', 'ସ୍ୱୀକାରୋକ୍ତି', 'ସତୀ ପ୍ରତି ସତୀଦ୍ରୋହୀ ପତିର ଉକ୍ତି' ପ୍ରଭୃତି ତାଙ୍କର ଶେଷ ଜୀବନ ଏବଂ ଅବସର କାଳରେ ଲିଖିତ। ଜୀବନର ଶେଷ ପର୍ଯ୍ୟନ୍ତ ସେ ଛୋଟ ଛୋଟ କବିତା ଲେଖୁଥିଲେ। ସମାଲୋଚକମାନେ କହନ୍ତି ଯେ ଏସବୁ କବିତା ତାଙ୍କ ଜୀବନର ଶେଷ ପର୍ଯ୍ୟାୟ ଏବଂ ଅବସର କାଳରେ ଲିଖିତ ହୋଇଥିବାରୁ ଏଗୁଡ଼ିକ ତାଙ୍କ ପୂର୍ବ କାବ୍ୟମାନଙ୍କ ତୁଳନାରେ ଦୁର୍ବଳ ଓ ଉନ୍ମାଦନାରହିତ।

ତାଙ୍କର କାବ୍ୟ-ରଚନାହିଁ ଓଡିଆ ସାହିତ୍ୟକୁ ତାଙ୍କର ଶ୍ରେଷ୍ଠ ଅବଦାନ। ଏସବୁ କାବ୍ୟ ତାଙ୍କ କବିପ୍ରତିଭା ଏବଂ ଲିଖନଶୈଳୀ ପ୍ରକାଶର ଶ୍ରେଷ୍ଠ ସମୟ ୧୮୮୬ ମସିହାଠାରୁ ୧୮୯୭ ମସିହା ମଧ୍ୟରେ ଲିଖିତ ହୋଇଥିଲା। ସେ ପ୍ରଧାନତଃ ନଅଗୋଟି କାବ୍ୟ ଲେଖିଥିଲେ। ଏସବୁ କାବ୍ୟ ଓଡ଼ିଆ ସାହିତ୍ୟରେ ପ୍ରଥମ କାଳ୍ପନିକ କାବ୍ୟ ବୋଲି ବିବେଚିତ। ରାଧାନାଥଙ୍କ କାବ୍ୟ-କବିତା ପୂର୍ବ ଓଡ଼ିଆ କବିମାନଙ୍କର କାବ୍ୟ-କବିତାଠାରୁ ଭିନ୍ନ। ପଞ୍ଚଦଶ ଶତାବ୍ଦୀରେ 'ସାରଳା ମହାଭାରତ' ସାଧାରଣ ଲୋକଙ୍କ ଭାଷାରେ ତତ୍କାଳୀନ ଓଡ଼ିଶାର ସମାଜର ମୂଲ୍ୟବୋଧ, ସାମାଜିକ ଜୀବନ, କିଂବଦନ୍ତୀକୁ ଆଧାରିତ କରି ଲିଖିତ ହୋଇଥିଲା। ସେଥିରେ ସଂସ୍କୃତର ବ୍ୟବହାର ନାହିଁ। ତାହାର ବୃତ୍ତ ଦାଣ୍ଡିବୃତ୍ତ ଥିଲା। ଷୋଡ଼ଶ ଶତାବ୍ଦୀରେ ବଳରାମ ଦାସଙ୍କ 'ଜଗମୋହନ ରାମାୟଣ' ମଧ୍ୟ ସାରଳା ଦାସଙ୍କ ଦାଣ୍ଡିବୃତ୍ତରେ ଲିଖିତ ହୋଇଥିଲା। ଷୋଡ଼ଶ ଶତାବ୍ଦୀର ପଞ୍ଚସଖା ସାହିତ୍ୟ ଏବଂ ଜଗନ୍ନାଥ ଦାସଙ୍କ ଭାଗବତ ଧର୍ମ ଓ ଦର୍ଶନ ଉପରେ ଆଧାରିତ। ସପ୍ତଦଶ ଏବଂ ଅଷ୍ଟାଦଶ ଶତାବ୍ଦୀରେ କବିମାନେ ରାମାୟଣ, ମହାଭାରତ ଏବଂ ପୁରାଣମାନଙ୍କର କଥାବସ୍ତୁ ଉପରେ କାବ୍ୟ ଲେଖିଥିଲେ। ଅଷ୍ଟାଦଶ ଶତାବ୍ଦୀରେ ଉପେନ୍ଦ୍ରଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ ସାମନ୍ତସିଂହାର ଆଳଙ୍କାରିକ ଭାଷା ବ୍ୟବହାର କରି ବିଭିନ୍ନ ଅର୍ଥ ଥିବା କାବ୍ୟମାନ ଲେଖିଥିଲେ। ଏସବୁ କାବ୍ୟ ଅଳଙ୍କାରରେ ପୂର୍ଣ୍ଣ ଥିଲା ଏବଂ ବିଭିନ୍ନ ସଙ୍ଗୀତ ଛାନ୍ଦରେ ଲିଖିତ

ହୋଇଥିଲା। ଏଗୁଡ଼ିକରେ ବର୍ଣ୍ଣିତ ପ୍ରେମ ଦୈହିକ ପ୍ରେମ ନ ହୋଇ ଆଦର୍ଶ ରାଧାକୃଷ୍ଣ-ପ୍ରେମ ଥିଲା। ଅଷ୍ଟାଦଶ ଶତାବ୍ଦୀର ଶେଷଭାଗ ଏବଂ ଉନବିଂଶ ଶତାବ୍ଦୀର ପ୍ରଥମଭାଗର କବି, କବିସୂର୍ଯ୍ୟ ବଳଦେବ ରଥ, ଭକ୍ତଚରଣ ଦାସ, ଗୋପାଳକୃଷ୍ଣ ଏବଂ ବନମାଳୀ ମଧ୍ୟ ଗୀତିକାବ୍ୟ ପ୍ରଣାଳୀରେ ସଙ୍ଗୀତ ଓ ଛାନ୍ଦରେ ରାଧାକୃଷ୍ଣଙ୍କ ଉପରେ କାବ୍ୟ-କବିତା ଲେଖିଥିଲେ। ଉନବିଂଶ ଶତାବ୍ଦୀର ଶେଷଭାଗରେ ରାଧାନାଥ ନୂତନ ଶୈଳୀରେ କାଳ୍ପନିକ ଏବଂ ବିଦେଶୀ ସାହିତ୍ୟରୁ ସଂଗୃହୀତ ବିଷୟବସ୍ତୁ ଉପରେ କାବ୍ୟମାନ ଲେଖିଲେ। ତାଙ୍କ କାବ୍ୟମାନଙ୍କର ବିଷୟବସ୍ତୁ ସଂପୂର୍ଣ୍ଣ ନୂତନ ଥିଲା। ତାଙ୍କର ପ୍ରାୟ ସବୁ କାବ୍ୟର ଗଳ୍ପ ଅନ୍ୟ ସୂତ୍ରରୁ ସଂଗୃହୀତ ହୋଇ ଓଡ଼ିଶାର ବିଭିନ୍ନ ଅଞ୍ଚଳର କିଂବଦନ୍ତୀ ସହିତ ଖାପଖୁଆଇ ବର୍ଣ୍ଣନା କରାଯାଇଛି। ତାଙ୍କର କାବ୍ୟ-କବିତାର ବିଷୟବସ୍ତୁ ବିସ୍ତାରିତ ହୋଇଗଲା। ସେଥିରେ ଇଂରାଜୀ ଓ ବଙ୍ଗଳା ସାହିତ୍ୟର ବିଶେଷ ପ୍ରଭାବ ପଡ଼ିଲା। କାବ୍ୟଗୁଡ଼ିକ ତତ୍ସମ ଶବ୍ଦରେ ପୂର୍ଣ୍ଣ ହୋଇଥିବାରୁ ସାଧାରଣ ଲୋକମାନଙ୍କ ପାଇଁ କ୍ଲିଷ୍ଟ ହୋଇଗଲା। ସେ ଓଡ଼ିଆ ସାହିତ୍ୟରେ ପ୍ରଥମେ ଅମିତ୍ରାକ୍ଷର ଛନ୍ଦ ବ୍ୟବହାର କଲେ। ସେ ଓଡ଼ିଶାର ଓ ଭାରତବର୍ଷର ନଦୀ, ପର୍ବତ, ବନ, ଝରଣା, ସମୁଦ୍ର, ହ୍ରଦ, ମରୁଭୂମି ପ୍ରଭୃତିର ପ୍ରାକୃତିକ ଚିତ୍ର ଆକର୍ଷଣୀୟ ଭାବରେ ବର୍ଣ୍ଣନା କଲେ ଏବଂ କାବ୍ୟମାନ ଭାରତର ଏବଂ ଓଡ଼ିଶାର ଐତିହାସିକ ତଥ୍ୟ ଏବଂ ବିଭିନ୍ନ ଅଞ୍ଚଳର କିଂବଦନ୍ତୀରେ ପୂର୍ଣ୍ଣ ହୋଇଗଲା। ତାଙ୍କର ଲେଖା ପାଣ୍ଡିତ୍ୟପୂର୍ଣ୍ଣ ହେଲା ଏବଂ ସେଥିରେ ବିଶ୍ୱସାହିତ୍ୟର ପ୍ରଭାବ ପଡ଼ିଲା। ତାଙ୍କର ସାହିତ୍ୟ ଜନସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ ନହୋଇ ଶିକ୍ଷିତ ଓ ପଣ୍ଡିତ ବ୍ୟକ୍ତିମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା। ତାଙ୍କ ମତରେ ସାହିତ୍ୟ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଜ୍ଞାନ ଓ ପାଣ୍ଡିତ୍ୟର ବିଷୟ। ପାଣ୍ଡିତ୍ୟ ନଥିବା ସାହିତ୍ୟ ମୂଲ୍ୟହୀନ। ତାଙ୍କ କାବ୍ୟ-କବିତାମାନଙ୍କର ଶୈଳୀ, ବିଷୟବସ୍ତୁ, ଗାମ୍ଭୀର୍ଯ୍ୟପୂର୍ଣ୍ଣ ଓ ମନୋମୁଗ୍ଧକର। ବର୍ଣ୍ଣନାଗୁଡ଼ିକ ତାଙ୍କର ବହୁ ବିଷୟ ଏବଂ ବହୁ କବି ଓ ଲେଖକଙ୍କର ଗ୍ରନ୍ଥ ଅଧ୍ୟୟନ ଏବଂ ବହୁ ପ୍ରକାର ପ୍ରାକୃତିକ ପରିବେଶ ମଧ୍ୟରେ ଭ୍ରମଣର ଅଭିଜ୍ଞତା ଉପରେ ଆଧାରିତ। ଏଗୁଡ଼ିକ ସବୁଦିଗରୁ ଆଧୁନିକ ଏବଂ ଓଡ଼ିଶାର ପୂର୍ବ କବିମାନଙ୍କର କାବ୍ୟକବିତାଠାରୁ ସମ୍ପୂର୍ଣ୍ଣ ଭିନ୍ନ। ସେଥିଯୋଗୁଁ କୁହାଯାଉଛି ଯେ, ସେ ଓଡ଼ିଆ ସାହିତ୍ୟରେ ଗୋଟିଏ ନୂତନଯୁଗ ସୃଷ୍ଟି କରିଛନ୍ତି।

ତାଙ୍କର ନଅଗୋଟି କାବ୍ୟ ମଧ୍ୟରୁ ପ୍ରଥମ କାବ୍ୟ 'କେଦାରଗୌରୀ' ୧୮୮୬ ମସିହାରେ ଏବଂ ଶେଷକାବ୍ୟ 'ଦରବାର' ୧୮୯୭ ମସିହାରେ ଲିଖିତ ହୋଇଥିଲା। ଅନ୍ୟ ସାତଗୋଟି ମଧ୍ୟରୁ 'ଚନ୍ଦ୍ରଭାଗା' ୧୮୮୬ ମସିହାରେ, 'ନନ୍ଦିକେଶ୍ୱରୀ' ୧୮୮୭ରେ, 'ଉଷା' ୧୮୮୮ରେ, 'ପାର୍ବତୀ' ୧୮୯୦ରେ,

'ଚିଲିକା' ୧୮୯୧ରେ, 'ମହାଯାତ୍ରା' ୧୮୯୩ରେ ଏବଂ 'ଯଯାତିକେଶରୀ' ୧୮୯୪ରେ ଲିଖିତ ହୋଇଥିଲା। ଏହି ନଅଗୋଟି କାବ୍ୟ ମଧ୍ୟରୁ 'ପାର୍ବତୀ' ଓ 'ମହାଯାତ୍ରା' କାବ୍ୟ ଅସମ୍ପୂର୍ଣ୍ଣ ରହିଲା। 'ଚିଲିକା', 'ମହାଯାତ୍ରା' ଓ 'ଦରବାର' କାବ୍ୟରେ କୌଣସି ଗଳ୍ପ ନାହିଁ। ଚିଲିକାରେ ଚିଲିକା ହ୍ରଦ ସଂଲଗ୍ନ ସ୍ଥାନମାନଙ୍କର ପ୍ରାକୃତିକ ଦୃଶ୍ୟ, ହ୍ରଦ ମଧ୍ୟରେ ଏବଂ ନିକଟରେ ଥିବା ବନ, ପାହାଡ଼, ନଦୀ, ମନ୍ଦିର, ପକ୍ଷୀ, ପୁଷ୍ପଲତା, ଧୀବର ଓ ତାଙ୍କର ନୌକା ପ୍ରଭୃତିର ବର୍ଣ୍ଣନା ଏବଂ ଦିବସ ଓ ରଜନୀର ବିଭିନ୍ନ ପ୍ରହରରେ ହ୍ରଦର ଦୃଶ୍ୟ ଅତି ଆକର୍ଷଣୀୟ ଭାବରେ ଚିତ୍ରିତ କରାଯାଇଛି। ହ୍ରଦର ଦଳ, ପାହାଡ଼ ଓ ନଦୀର ଦୃଶ୍ୟକୁ ହିମାଳୟ ଓ ବିନ୍ଧ୍ୟପର୍ବତ, ଗୋଦାବରୀ ନଦୀ ଏବଂ ରାଜସ୍ଥାନ ମରୁଭୂମିର ଦୃଶ୍ୟ ସହିତ ତୁଳନା କରାଯାଇଛି। ତାଙ୍କର ସମସ୍ତ କାବ୍ୟମଧ୍ୟରେ 'ଚିଲିକା'ରେ ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନା ସର୍ବୋତ୍କୃଷ୍ଟ। ପ୍ରାକୃତିକ ବର୍ଣ୍ଣନା ସହ ଓଡ଼ିଶାର ରାଜା ପୁରୁଷୋତ୍ତମ ଦେବଙ୍କର କାଞ୍ଚି ବିଜୟ ପରେ ପଦ୍ମାବତୀଙ୍କ ସହ ନୌକାରେ ଚିଲିକା ମଧ୍ୟଦେଇ ଓଡ଼ିଶା ପ୍ରତ୍ୟାବର୍ତ୍ତନ ଏବଂ ଦେବୀ ଗୁରୁବାୟୀଙ୍କର ଓଡ଼ିଶା ଆକ୍ରମଣକାରୀ ରକ୍ତବାହୁ ରାଜାଙ୍କ ସୈନ୍ୟମାନଙ୍କ ସହ ସଂଗ୍ରାମ ବର୍ଣ୍ଣନା କରାଯାଇଛି।

'ମହାଯାତ୍ରା'ରେ ଭାରତବର୍ଷ ଓ ଓଡ଼ିଶାର ବିଭିନ୍ନ ସ୍ଥାନର ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନା ସହ ଭାରତର ଲୋକମାନଙ୍କର ନୈତିକ ଅଧୋଗତି ଏବଂ ପରାଧୀନତାର କାରଣ ପୃଥ୍ୱୀରାଜ ଓ ଜୟଚନ୍ଦ୍ରଙ୍କ ମଧ୍ୟରେ କଳହ, କଳିଯୁଗର ଆଗମନ, ପୂର୍ବ ଯୁଗମାନଙ୍କର ମୂଲ୍ୟବୋଧର ଅବକ୍ଷୟ ଏବଂ ଲୋକମାନଙ୍କ ମଧ୍ୟରେ ପାପକର୍ମର ଅଭିବୃଦ୍ଧି ବିଶଦ ଭାବରେ ବର୍ଣ୍ଣନା କରାଯାଇଛି। ଏଥିରେ କବିଙ୍କର ସ୍ୱଦେଶପ୍ରେମ, ଜାତୀୟତାଭାବ ଏବଂ ଦେଶର ପରାଧୀନତା ଓ ଅଧୋଗତିରେ ଗଭୀର ଦୁଃଖ ପ୍ରକାଶ ପାଇଛି। 'ମହାଯାତ୍ରା' କାବ୍ୟ ରଚନାପାଇଁ କବିଙ୍କର ଗୋଟିଏ ବିଶେଷ ପରିକଳ୍ପନା ଥିଲା। ମାତ୍ର ପୂର୍ବରୁ ବର୍ଣ୍ଣିତ କାରଣମାନ ଯୋଗୁଁ କାବ୍ୟ-ଲିଖନ କେବଳ ସାତଗୋଟି ସର୍ଗ ପରେ ବନ୍ଦକରିଦେଲେ ଏବଂ କାବ୍ୟ ଅସମ୍ପୂର୍ଣ୍ଣ ରହିଗଲା।

'ଦରବାର' କାବ୍ୟରେ ବାରବାଟୀ ଦୁର୍ଗରେ ଦରବାରର ଦୃଶ୍ୟପଟ ଓ ସାଜସଜ୍ଜା ବିଭିନ୍ନ ପଦ-ପଦବୀଧାରୀଙ୍କ ମଧ୍ୟରେ ଆସନ ପାଇଁ କଳହ, ସେମାନଙ୍କର ବେଶଭୂଷା ଓ ବୃଥା ଗରିମା, ବ୍ରିଟିଶ୍ ସରକାରୀ ତୋଷାମଦ, ପ୍ରଜାମାନଙ୍କ ଉପରେ ରାଜାମାନଙ୍କର ଅତ୍ୟାଚାର, ମନ୍ତ୍ରୀମାନଙ୍କର ରାଜାଙ୍କୁ ତୋଷାମଦର ବର୍ଣ୍ଣନା କରାଯାଇଛି ଏବଂ ରାଜା, ଜମିଦାରମାନଙ୍କର ବ୍ୟଙ୍ଗଚିତ୍ର ଦିଆଯାଇ ସେମାନଙ୍କୁ ଉପହାସ କରାଯାଇଛି। ବିଶେଷତଃ ଓଡ଼ିଶାର ଗଡ଼ଜାତ ରାଜାମାନଙ୍କୁ ବିଦ୍ରୂପ କରି କବି କଟୁ ସମାଲୋଚନା କରିଛନ୍ତି। ବିଷୟବସ୍ତୁ ୧୮୮୯ ମସିହାର

କମିସନର୍ କୁକ୍ ସାହେବଙ୍କ ଆୟୋଜିତ ଦରବାରରୁ ଆହରଣ କରାଯାଇଛି। ଏଥିରେ ତାଙ୍କର ଭିଣୋଇ କାଉପୁର ଜମିଦାର ରାୟବାହାଦୁର ପଦବୀ ପାଇଥିଲେ ଏବଂ ସାମନ୍ତ ଚନ୍ଦ୍ରଶେଖରଙ୍କ 'ମହାମହୋପାଧ୍ୟାୟ' ଉପାଧି ପାଇବାର ଥିଲା; ସେ କିନ୍ତୁ ସେ ଦରବାରକୁ ଆସିପାରିନଥିଲେ।

ଉପରୋକ୍ତ ଏହି ତିନିଗୋଟି କାବ୍ୟରେ ତାଙ୍କର କୌଣସି ଧାରାବାହିକ ଗଳ୍ପ ନାହିଁ। ଅନ୍ୟ ଛଅଗୋଟି କାବ୍ୟରେ ଧାରାବାହିକ ଗଳ୍ପ ଅଛି। ଏହିସବୁ କାବ୍ୟର ଗଳ୍ପ ଅନ୍ୟ ସୂତ୍ରରୁ ସଂଗୃହୀତ ହୋଇ ଓଡ଼ିଶାର ବିଭିନ୍ନ ଅଞ୍ଚଳର କିଂବଦନ୍ତୀ ସହିତ ଖାପଖୁଆଇ ବର୍ଣ୍ଣନା କରାଯାଇଛି। 'କେଦାରଗୌରୀ', 'ଚନ୍ଦ୍ରଭାଗା', 'ନନ୍ଦିକେଶ୍ୱରୀ' ଓ 'ଉଷା'ର ଗଳ୍ପ ଗ୍ରୀସ୍‌ଦେଶୀୟ ଗଳ୍ପ, 'ପାର୍ବତୀ'ର ଗଳ୍ପ ମାଦଳାପାଞ୍ଜିର କିଂବଦନ୍ତୀରୁ ଏବଂ 'ଯଯାତିକେଶରୀ' ବଙ୍ଗଳା ଓ ସଂସ୍କୃତର ମୂଳଗଳ୍ପରୁ ସଂଗୃହୀତ ହୋଇଛି। ଏହି ଛଅଗୋଟିଯାକ କାବ୍ୟର ବିଷୟବସ୍ତୁ ବିଶେଷତଃ ନାୟକ-ନାୟିକାଙ୍କ ଦୈହିକ ପ୍ରେମ ଉପରେ ଆଧାରିତ ହୋଇଛି। ଏସବୁ କାବ୍ୟରେ ବିଭିନ୍ନ ସ୍ଥାନର ପ୍ରାକୃତିକ ଦୃଶ୍ୟ ଓ ଛବି ଟିକିନିଖି ଭାବରେ ବର୍ଣ୍ଣନା କରାଯାଇଛି।

'କେଦାରଗୌରୀ'ରେ ରୋମାନ୍ କବି ଓଭିଡ୍ ବର୍ଣ୍ଣନା କରିଥିବା ପିରମସ୍ ଏବଂ ଥିସ୍‌ବେଙ୍କ ବିଷୟରେ ଗ୍ରୀସ୍‌ଦେଶର କାହାଣୀ ଓଡ଼ିଶାର ଭୁବନେଶ୍ୱରର ଏକାମ୍ରକାନନରେ ଆରୋପ କରାଯାଇଛି। ଉଭୟ କେଦାର ଏବଂ ଗୌରୀ ପରସ୍ପର ପ୍ରତି ପ୍ରେମରେ ପାଗଳପ୍ରାୟ ଆକୃଷ୍ଟ ହୋଇ ଶେଷରେ ପ୍ରାଣତ୍ୟାଗ କରିଛନ୍ତି। ଏଥିରେ ପୁରୁଣା ଐତିହାସିକ କିଂବଦନ୍ତୀରୁ ବିଭ୍ରାନ୍ତ କରି ସେ ନୂତନ କିଂବଦନ୍ତୀ ସୃଷ୍ଟି କରିଛନ୍ତି ଏବଂ ତାହାକୁ ଲୋକପ୍ରିୟ କରିପାରିଛନ୍ତି।

'ଚନ୍ଦ୍ରଭାଗା'ରେ ସେହି କବି ଓଭିଡ୍ ଏବଂ ପୋପ୍‌ଙ୍କର ଆପୋଲୋ ଏବଂ ଡାଫ୍‌ନେଙ୍କ ବିଷୟରେ ଗ୍ରୀକ୍ ଗଳ୍ପ କୋଣାର୍କର ବେଳାଭୂମିରେ ଅଭିନୀତ ହୋଇଛି। ପ୍ରେମରେ ପାଗଳ ହୋଇ ସୂର୍ଯ୍ୟଦେବ ଚନ୍ଦ୍ରଭାଗା ପଛରେ ଧାବମାନ ହୋଇଛନ୍ତି। ଚନ୍ଦ୍ରଭାଗା ସମୁଦ୍ରଗର୍ଭରେ ଜୀବନ ବିସର୍ଜନ କରିଛି ଏବଂ ତାର ପିତା ସୁମନ୍ୟୁଙ୍କ ଅଭିଶାପରେ ସୂର୍ଯ୍ୟଦେବଙ୍କ ପ୍ରିୟ କୋଣାର୍କ ମନ୍ଦିର ଭାଙ୍ଗିପଡ଼ିଛି। ଏଠାରେ ମଧ୍ୟ କବି ବିଦେଶୀ ସାହିତ୍ୟରୁ ଗଳ୍ପ ଆଣି ଓଡ଼ିଶାର ପରିବେଶରେ ନୂତନ କାହାଣୀ ସୃଷ୍ଟି କରିଛନ୍ତି।

'ନନ୍ଦିକେଶ୍ୱରୀ' କାବ୍ୟର ମୂଳରେ ମଧ୍ୟ ଓଭିଡ୍‌ଙ୍କ ସିଲା ଏବଂ ନିନସ୍ ଗଳ୍ପ ନିହିତ ଅଛି। ସେ କାହାଣୀ ଓଡ଼ିଶାର ଐତିହାସିକ ପରିବେଶରେ ନୂତନ ରୂପରେ ବର୍ଣ୍ଣନା କରାଯାଇଛି। ଓଡ଼ିଶାର ରାଜା ସୁବର୍ଣ୍ଣ କେଶରୀଙ୍କ କନ୍ୟା ନନ୍ଦିକା ଦେଶର ଆକ୍ରମଣକାରୀ ରାଜା ଚୋଡ଼ଗଙ୍ଗଦେବଙ୍କ ପାଖରେ ଆତ୍ମସମର୍ପଣ

କରି ପ୍ରେମନିବେଦନ କରିଛନ୍ତି। ସେଥିରେ ବିଫଳ ହୋଇ ସେ ଆତ୍ମହତ୍ୟା କରିଛନ୍ତି। ଦେଶର ଓ ପିତାଙ୍କର ସମ୍ମାନ ହାନି କରି ଆଦର୍ଶ ଏବଂ ସଂଯମରୁ ବିଚ୍ୟୁତ ହୋଇଥିବା ହେତୁ ନନ୍ଦିକାଙ୍କର ମୃତ୍ୟୁ ହୋଇଛି। ଏହି କାବ୍ୟରେ ଯୁଦ୍ଧକ୍ଷେତ୍ର, ମହାନଦୀର ବନ୍ୟା, ପ୍ରଧାନପାଟ ଜଳପ୍ରପାତ, ସୂର୍ଯ୍ୟାସ୍ତ ଏବଂ ଜ୍ୟୋତ୍ସ୍ନାସ୍ନାତ ରଜନୀ ପ୍ରଭୃତି ଦୃଶ୍ୟମାନ ରମଣୀୟ ଭାବରେ ବର୍ଣ୍ଣନା କରାଯାଇଛି। ଏ କାହାଣୀ ପଛରେ କୌଣସି ଐତିହାସିକ ତଥ୍ୟ ନାହିଁ; ଯଦିଓ ମହାନଦୀ ନଦୀଗର୍ଭରେ ଆଜିଯାଏ ନନ୍ଦିକେଶ୍ୱରୀପଠା ନାମରେ ଗୋଟିଏ ପଠା ଅଛି। କାହାଣୀଟି ପ୍ରାୟ ସଂପୂର୍ଣ୍ଣ ଭାବରେ କାଳ୍ପନିକ।

'ଉଷା'ର ବିଷୟବସ୍ତୁ ମଧ୍ୟ ଓଭିଡ୍‌ଙ୍କର ଆଟ୍‌ଲାଣ୍ଟାଜ୍ ରେସ୍ ଗଳ୍ପରୁ ନିଆହୋଇଛି। ସେହି ଗଳ୍ପ ସହିତ ରାଧାନାଥ ନିଜ କଳ୍ପନାରୁ ନାୟକ-ନାୟିକାଙ୍କର ଜନ୍ମ ବିଷୟରେ ଏବଂ ମୟୂରଭଞ୍ଜ ରାଜବଂଶର ମୟୂର-ସଂକେତ ବିଷୟରେ ଆଉ ଦୁଇଗୋଟି କାଳ୍ପନିକ କାହାଣୀ ଯୋଗକରିଛନ୍ତି। କାହାଣୀର ନାୟକ ଜୟନ୍ତ ଏବଂ ନାୟିକା ଉଷା ଉଭୟ ଅଭିଶପ୍ତ ଗନ୍ଧର୍ବରୂପେ ବର୍ଣ୍ଣିତ ହୋଇଛନ୍ତି। ରାଜକନ୍ୟା ଉଷାର ଜଙ୍ଗଲ ଓ ନଦୀରେ ଶିକାର, ତାର ଅପୂର୍ବ ସୁସ୍ଥ ସୁନ୍ଦର ରୂପ ସହିତ ପ୍ରକୃତିର ରମଣୀୟ ଦୃଶ୍ୟ ବର୍ଣ୍ଣନା କରାଯାଇଛି। ରାଜକନ୍ୟାଙ୍କ ସହିତ ଦୌଡ଼ପ୍ରତିଯୋଗିତାରେ ବିଜୟୀ ହୋଇ ତାଙ୍କୁ ବିବାହ କରିବା ଆଶାରେ ଦେଶର ବହୁ ରାଜ୍ୟରୁ ରାଜପୁତ୍ରମାନେ ଆସି ପ୍ରତିଯୋଗିତାରେ ହାରି ପ୍ରାଣତ୍ୟାଗ କରିଛନ୍ତି। ଶେଷରେ ଜୟନ୍ତ କୌଶଳରେ ଦୌଡ଼ରେ ବିଜୟୀ ହୋଇଛନ୍ତି; ମାତ୍ର ବିବାହବେଳେ ଉଭୟ ଜୟନ୍ତ ଓ ଉଷାଙ୍କର ମୃତ୍ୟୁହୋଇ ଅଭିଶପ୍ତ ଗନ୍ଧର୍ବ-ଗନ୍ଧର୍ବୀ ଶାପମୁକ୍ତ ହୋଇଛନ୍ତି। ସେମାନଙ୍କର ଶବସତ୍କାର ସମୟରେ ଅତ୍ୟନ୍ତ ଶୋକାକୁଳ ପରିସ୍ଥିତି ଭାବବିହ୍ୱଳ ଭାବରେ ବର୍ଣ୍ଣିତ ହୋଇଛି। ଜୟନ୍ତଙ୍କୁ ମୟୂରଭଞ୍ଜ ରାଜବଂଶର ପୂର୍ବପୁରୁଷରୂପେ ବର୍ଣ୍ଣନା କରାଯାଇଛି। ସେ ଶିବଙ୍କ ପୁତ୍ର କାର୍ତ୍ତିକେୟଙ୍କଠାରୁ ବର ପାଇଥିବାରୁ ମୟୂରଭଞ୍ଜ ରାଜବଂଶର ମୟୂର-ସଂକେତ ବୋଲି କଳ୍ପନା କରାଯାଇଛି।

'ପାର୍ବତୀ' କାବ୍ୟର ବିଷୟବସ୍ତୁ ମାଦଳାପାଞ୍ଜିରୁ ସଂଗୃହୀତ ଏବଂ ସେଥିରେ ଗ୍ରୀକ୍ କବି ଆକ୍‌ସ୍କାଇଲସ୍‌ଙ୍କ 'ଆଗାମେମ୍‌ନନ୍' ଏବଂ ସେକ୍‌ସପିୟର୍‌ଙ୍କ ହାମ୍‌ଲେଟ୍ ନାଟିକାର ପ୍ରଭାବ ପଡ଼ିଛି। ମାଦଳାପାଞ୍ଜିରେ କେବଳ ବର୍ଣ୍ଣିତ ଅଛି ଯେ ପୁରୀର ଗଙ୍ଗବଂଶର ରାଜା ଗଙ୍ଗେଶ୍ୱର ମାତାଲ୍ ଅବସ୍ଥାରେ ବଳପୂର୍ବକ ନିଜ କନ୍ୟା ସହିତ ସହବାସ କରିଥିଲେ। ପରେ ଅନୁତାପ କରି ଗୋଟିଏ ପୁଷ୍କରିଣୀ ଖନନ କରିଥିଲେ। ମାତ୍ର ରାଧାନାଥ ସେହି ଗଳ୍ପକୁ ବିସ୍ତାରିତ କରି ଗଙ୍ଗେଶ୍ୱରଙ୍କ ରତ୍ନପୁର ରାଜାଙ୍କ ସହ ଯୁଦ୍ଧ, ରତ୍ନପୁରରାଜାଙ୍କ ଗଙ୍ଗେଶ୍ୱରଙ୍କ କନ୍ୟାଲାଭ

ପାଇଁ ଆସକ୍ତି, ଗଙ୍ଗେଶ୍ୱରଙ୍କର ନିଜ କନ୍ୟା ସହିତ ବଳପୂର୍ବକ ସହବାସ, ପରେ କନ୍ୟା କୌଶଲ୍ୟା ତାର ଶିଶୁ ପୁତ୍ରକୁ ହତ୍ୟାକରି ଗୋଟିଏ ଗଭୀର ଖାତ ଖୋଳି ସେଥିରେ ସମାଧି ଦେବା, କୌଶଲ୍ୟା ପ୍ରେତରୂପରେ ତାର ମାତାଙ୍କ ନିକଟରେ ଏହି ଭୟଙ୍କର ପାପ କାହାଣୀ ବର୍ଣ୍ଣନା ପ୍ରଭୃତି ଗଳ୍ପରେ ସଂଯୋଗ କରିଛନ୍ତି। ଭୁବନେଶ୍ୱର ନିକଟସ୍ଥ କୌଶଲ୍ୟାଗଙ୍ଗ ସରୋବର ଏହି କାଳ୍ପନିକ ଗଳ୍ପକୁ କିଂବଦନ୍ତୀରେ ପରିଣତ କରିଛି। ଏହି କାବ୍ୟରେ ରାଧାନାଥ ଗଙ୍ଗେଶ୍ୱରଙ୍କୁ ଜଣେ ମଦ୍ୟପ, କ୍ରୂର, ପ୍ରଜାପୀଡ଼କ, ହତ୍ୟାକାରୀ, ପାପୀ ନରପତିରୂପେ ବର୍ଣ୍ଣନା କରିଛନ୍ତି। କାବ୍ୟଟିର କେବଳ ଦୁଇଗୋଟି ସର୍ଗ ଲେଖାହେଲା ପରେ ରାଧାନାଥଙ୍କ ବଡ଼ପୁଅ ଶଶିଭୂଷଣଙ୍କ ଗୁରୁତର ରୋଗହେତୁ କାବ୍ୟଲେଖା ବନ୍ଦହୋଇଯାଇଥିଲା। ପରେ ପୁତ୍ରର ଆରୋଗ୍ୟ ଲାଭ ପରେ ମଧ୍ୟ ଆଉ ସେ କାବ୍ୟ ଲେଖା ହୋଇନାହିଁ ଏବଂ ସେ କାବ୍ୟ ଅସମ୍ପୂର୍ଣ୍ଣ ରହିଯାଇଛି। ସେ କାବ୍ୟ ବିଷୟରେ ଆଲୋଚନା କରୁଥିବା ସାହିତ୍ୟିକମାନେ କହନ୍ତି ଯେ, ପାର୍ବତୀ କାବ୍ୟକୁ ବିରାଟ ଆକାରରେ ଲେଖିବାପାଇଁ କବି କଳ୍ପନା କରିଥିଲେ, ମାତ୍ର ନାନା କାରଣରୁ ସେ କାବ୍ୟ ଅସଂପୂର୍ଣ୍ଣ ରହିଯାଇଥିଲା। ତାଙ୍କ ମୃତ୍ୟୁପରେ ତାଙ୍କର ଜୀବନୀଲେଖକ ଦୁର୍ଗାଚରଣ ରାୟ ଗଦ୍ୟାକାରରେ ପାର୍ବତୀ କାବ୍ୟରେ ଅସମ୍ପୂର୍ଣ୍ଣ ଅଂଶର ସୂଚନା ଦେବାକୁ ଚେଷ୍ଟା କରିଛନ୍ତି। ମାତ୍ର ବହୁ ସାହିତ୍ୟିକ ତାହା ପ୍ରକୃତ ତଥ୍ୟ ବୋଲି ଗ୍ରହଣ କରିନାହାନ୍ତି।

ପାର୍ବତୀ କାବ୍ୟର ଉପରୋକ୍ତ ବିଷୟବସ୍ତୁ ନିର୍ବାଚନ ହେତୁ ଓଡ଼ିଶାର ତତ୍କାଳୀନ ପ୍ରାୟ ସମସ୍ତ ସାହିତ୍ୟିକ, ଲେଖକ ଓ ପାଠକ ତାହାର ତୀବ୍ର ସମାଲୋଚନା କରିଥିଲେ। ଆଜିପର୍ଯ୍ୟନ୍ତ ଲେଖକ ଓ ପାଠକମାନେ କହୁଛନ୍ତି ଯେ ଏ କାବ୍ୟର କଥାବସ୍ତୁ ଓଡ଼ିଶାର ଲୋକମାନଙ୍କର ସାମାଜିକ ଏବଂ ନୈତିକ ପରମ୍ପରାର ବିରୋଧ କରୁଛି। କାବ୍ୟ ପ୍ରକାଶ ସମୟରେ 'ଉତ୍କଳଦୀପିକା'ରେ ଏବଂ 'ଇନ୍ଦ୍ରଧନୁ'ରେ କବିଙ୍କର କଳ୍ପନା ଅଶ୍ରାବ୍ୟ, ଅପାଠ୍ୟ, ଜଘନ୍ୟ ଓ ନୀଚ ବୋଲି ସମାଲୋଚିତ ହୋଇଥିଲା। ଆଜିଯାଏ ସୁଦ୍ଧା କେହି ଲେଖକଙ୍କର ଏପରି ବିଷୟବସ୍ତୁ ନିର୍ବାଚନକୁ ପ୍ରଶଂସା କରିନାହାନ୍ତି।

ଏପରି ନିନ୍ଦନୀୟ ବିଷୟବସ୍ତୁ ନିର୍ବାଚନ ସତ୍ତ୍ୱେ ସେ କାବ୍ୟରେ ବିଭିନ୍ନ ପ୍ରାକୃତିକ ଦୃଶ୍ୟ ଏବଂ ବିଭିନ୍ନ ବ୍ୟକ୍ତିଙ୍କ ଚରିତ୍ର ବର୍ଣ୍ଣନା ଚମତ୍କାର ବୋଲି ସମସ୍ତେ ସ୍ୱୀକାର କରନ୍ତି। କବି ସେଥିରେ ପୁରୀର ଦୋଳଯାତ୍ରା, ଗଙ୍ଗେଶ୍ୱର ଯୁଦ୍ଧରେ ଜୟକରି ଫେରିବାବେଳେ ବାଲେଶ୍ୱରଠାରୁ ପୁରୀ ପର୍ଯ୍ୟନ୍ତ ସମୁଦ୍ରକୂଳସ୍ଥ ପର୍ବତମାଳାରେ ପ୍ରଜ୍ୱଳିତ ଅଗ୍ନିରେ ଆଲୋକସଜ୍ଜା, ଆଦିବାସୀ ନୃତ୍ୟ, ବିଭିନ୍ନ ସ୍ଥାନର ଦୃଶ୍ୟ ଏବଂ ବିଭିନ୍ନ ଲୋକଚରିତ୍ର ରମଣୀୟ ଭାବେ ବର୍ଣ୍ଣନା କରିଛନ୍ତି।

ଗଙ୍ଗେଶ୍ୱର ରାଜାଙ୍କ ନିଷ୍ଠୁର, କାମୁକ, ସ୍ୱାର୍ଥପର ଚରିତ୍ର ବର୍ଣ୍ଣନା ମଧ୍ୟ ଏହି କାବ୍ୟରେ ନୂତନ ପ୍ରକାରେ ବର୍ଣ୍ଣିତ ।

'ଯଯାତିକେଶରୀ' କାବ୍ୟର ବିଷୟବସ୍ତୁ ନିର୍ବାଚନରେ ମଧ୍ୟ ଅଧିକାଂଶ ସାହିତ୍ୟିକ ଓ ପାଠକ ଅସନ୍ତୋଷ ପ୍ରକାଶ କରିଛନ୍ତି । 'ଯଯାତିକେଶରୀ'ର ଗଳ୍ପ ବଙ୍ଗଳା କବି ଭରତଚନ୍ଦ୍ରଙ୍କ କବିତା 'ବିଦ୍ୟାସୁନ୍ଦର' ଏବଂ ସଂସ୍କୃତ କାବ୍ୟ 'ଚୌରପଞ୍ଚାସିକା'ରୁ ସଂଗୃହୀତ ହୋଇଛି । ଗଳ୍ପରେ ନାୟକ ଯଯାତିକେଶରୀ ପ୍ରେମବିଭୋର ହୋଇ ନାୟିକା ଲଳିତାଙ୍କ ଅନ୍ତଃପୁରରେ ନାରୀବେଶରେ ଲୁଚି ବାସକରିଛନ୍ତି । ଶେଷରେ ସେ ଧରାପଡ଼ିଛନ୍ତି ଏବଂ ଲଳିତାଙ୍କ ପିତା ତାଙ୍କୁ ମୃତ୍ୟୁଦଣ୍ଡ ଦେବାକୁ ଉଦ୍ୟତ ହୋଇଛନ୍ତି । ମାତ୍ର ଶେଷରେ ଆରାଧ୍ୟା ଦେବୀଙ୍କ ହସ୍ତକ୍ଷେପରେ ସେ ଯଯାତିଙ୍କୁ କ୍ଷମାଦେଇ ତାଙ୍କୁ ଲଳିତାଙ୍କ ସହିତ ବିବାହ କରାଇଛନ୍ତି । ଓଡ଼ିଶାର ବିଖ୍ୟାତ ଶକ୍ତିଶାଳୀ ଓ ଧର୍ମପରାୟଣ ରାଜା ଯଯାତିକେଶରୀଙ୍କ ପ୍ରତି ଏ ଗଳ୍ପ ମୋଟେ ପ୍ରଯୁଜ୍ୟ ନୁହେଁ । ଏହା କବିଙ୍କର ଏକ ବିଭ୍ରାନ୍ତିକର ଉଦ୍‌ଭଟ କଳ୍ପନା ଏବଂ ଓଡ଼ିଶାର ଐତିହାସିକ ତଥ୍ୟ ପ୍ରତି ଘୋର ଅପମାନ ବୋଲି ସାହିତ୍ୟିକମାନେ ସମାଲୋଚନା କରିଛନ୍ତି । ଏହି କାବ୍ୟରେ ବିଭିନ୍ନ ବିଷୟ ଏବଂ ଦୃଶ୍ୟ ବର୍ଣ୍ଣନା ତାଙ୍କର ପୂର୍ବବର୍ତ୍ତୀ କାବ୍ୟମାନଙ୍କର ବର୍ଣ୍ଣନାଠାରୁ ନିକୃଷ୍ଟ ଏବଂ ଏହା କବିଙ୍କର କ୍ଷୟମାଣ କବିପ୍ରତିଭାର ନିଦର୍ଶନ ବୋଲି ସମାଲୋଚକମାନେ କହିଥାନ୍ତି ।

ରାଧାନାଥ ରାୟ ଊନବିଂଶ ଶତାବ୍ଦୀର ଶେଷ ଦୁଇ ଦଶନ୍ଧିରେ ପୁରାତନ ଓଡ଼ିଆ ସାହିତ୍ୟର ରୀତି ଓ ଧାରା ବଦଳାଇଦେଇ ନୂତନ ସାହିତ୍ୟ ସୃଷ୍ଟି କଲେ । ତାଙ୍କ ସାହିତ୍ୟରେ କବିଙ୍କ ଚିନ୍ତାଧାରା, ସାମାଜିକ ଚେତନା, ଦର୍ଶନ, ବିଷୟବସ୍ତୁ ଏବଂ ପ୍ରକୃତି ଓ ଚରିତ୍ରଚିତ୍ରଣ ପୂର୍ବ ସାହିତ୍ୟଠାରୁ ଭିନ୍ନ । ଏହି ନୂତନ ରୀତିରେ ସାହିତ୍ୟ ସୃଷ୍ଟିପାଇଁ ସେ ଇଂରାଜୀ, ସଂସ୍କୃତ, ବଙ୍ଗଳା ଏବଂ ପୁରାତନ ଓଡ଼ିଆ ସାହିତ୍ୟ ଅଧ୍ୟୟନ କରି ଏବଂ ଭାରତର ଏବଂ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ବନ, ପର୍ବତ, ମରୁଭୂମି, ସମୁଦ୍ର, ହ୍ରଦ, ଜଳପ୍ରପାତ ପ୍ରଭୃତି ପରିଦର୍ଶନ କରି ଏବଂ ଭାରତର ଇତିହାସ ଓ ପୁରାଣମାନ ପଢ଼ି ପ୍ରସ୍ତୁତ ହୋଇଥିଲେ । ତାଙ୍କର ଅଧ୍ୟୟନ ଓ ଅଭିଜ୍ଞତାରୁ ସେ ତାଙ୍କର କାବ୍ୟ-କବିତାମାନଙ୍କରେ ନୂତନ ଚିନ୍ତାଧାରା, ଦେଶାତ୍ମବୋଧ, ପ୍ରକୃତି ଓ ସମାଜ ଚିତ୍ର ପ୍ରକାଶ କରିଛନ୍ତି । ସେ ଇଂରାଜୀ ସାହିତ୍ୟର ଚସର୍, ସ୍ପେନସର୍, ସେକ୍‌ସପିଅର, ମିଲ୍‌ଟନ୍, କାଉପର୍, ଓ୍ୱାର୍ଡ଼ସ୍‌ୱାର୍ଥ, କଲେରିଜ୍, ସେଲି, କିଟ୍‌ସ, ବାଇରନ୍, ଗ୍ରେ, ଡ୍ରାଇଡେନ୍, ପୋପ୍, ଟେନିସନ୍‌ଙ୍କ କାବ୍ୟ, କବିତା ଏବଂ ଗ୍ରୀକ୍ ଓ ରୋମାନ୍ କବି ଓଭିଡ୍, ଗୋଏଥେ, ଦାନ୍ତେ, ହୋମର୍, ଆରିଷ୍ଟଟଲ୍, ସଫୋକ୍ଲିସ୍ ପ୍ରଭୃତିଙ୍କର ଲେଖାର ଇଂରାଜୀ

ଅନୁବାଦ ସବୁ ପଢ଼ିଥିଲେ। ଏହି ବିଦେଶୀ ସାହିତ୍ୟରୁ ସେ ବିଭିନ୍ନ ଗଳ୍ପର ବିଷୟବସ୍ତୁ, ଚରିତ୍ର, ପ୍ରେମଚିତ୍ର ଏବଂ ପ୍ରାକୃତିକ ଦୃଶ୍ୟର ବର୍ଣ୍ଣନା ଗ୍ରହଣ କରିଥିଲେ। ଇଂରାଜୀ ସାହିତ୍ୟରେ ଯାହା ତାଙ୍କୁ ଭଲଲାଗିଥିଲା, ତାହାକୁ ସେ ଓଡ଼ିଆ କାବ୍ୟ-କବିତାରେ ପୂରାଇଥିଲେ।

ଇଂରାଜୀ ସାହିତ୍ୟ ବ୍ୟତୀତ ସେ ସଂସ୍କୃତ ଭାଷାର କାଳିଦାସ, ଭବଭୂତି, ଶ୍ରୀହର୍ଷ, ଭାରବି, ମାଘ, ବାଣ, ଜୟଦେବ ପ୍ରଭୃତି କବିମାନଙ୍କର କାବ୍ୟ-କବିତାମାନ ପଢ଼ିଥିଲେ ଏବଂ କାଳିଦାସ ଓ ଭବଭୂତିଙ୍କର ବର୍ଣ୍ଣନା ଓ ଦର୍ଶନ ଓଡ଼ିଆ ସାହିତ୍ୟରେ ପୂରାଇବାକୁ ଉଦ୍ୟମ କରିଥିଲେ। ଏତଦ୍‌ବ୍ୟତୀତ ସେ ତାଙ୍କ ସମୟର ସମସ୍ତ ବଙ୍ଗଳା କବି ଓ ଲେଖକଙ୍କ ଲେଖା ଏବଂ ପୁରାତନ ଓଡ଼ିଆ କବିମାନଙ୍କର କାବ୍ୟମାନ ପଢ଼ିଥିଲେ। ଫଳରେ ତାଙ୍କ କାବ୍ୟ-କବିତାମାନଙ୍କର ବିଷୟବସ୍ତୁ ବିସ୍ତାରିତ ହୋଇଥିଲା ଏବଂ ତାଙ୍କ ସାହିତ୍ୟ ପାଣ୍ଡିତ୍ୟପୂର୍ଣ୍ଣ ହୋଇଥିଲା। ଊନବିଂଶ ଶତାବ୍ଦୀର ଶେଷ ଦୁଇ ଦଶନ୍ଧିରେ ସେ ଓଡ଼ିଆ ସାହିତ୍ୟର ଅପ୍ରତିଦ୍ୱନ୍ଦ୍ୱୀ ପ୍ରଧାନ କବି ହୋଇଥିଲେ ଏବଂ ତାଙ୍କର କାବ୍ୟ, କବିତା, ରଚନା ଶୈଳୀ ତାଙ୍କର ସମସାମୟିକ ଓ ପରବର୍ତ୍ତୀ ଦଶନ୍ଧିମାନଙ୍କର କବି ଓ ଲେଖକମାନଙ୍କ ଲେଖାମାନଙ୍କୁ ବିଶେଷଭାବରେ ପ୍ରଭାବିତ କରିଥିଲା। ଊନବିଂଶ ଶତାବ୍ଦୀର ଶେଷଭାଗରୁ ବିଂଶ ଶତାବ୍ଦୀର ତୃତୀୟ ଦଶନ୍ଧିର ଶେଷ ପର୍ଯ୍ୟନ୍ତ ପ୍ରାୟ ପଚାଶ ବର୍ଷ କାଳ ରାଧାନାଥଙ୍କ ସାହିତ୍ୟର ପ୍ରଭାବ ଅକ୍ଷୁଣ୍ଣ ଥିଲା ଏବଂ ତାଙ୍କର ସମସାମୟିକ କବି ଗଙ୍ଗାଧର ମେହେର, ନନ୍ଦକିଶୋର ବଳ, ଚନ୍ଦ୍ରମୋହନ ମହାରଣା ପ୍ରଭୃତି ତାଙ୍କର ରଚନାଶୈଳୀ ଅନୁସରଣ କରିଥିଲେ। ସେ ଯୁଗର ପ୍ରଧାନ ଥିଲେ ରାଧାନାଥ ଏବଂ ଓଡ଼ିଆ ସାହିତ୍ୟରେ ସେ ଯୁଗ ଥିଲା 'ରାଧାନାଥ ଯୁଗ'।

ଏହି ପଚାଶ ବର୍ଷ ମଧ୍ୟରେ ଏବଂ ବିଂଶ ଶତାବ୍ଦୀର ପରବର୍ତ୍ତୀ ଦଶନ୍ଧିମାନଙ୍କରେ ବହୁ ଲେଖକ ଓ କବି ରାଧାନାଥଙ୍କର କାବ୍ୟ-କବିତାର ବିଭିନ୍ନ ଦିଗ ଆଲୋଚନା କରିଛନ୍ତି। ସେମାନେ ତାଙ୍କ କାବ୍ୟ-କବିତାମାନଙ୍କର ବିଷୟବସ୍ତୁ ନିର୍ବାଚନ, ତାଙ୍କର ଚିନ୍ତାଧାରା, ସାମାଜିକ ଚେତନା, ଜାତୀୟତାବୋଧ, ଜୀବନଦର୍ଶନ, ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନା ଏବଂ ଚରିତ୍ରଚିତ୍ରଣ ପ୍ରଭୃତି ପର୍ଯ୍ୟାଲୋଚନା କରି ତାଙ୍କ ସାହିତ୍ୟର ଉତ୍କର୍ଷତା ଏବଂ ଦୋଷଦୁର୍ବଳତା ଦେଖାଇଛନ୍ତି।

ତାଙ୍କର ବିଷୟବସ୍ତୁ ନିର୍ବାଚନ ରୁଚିସମ୍ମତ ନୁହେଁ ବୋଲି ଅଧିକାଂଶ ସାହିତ୍ୟିକ ମତ ଦେଇଥାନ୍ତି। ତାଙ୍କ କାବ୍ୟମାନଙ୍କର ଗଳ୍ପସବୁ ଅନ୍ୟସୂତ୍ରରୁ ବିଶେଷତଃ ବିଦେଶୀ ସାହିତ୍ୟରୁ ସଂଗୃହୀତ। ସେଗୁଡ଼ିକରେ ତାଙ୍କର ମୌଳିକତା ନାହିଁ। ସେହି ବିଦେଶୀ ସାହିତ୍ୟର ଗଳ୍ପଗୁଡ଼ିକ ସେ ଓଡ଼ିଶାର ପ୍ରାକୃତିକ ପରିବେଶ ଏବଂ ଐତିହାସିକ ପରମ୍ପରା ସହିତ ସଂଯୋଗ କରିଛନ୍ତି; ବହୁ ସ୍ଥାନରେ ସ୍ଥାନୀୟ

କିଂବଦନ୍ତୀ ଏବଂ ଐତିହାସିକ ତଥ୍ୟକୁ ବାଦ୍ ଦେଇଛନ୍ତି। ତାହାଦ୍ୱାରା ଓଡ଼ିଶାର ଐତିହାସିକ ତଥ୍ୟକୁ ବିକୃତ ଓ ବିଭ୍ରାନ୍ତ କରିଛନ୍ତି। ତାଙ୍କର ପାର୍ବତୀ, ନନ୍ଦିକେଶ୍ୱରୀ ଏବଂ ଯଯାତିକେଶରୀ କାବ୍ୟମାନଙ୍କର କଥାବସ୍ତୁ ତୀବ୍ର ସମାଲୋଚନାର ସମ୍ମୁଖୀନ ହୋଇଛି। ଅନେକ ଲେଖକ ସେଗୁଡ଼ିକୁ ଅପାଠ୍ୟ, ଅଶ୍ରାବ୍ୟ, ନୀଚ ଓ ଜଘନ୍ୟ ବୋଲି କହିଛନ୍ତି। ଅନେକ ଲେଖକ କହିଛନ୍ତି ଯେ ରାଧାନାଥ ତାଙ୍କ କାବ୍ୟମାନଙ୍କରେ ନୀତି ଏବଂ ଆଦର୍ଶ ବିଷୟରେ ସର୍ବଦା ଉପଦେଶ ଦେଉଥିବାବେଳେ ତାଙ୍କର ଏପରି ରୁଚିହୀନ କଥାବସ୍ତୁ ନିର୍ବାଚନ ତାଙ୍କର ଦ୍ୱୈତ ବ୍ୟକ୍ତିତ୍ୱ ଏବଂ କଳୁଷିତ କଳ୍ପନାର ପରିଚୟ ଦିଏ।

ତାଙ୍କର ରଚନାଶୈଳୀ ଓ ଭାଷାକୁ ମଧ୍ୟ ବହୁ ଲେଖକ ସମାଲୋଚନା କରିଛନ୍ତି। ସେମାନଙ୍କ ମତରେ ତାଙ୍କ କାବ୍ୟ-କବିତାମାନଙ୍କର ଭାଷା ତତ୍ସମ ଶବ୍ଦରେ ପରିପୂର୍ଣ୍ଣ। ସଂସ୍କୃତଭାଷା-ଅନଭିଜ୍ଞ ସାଧାରଣ ଲୋକମାନଙ୍କ ପକ୍ଷରେ ତାଙ୍କ କାବ୍ୟମାନ ପଢ଼ି ବୁଝିବା ସହଜ ନୁହେଁ। ତାଙ୍କର କାବ୍ୟ-କବିତା ସାଧାରଣ ଲୋକଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ। 'ମହାଯାତ୍ରା' ପରି କାବ୍ୟ ଶିକ୍ଷିତ ଲୋକମାନେ ମଧ୍ୟ ପଢ଼ି ମନୋରଞ୍ଜନ କରିବା ସହଜ ନୁହେଁ। ଭାଷା ଗୁରୁଗମ୍ଭୀର, ସଂସ୍କୃତ ଶବ୍ଦ ପରିପୂର୍ଣ୍ଣ ଏବଂ କ୍ଲିଷ୍ଟ। ଏହା ସାବଲୀଳ, ସରଳ ଓ ମନୋରଞ୍ଜନକାରୀ ନୁହେଁ। ଏହା କବିଙ୍କର ସ୍ୱତଃସ୍ଫୂର୍ତ୍ତ ଭାବର ପରିପ୍ରକାଶ ନହୋଇ ସଯତ୍ନ ଶବ୍ଦବିନ୍ୟାସର ନିଦର୍ଶନ ହୋଇଛି।

ତାଙ୍କର କଥାବସ୍ତୁ ନିର୍ବାଚନ ଏବଂ କ୍ଲିଷ୍ଟ ଭାଷା ତୀବ୍ର ସମାଲୋଚନାର ସମ୍ମୁଖୀନ ହୋଇଥିବାବେଳେ ତାଙ୍କର ପ୍ରକୃତି-ଚିତ୍ରଣ ଓ ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନା ମନୋମୁଗ୍ଧକର ବୋଲି ସର୍ବଜନ ପ୍ରଶଂସିତ ହୋଇଛି। ଲେଖକମାନେ କହନ୍ତି, କବି ବାଲ୍ୟକାଳରୁ ସୌନ୍ଦର୍ଯ୍ୟର ଉପାସକ ଥିଲେ। ତାହା ସହିତ ତାଙ୍କର ପର୍ଯ୍ୟଟନ ଓ ଅନୁଭୂତି ସଂଯୁକ୍ତ ହୋଇ ପ୍ରକୃତିର ଅପୂର୍ବ ସୌନ୍ଦର୍ଯ୍ୟର ବର୍ଣ୍ଣନା ସୃଷ୍ଟିକରିଛି। ଚିଲିକା, ମହାଯାତ୍ରା, ପାର୍ବତୀ, ଉଷା, ନନ୍ଦିକେଶ୍ୱରୀ, ଚନ୍ଦ୍ରଭାଗା ଓ କେଦାରଗୌରୀ ପ୍ରଭୃତି ସମସ୍ତ କାବ୍ୟରେ ବନ, ପର୍ବତ, ନଦୀ, ସମୁଦ୍ର, ଜଳପ୍ରପାତ, ପୁଷ୍ପ, ଲତା, ପକ୍ଷୀ, ମେଘ, ସୂର୍ଯ୍ୟୋଦୟ ଏବଂ ସୂର୍ଯ୍ୟାସ୍ତ ପ୍ରଭୃତି ପ୍ରାକୃତିକ ଦୃଶ୍ୟମାନଙ୍କର ବର୍ଣ୍ଣନା ଅତ୍ୟନ୍ତ ମନୋମୁଗ୍ଧକର ହୋଇଛି। ପ୍ରକୃତିର ସର୍ବଶ୍ରେଷ୍ଠ ବର୍ଣ୍ଣନା 'ଚିଲିକା' ଓ 'ମହାଯାତ୍ରା' କାବ୍ୟରେ ମିଳେ। ଏପରି ବର୍ଣ୍ଣନାରେ ସେ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ କବିମାନଙ୍କର ପଦାଙ୍କ ଅନୁସରଣ କରିଛନ୍ତି। ପ୍ରାଚ୍ୟ କବିମାନଙ୍କ ମଧ୍ୟରେ କାଳିଦାସଙ୍କ ପ୍ରାକୃତିକ ଦୃଶ୍ୟବର୍ଣ୍ଣନାଦ୍ୱାରା ସେ ବିଶେଷ ପ୍ରଭାବିତ ହୋଇଛନ୍ତି।

କାବ୍ୟମାନଙ୍କରେ ତାଙ୍କର ଚିନ୍ତାଧାରା ବିଷୟରେ ସମାଲୋଚକମାନେ କହନ୍ତି

ଯେ, ପ୍ରେମବର୍ଣ୍ଣନାରେ କବି ଓଡ଼ିଶାର ପୁରାତନ କବିମାନଙ୍କ ରାଧାକୃଷ୍ଣଙ୍କର ପ୍ରେମ ବର୍ଣ୍ଣନା ପଦ୍ଧତି ଅନୁସରଣ ନକରି ଦୈହିକ ପ୍ରେମର ବର୍ଣ୍ଣନା କରିଛନ୍ତି। କେଦାରଗୌରୀ, ନନ୍ଦିକେଶ୍ୱରୀ, ଚନ୍ଦ୍ରଭାଗା, ଯଯାତିକେଶରୀ ପ୍ରଭୃତି କାବ୍ୟମାନଙ୍କରେ ଦୈହିକ ପ୍ରେମର ବର୍ଣ୍ଣନା କରାଯାଇଛି।

ସାହିତ୍ୟିକମାନେ କହନ୍ତି ଯେ, କବି ତାଙ୍କ କାବ୍ୟମାନଙ୍କରେ ହିନ୍ଦୁ ଦେବଦେବୀମାନଙ୍କୁ ଉପହାସ କରିଛନ୍ତି। ଦେବଦେବୀମାନଙ୍କର ମନୁଷ୍ୟମାନଙ୍କ ପରି ଦୋଷ-ଦୁର୍ବଳତା ଅଛି ବୋଲି ସେ ଦେଖାଇଛନ୍ତି ଏବଂ ସେମାନଙ୍କର ଭକ୍ତମାନଙ୍କୁ ବିପଦରୁ ରକ୍ଷାକରିବାକୁ ଶକ୍ତି ନାହିଁ ବୋଲି ବର୍ଣ୍ଣନା କରିଛନ୍ତି। ଚନ୍ଦ୍ରଭାଗାରେ ସୂର୍ଯ୍ୟଦେବଙ୍କ ରାଗ, ରୋଷ, ଈର୍ଷା ଏବଂ ଭୋଗଲାଳସା, ପାର୍ବତୀ ଓ ନନ୍ଦିକେଶ୍ୱରୀ କାବ୍ୟରେ ଦେବତାପୂଜାର ବ୍ୟର୍ଥତାର ସେମାନେ ଉଦାହରଣ ଦିଅନ୍ତି।

ସମାଲୋଚକମାନେ କହନ୍ତି ଯେ, ଯଦିଓ ରାଧାନାଥ ରାଜା, ମହାରାଜା ଓ ଜମିଦାରମାନଙ୍କଠାରୁ ସର୍ବଦା ଆଦର, ଉତ୍ସାହ ଏବଂ ଆର୍ଥିକ ସାହାଯ୍ୟ ପାଇଥିଲେ ତଥାପି ସେ ସେମାନଙ୍କୁ କ୍ରୁର, ଅତ୍ୟାଚାରୀ, ସ୍ୱାର୍ଥପର ଏବଂ ପ୍ରଜାପୀଡ଼କ ବୋଲି ଘୃଣାକରିଛନ୍ତି। ଦରବାର କାବ୍ୟରେ ସେ ରାଜାମାନଙ୍କୁ ବିଦ୍ରୂପ ଏବଂ ତିକ୍ତ ସମାଲୋଚନା କରିଛନ୍ତି। ମନ୍ତ୍ରୀମାନଙ୍କୁ ମିଥ୍ୟାବାଦୀ, ତୋଷାମଦକାରୀ, କାନକୁହା ଏବଂ ଭ୍ରଷ୍ଟାଚାରୀ ରୂପେ ବର୍ଣ୍ଣନା କରିଛନ୍ତି। ତାହା ବ୍ୟତୀତ ନନ୍ଦିକେଶ୍ୱରୀ, ପାର୍ବତୀ, ଉଷା ଏବଂ ଯଯାତିକେଶରୀ ପ୍ରଭୃତି କାବ୍ୟମାନଙ୍କରେ ରାଜକୁମାର ଓ ରାଜକୁମାରୀମାନଙ୍କର ଚରିତ୍ରଚିତ୍ରଣରେ ସେ ସେମାନଙ୍କର ଚରିତ୍ରର ଉତ୍କର୍ଷ ନ ଦେଖାଇ ଦୋଷଦୁର୍ବଳତାର ବିଶଦ ବର୍ଣ୍ଣନା କରିଛନ୍ତି।

ସାମାଜିକ ଚେତନା ଦୃଷ୍ଟିରୁ ସେ ସର୍ବଦା ନୈତିକ ମୂଲ୍ୟବୋଧ ପ୍ରଚାର କରିବାକୁ ଉଦ୍ୟମ କରିଛନ୍ତି ଏବଂ ସମାଜରେ ନୈତିକ ଅଧଃପତନରେ କ୍ଷୋଭ ପ୍ରକାଶ କରିଛନ୍ତି। 'ମହାଯାତ୍ରା' କାବ୍ୟରେ କଳିଯୁଗର ଆଗମ ହେତୁ ଜନସାଧାରଣଙ୍କ ନୈତିକ ମୂଲ୍ୟବୋଧର ଦ୍ରୁତ ଅବକ୍ଷୟ ବିଶଦଭାବରେ ବର୍ଣ୍ଣନା କରିଛନ୍ତି। ସେ ବର୍ଣ୍ଣନା ବାସ୍ତବରେ ତାଙ୍କ ସମୟରେ ଭାରତୀୟ ସମାଜରେ ଘଟୁଥିବା ନୈତିକ ଅବକ୍ଷୟ ଏବଂ ଦୁର୍ନୀତିର ବର୍ଣ୍ଣନା। ସେ କାବ୍ୟରେ ସେ ନୈତିକ ଅବକ୍ଷୟ ଯୋଗୁଁ ଭାରତର ଆର୍ଯ୍ୟଜାତିର ଅଧଃପତନ ଏବଂ ଯବନମାନଙ୍କର ଭାରତ ଅଧିକାର ସମ୍ଭବ ହୋଇଛି ବୋଲି ଦର୍ଶାଇଛନ୍ତି। ଦରବାର କାବ୍ୟରେ ରାଜା, ମହାରାଜା ଓ ପଦସ୍ଥ ବ୍ୟକ୍ତିମାନଙ୍କର ଅହମିକାକୁ ବିଦ୍ରୂପ କରି ସେ ଲେଖିଛନ୍ତି ଯେ ଧର୍ମ ପ୍ରତି ଶ୍ରଦ୍ଧା କମ୍ ଥିବାରୁ ମନୁଷ୍ୟ ଅମାନୁଷିକ ରଜୋଗୁଣର ଶରବ୍ୟ

ହେଉଛି। ପାର୍ବତୀ, ନନ୍ଦିକେଶ୍ୱରୀ ଏବଂ ଚନ୍ଦ୍ରଭାଗା ପ୍ରଭୃତି କାବ୍ୟମାନଙ୍କରେ ମଧ୍ୟ ନୀତିହୀନ କାର୍ଯ୍ୟର ପରିଣାମ ଭୟାବହ ବୋଲି ସୂଚନା ଦେଇଛନ୍ତି। ଏ କ୍ଷେତ୍ରରେ ମଧ୍ୟ କେତେକ ଲେଖକ ତାଙ୍କର ସମାଲୋଚନା କରି କହିଛନ୍ତି ଯେ, ରାଧାନାଥ କେବଳ ସୌନ୍ଦର୍ଯ୍ୟ ଓ ପ୍ରେମ ବର୍ଣ୍ଣନା କରିଛନ୍ତି। ସେ ସାଧାରଣ ଲୋକମାନଙ୍କର ଦୈନନ୍ଦିନ ସମସ୍ୟା, ବଢ଼ି, ମରୁଡ଼ି, କ୍ଷୁଧା, ରୋଗ, ଶୋକ ଆଡ଼େ ଆଖି ପକାଇ ନାହାନ୍ତି। ତାଙ୍କରି ଯୌବନାବସ୍ଥାରେ ଭୟାବହ ନ'ଅଙ୍କ ଦୁର୍ଭିକ୍ଷ ଘଟିଥିଲା ଏବଂ ସେଥିରେ ଦଶଲକ୍ଷରୁ ଅଧିକ ଲୋକ ପୋକମାଛି ପରି ମରିଥିଲେ। କବିଙ୍କ ଲେଖନୀ ଲୋକମାନଙ୍କର ସେ ଦୁଃଖ ବର୍ଣ୍ଣନା କରିନାହିଁ।

ବହୁ ଲେଖକ ରାଧାନାଥଙ୍କ ଲେଖାରେ ତାଙ୍କର ଦେଶପ୍ରେମ ଓ ଜାତୀୟତାବୋଧର ବର୍ଣ୍ଣନା କରିଛନ୍ତି। ଲୋକମାନଙ୍କ ମଧ୍ୟରେ ଦେଶପ୍ରେମ ଓ ଜାତୀୟତାବୋଧ ଜାଗରଣ ପାଇଁ ସେ ତାଙ୍କର ଅନେକ କାବ୍ୟ-କବିତାରେ ଉଦ୍‌ବୋଧନ ଦେଇଛନ୍ତି। ବିଭିନ୍ନ କାବ୍ୟ କବିତାରେ ବିଭିନ୍ନ ସ୍ଥାନର ଐତିହାସିକ ଗୌରବ ଏବଂ ସୌନ୍ଦର୍ଯ୍ୟ ବର୍ଣ୍ଣନା ତାଙ୍କର ଦେଶପ୍ରେମର ସୂଚନା ଦିଏ। ତାଙ୍କର କବିତା 'ଶିବାଜୀଙ୍କର ଉତ୍ସାହବାକ୍ୟ' ଏବଂ ମହାଯାତ୍ରାର ପଞ୍ଚମ ସର୍ଗରେ ଦେଶର ସ୍ୱାଧୀନତା ଲୋପ ଏବଂ ବିଦେଶୀ ଆକ୍ରମଣ ଓ ରାଜତ୍ୱର ସମାଲୋଚନା ଯୋଗୁଁ କେତେକ ଲୋକ ତାଙ୍କ ବିରୁଦ୍ଧରେ ରାଜଦ୍ରୋହର ଅଭିଯୋଗ ଆଣିଥିଲେ। ସେଥିରେ ସେ ବିଦେଶୀ ଯବନମାନଙ୍କୁ କ୍ରୁର, ମାଂସାଶୀ, ଶଠ ଓ ଲୁଣ୍ଠନକାରୀ ବୋଲି ବର୍ଣ୍ଣନା କରିଛନ୍ତି। ଦରବାରରେ ବାରବାଟୀ ଦୁର୍ଗର ପୂର୍ବ-ଗୌରବ ଏବଂ ବ୍ରିଟିଶ୍ ରାଜତ୍ୱରେ ରାଜା, ମହାରାଜା ଓ ପଦସ୍ଥ ବ୍ୟକ୍ତିମାନଙ୍କର ନିନ୍ଦନୀୟ ତୋଷାମଦକାରୀ ବ୍ୟବହାର ଆବେଗମୟ ଭାବରେ ବର୍ଣ୍ଣନା କରିଛନ୍ତି। ଯଦିଓ ସେ ଜୀବନଯାକ ସରକାରୀ ଚାକିରି କରିଥିଲେ ଏବଂ ବ୍ରିଟିଶ୍ ସାମ୍ରାଜ୍ଞୀ ମହାରାଣୀ ଭିକ୍ଟୋରିଆଙ୍କୁ ବନ୍ଦନାକରି କବିତା ଲେଖିଥିଲେ, ତାଙ୍କ ହୃଦୟରେ ଯେ ଭାରତର ପରାଧୀନତା ପାଇଁ ଦୁଃଖ ଏବଂ ଦେଶ ଓ ଜାତି ପ୍ରେମବହ୍ନି ସର୍ବଦା ପ୍ରଜ୍ୱଳିତ ଥିଲା, ଏଥିରେ ସନ୍ଦେହ ନାହିଁ।

ତାଙ୍କ କାବ୍ୟ-କବିତାରେ ସୂଚିତ ଜୀବନଦର୍ଶନ ଉପରେ ବହୁ ସାହିତ୍ୟିକ ଆଲୋଚନା କରିଛନ୍ତି। ରାଧାନାଥ ନିଜେ ଲେଖିଛନ୍ତି ଯେ ସେ କବି ଭବଭୂତିଙ୍କର ଶିଷ୍ୟ; ଜୟଦେବଙ୍କର ନୁହନ୍ତି। ବାଲ୍ୟକାଳରୁ ମାତୃହୀନ ଏବଂ ବିଭିନ୍ନ ରୋଗରେ ପୀଡ଼ିତ ହୋଇ ସେ ଦୁଃଖିତ ମନରେ ଓ ଚିନ୍ତାଶୀଳ ଭାବରେ ଜୀବନ ଯାପନ କରୁଥିଲେ। ଭବଭୂତି ମଧ୍ୟ ଶୈଶବରୁ ଦୁଃଖ-ଦୁର୍ଦ୍ଦଶା ମଧ୍ୟରେ ଜୀବନ କାଟି ଜୀବନକୁ କାରୁଣ୍ୟମୟ ଦେଖୁଥିଲେ। ଭବଭୂତି ତାଙ୍କର ନାଟକ ରଚନାରେ କରୁଣରସକୁ ପ୍ରଧାନ ରସରୂପେ ଗ୍ରହଣ କରିଥିଲେ। ରାଧାନାଥ ମଧ୍ୟ ତାଙ୍କ

ଜୀବନର ଅଭିଜ୍ଞତାରୁ ଜୀବନକୁ ଦୁଃଖମୟ ବୋଲି ଭାବୁଥିଲେ । ତାଙ୍କ ଧାରଣାରେ ସୁଖ ହେଉଛି ଆକାଶ-କୁସୁମ, ଏକ ଅଲଭ୍ୟ ବସ୍ତୁ। ସେ ଲେଖିଛନ୍ତି, ''ସୁଖ ବୋଲି ଯାହା ଜନନେତ୍ରେ ଦିଶେ, ହାତେ ଆସେ ହାତୁ ପଡ଼ିବା ପାଇଁ ସେ।'' –ଦୁଃଖବୋଧ ଥିଲା ତାଙ୍କର ସର୍ବପ୍ରଧାନ ଚେତନା । ସେହିପରି ତାଙ୍କର ଅନୁଭୂତି ଏବଂ ଭାବନା ହେଉଛି ନିଃସଙ୍ଗତା ଏବଂ ଉଦାସୀନତା। ଭବଭୂତିଙ୍କ ପରି ରାଧାନାଥ ସର୍ବଦା ଅନ୍ତର୍ମୁଖୀ ଓ ଗମ୍ଭୀର ଥିଲେ। ତାଙ୍କ ସାହିତ୍ୟରେ ଲଘୁତା ଓ ହାସ୍ୟରସ ସୃଷ୍ଟିକରି ପାଠକ ମନକୁ ଲଘୁ କରିବାକୁ ସେ କେବେ ଇଚ୍ଛା କରିନାହାନ୍ତି। କେଦାରଗୌରୀଠାରୁ ଆରମ୍ଭ କରି ପାର୍ବତୀ କାବ୍ୟ ପର୍ଯ୍ୟନ୍ତ ସବୁ କାବ୍ୟ ତାଙ୍କର କରୁଣରସରେ ପରିପୂର୍ଣ୍ଣ ଏବଂ ବିୟୋଗାନ୍ତକ। ଦଶରଥ ବିୟୋଗ, ଦୁର୍ଯ୍ୟୋଧନର ରକ୍ତନଦୀ ସନ୍ତରଣ, ଶ୍ମଶାନ ଦୃଶ୍ୟ ପ୍ରଭୃତି କବିତା କରୁଣରସରେ ପରିପୂର୍ଣ୍ଣ। ଚିଲିକା, ମହାଯାତ୍ରା ଓ ଦରବାର ପ୍ରଭୃତି କାବ୍ୟରେ ପ୍ରକୃତି ଏବଂ ଐତିହାସିକ ଘଟଣାମାନଙ୍କ ବର୍ଣ୍ଣନା ଗୁରୁଗମ୍ଭୀର। ତାଙ୍କର ଉପହାସ ଓ ବିଦ୍ରୂପ ମଧ୍ୟ ଗାମ୍ଭୀର୍ଯ୍ୟପୂର୍ଣ୍ଣ।

ଭାଗ୍ୟ ଓ ଭବିତବ୍ୟର ଅନନ୍ତ ଶକ୍ତିକୁ ସେ ସର୍ବଦା ସ୍ମୃତିପଟରେ ରଖିଛନ୍ତି। ସେ ବିଶ୍ୱାସ କରିଛନ୍ତି ଯେ, ବ୍ୟକ୍ତି ନୁହେଁ– ନିୟତି ହେଉଛି ଜୀବନର ଯାବତୀୟ ଘଟଣାର ନିୟନ୍ତା। ଦୈବ-ବିଧାନକୁ ବଦଳାଇ ଦେବାକୁ ଜଗତରେ କାହାରି ଶକ୍ତି ନାହିଁ। ମନୁଷ୍ୟର ରୂପଗୁଣ ଯେତେ ଆକର୍ଷଣୀୟ ହେଉ ପଛକେ, ସେ ଧନ ଓ କ୍ଷମତା ବଳରେ ଯେତେ ବଳୀୟାନ୍ ହେଉ ପଛକେ, ଏସବୁର ପରିଣାମରୁ ଲଲାଟ-ଲିଖନ ବଦଳିଯାଏ ନାହିଁ। ନିୟତିର ଅନ୍ୟରୂପ କାଳ। ଏହି କାଳ କି ଦାମ୍ଭିକ କି ଦିଗ୍‌ବିଜୟୀ ବୀର, କି ଜେତା-ବିଜିତ, ବୁଦ୍ଧିମାନ୍ ବଣିକ, ସାଧାରଣ ମନୁଷ୍ୟ ନିର୍ବିଶେଷରେ ସମସ୍ତଙ୍କୁ ଗ୍ରାସକରେ। କାଳ ନିକଟରେ ମନୁଷ୍ୟ ଅସହାୟ। ମନୁଷ୍ୟର ଗର୍ବ, ଦମ୍ଭ, ଅଭିମାନ ଅଚିରେ କାଳଗର୍ଭରେ ଲୀନ ହେବ। ମୃତ୍ୟୁ ଏବଂ କାଳ ସବୁବେଳେ ବିଦ୍ୟମାନ। ଜୀବନର ଭୋଗ, ବିଳାସ, ସୌନ୍ଦର୍ଯ୍ୟଭୋଗ ସବୁ ମୃତ୍ୟୁର ପରିପ୍ରେକ୍ଷୀରେ ଦେଖିବାକୁ ହେବ। ଦୁର୍ବଳ ଅସହାୟ ମନୁଷ୍ୟ ମହାବଳୀ କାଳ ବିରୁଦ୍ଧରେ ଯୁଦ୍ଧ କରିବା ଅସମ୍ଭବ; ତଥାପି ପ୍ରତ୍ୟେକ ବ୍ୟକ୍ତିକୁ ତା'ପାଇଁ ନିର୍ଦ୍ଦିଷ୍ଟ ସମୟରେ ଓ ପଥରେ ଅଭିନୟ କରିବାକୁ ହେବ। ତାଙ୍କର ଏହି ଚେତନା ଭକ୍ତକବି ମଧୁସୂଦନ ରାଓଙ୍କ 'ଜୀବନ-ଚିନ୍ତା' କବିତାରେ ମଧ୍ୟ ଦେଖିବାକୁ ମିଳେ।

ରାଧାନାଥ ବିଶ୍ୱାସ କରୁଥିଲେ ଯେ ମନୁଷ୍ୟର ହୃଦୟ ଜୟକରିବାପାଇଁ ଧର୍ମ ହେଉଛି ଏକମାତ୍ର ମାର୍ଗ। ଅସ୍ତ୍ରର ବିଜୟଠାରୁ ଧର୍ମର ବିଜୟ ଶ୍ରେଷ୍ଠତର। ଧର୍ମ ଅହମିକାକୁ ନାଶକରେ। ଧର୍ମନେତ୍ରରେ ସମସ୍ତେ ସମାନ। ସେ ଦରବାର

କାବ୍ୟରେ ଲେଖିଛନ୍ତି –

''ବଡ଼ପଣ ସିନା ସେହି ତାକୁ ମଣି,
ଯେଉଁ ବଡ଼ପଣ ତ୍ରିଲୋକ ସମାନୀ;
ଧର୍ମ ଏକା ସିନା ମହତପଣିଆ,
ଆଉ ସବୁ କଥା ଅଢ଼େଇଦିନିଆ ।''

ରାଧାନାଥ ତାଙ୍କ କାବ୍ୟ-କବିତାରେ ସର୍ବଦା ଚେତାଇ ଦେଇଛନ୍ତି ଯେ ଜୀବନର ଗତି ହେଉଛି ମୃତ୍ୟୁଆଡ଼କୁ । ମଧୁବାବୁ ମଧ ଜୀବନଚିନ୍ତା ପଦ୍ୟରେ ସେହି ଧାରଣା ଦେଇଛନ୍ତି । ଏ ମର୍ତ୍ତ୍ୟ-ବସତି ଶୋକ, ଦୁଃଖ, ମୋହସଂକୁଳ । ଏଥିରେ ଅନ୍ଧ ହୋଇ ବ୍ୟକ୍ତି ଜୀବନରେ ଦୁର୍ଗତି ଭୋଗକରେ । ଜୀବନରେ ଅବସାଦ ଓ ଅବସନ୍ନତା ପୂରିରହିଛି । ଏହାକୁ ସ୍ଥିର ବୋଲି ଭାବିବା ବିବେକ ସମ୍ମତ ନୁହେଁ । ମହାଭାରତରେ ଯୁଧିଷ୍ଠିରଙ୍କ ଧର୍ମବକ ସହିତ କଥୋପକଥନରେ ଏବଂ ଶଙ୍କରାଚାର୍ଯ୍ୟଙ୍କ ମୋହମୁଦ୍‌ଗରରେ ଏହି ଭାବ ପ୍ରକାଶ ପାଇଛି ।

ରାଧାନାଥଙ୍କର କାବ୍ୟ-କବିତାରେ ଭାରତୀୟ ଚିରନ୍ତନ ଆଧ୍ୟାତ୍ମିକ ଚିନ୍ତା ଓ ଜୀବନଦର୍ଶନ ପ୍ରତିଫଳିତ ହୋଇଛି । ଓଡ଼ିଆ ସାହିତ୍ୟେ ସେ ପ୍ରଥମେ ଆଧୁନିକ ନୂତନ ଶୈଳୀ ଏବଂ ନୂତନ ପରିବେଶରେ ଏ ଦର୍ଶନ ପାଠକ ସମ୍ମୁଖରେ ଉପସ୍ଥାପିତ କରିଥିଲେ । ଓଡ଼ିଆ ସାହିତ୍ୟରେ ସେ ଚିରକାଳ କବିବର ହୋଇ ରହିଛନ୍ତି ଏବଂ ପରବର୍ତ୍ତୀ କାଳରେ କବି ଓ ଲେଖକଙ୍କୁ ସର୍ବଦା ପ୍ରେରଣା ଦେଉଛନ୍ତି ।

□ □ □

**ସହାୟକ ଗ୍ରନ୍ଥ :**

୧ । ରାଧାନାଥ ଗ୍ରନ୍ଥାବଳୀ – ବିଭିନ୍ନ ସଂସ୍କରଣ ଏବଂ ସେଗୁଡ଼ିକରେ ହୋଇଥିବା ଆଲୋଚନା ।

୨ । **Radhanath Ray** – Gopinath Mohanty – Makers of Indian Literature, Sahitya Akademi ।

# ଷଷ୍ଠ ପରିଚ୍ଛେଦ

## ସ୍ୱଭାବକବି ଗଙ୍ଗାଧର ମେହେର

**ବାଲ୍ୟଜୀବନ ଓ ଶିକ୍ଷା –**

ଉନବିଂଶ ଶତାବ୍ଦୀରେ ଓ ଓଡ଼ିଶାର ଅନ୍ଧକାର ଯୁଗର ଚୂଡ଼ାନ୍ତ ପର୍ଯ୍ୟାୟରେ ୧୮୬୨ ମସିହା ଅଗଷ୍ଟ ମାସ ୯ ତାରିଖ ଶ୍ରାବଣ-ପୂର୍ଣ୍ଣିମା ଶନିବାର ଦିନ କବି ଗଙ୍ଗାଧର ମେହେର ସମ୍ବଲପୁର ଜିଲ୍ଲାର ବରପାଲି ଗ୍ରାମରେ ଗୋଟିଏ ଭୁଲିଆ ପରିବାରରେ ଜନ୍ମଗ୍ରହଣ କରିଥିଲେ। ବରପାଲି ଗ୍ରାମ ସମ୍ବଲପୁରଠାରୁ ପ୍ରାୟ ୭୫ କିଲୋମିଟର ଦକ୍ଷିଣରେ ସମ୍ବଲପୁର-ବଲାଙ୍ଗୀର ଜାତୀୟ ରାଜପଥ କଡ଼ରେ ଅବସ୍ଥିତ। କଥିତ ଅଛି ଯେ, ତାଙ୍କର ପୂର୍ବପୁରୁଷମାନେ ସମ୍ବଲପୁର ସହରରେ ବାସକରୁଥିଲେ। ମାତ୍ର ଗଙ୍ଗାଧରଙ୍କର ପ୍ରପିତାମହ କେଶବ ମେହେର ବରପାଲିରେ ବାସକରୁଥିଲେ। ତାଙ୍କର ପାଞ୍ଚପୁଅ ଥିଲେ। ପାଞ୍ଚ ଭାଇ ଥିବା ତାଙ୍କର ପରିବାରକୁ ଲୋକେ 'ପାଞ୍ଚଭାୟା ଘର' ବୋଲି କହୁଥିଲେ। ତାଙ୍କ ଘର ଗାଁର ଭାଗବତ ଗୁଡ଼ୀ ନିକଟରେ ଥିବାରୁ ଲୋକମାନେ ମଧ୍ୟ ତାଙ୍କ ଘରକୁ ଗୁଡ଼ୀତଳିଆ ଘର ବୋଲି କହୁଥିଲେ। ତାଙ୍କ ପିତାମହ ସଦାଶିବ ମେହେର ପରିବାରର ପାଞ୍ଚଭାଇଙ୍କ ମଧ୍ୟରେ ସର୍ବକନିଷ୍ଠ ଥିଲେ। ଲୁଗା ବୁଣିବା ଭୁଲିଆମାନଙ୍କର କୌଳିକ ଏବଂ ପ୍ରଧାନ କାମ ଥିଲା। ତାହା ବ୍ୟତୀତ ସେମାନେ ଧାନ ଓ ଟଙ୍କା ଋଣ ଦେବା, ଗାଈ ବଳଦ ପ୍ରଭୃତି ପାଳି ବିକ୍ରିକରିବା ବ୍ୟବସାୟ ମଧ୍ୟ କରୁଥିଲେ। ଗଙ୍ଗାଧରଙ୍କ ପ୍ରପିତାମହଙ୍କ ସମୟରେ ସେହି ବ୍ୟବସାୟ ଭଲରୂପେ ଚାଲୁଥିଲା। ତାଙ୍କର ପିତାମହ ସଦାଶିବ ମେହେର ଉକ୍ତ ବ୍ୟବସାୟୀମାନଙ୍କ ସହିତ ଗୌଣ କର୍ମରୂପେ ବୈଦ୍ୟପଣ ଏବଂ ଜ୍ୟୋତିଷୀପଣ ମଧ୍ୟ କରୁଥିଲେ। ଗଙ୍ଗାଧରଙ୍କ ପିତା ଚୈତନ୍ୟ ମେହେର ତାଙ୍କ ପିତାଙ୍କର ଦୁଇ ପୁତ୍ରଙ୍କ ମଧ୍ୟରେ ଜ୍ୟେଷ୍ଠ ପୁତ୍ର ଥିଲେ। ପିତାମହଙ୍କ ଦୁଇପୁତ୍ର ବସ୍ତ୍ର-ବୟନାଦି କର୍ମ କରିବାକୁ ସକ୍ଷମ ହେବାରୁ ପିତାମହ ବୈଦ୍ୟକର୍ମକୁ ମୁଖ୍ୟ ବ୍ୟବସାୟ କରିଥିଲେ। ଗଙ୍ଗାଧର ବାଲ୍ୟକାଳରୁ ଧୀର ସ୍ୱଭାବର ପିଲା ଥିଲେ ଏବଂ ପିତାମହଙ୍କ ସହିତ ପ୍ରତିଦିନ ସକାଳେ ନିକଟରେ ଥିବା ମନ୍ଦିରରେ ଜଗନ୍ନାଥଦର୍ଶନ

କରୁଥିଲେ। ସନ୍ଧ୍ୟାବେଳେ ମଧ୍ୟ ଅନେକ ଦିନ ପିତୃବ୍ୟଙ୍କ ସହିତ ଜଗନ୍ନାଥ ମନ୍ଦିରରେ କୀର୍ତ୍ତନରେ ଯୋଗଦେଉଥିଲେ।

ଗଙ୍ଗାଧରଙ୍କ ଜନ୍ମ ସମୟକୁ ସମ୍ବଲପୁର ଜିଲ୍ଲା ମଧ୍ୟପ୍ରଦେଶର ଅନ୍ତର୍ଭୁକ୍ତ ଥିଲା। କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲା ସହିତ ଓଡ଼ିଶା ଡିଭିଜନ୍ ବଙ୍ଗ ପ୍ରେସିଡେନ୍‌ସିର ଅନ୍ତର୍ଭୁକ୍ତ ଥିଲା। ଗଞ୍ଜାମ ଓ କୋରାପୁଟ ଜିଲ୍ଲା ମାନ୍ଦ୍ରାଜ ପ୍ରେସିଡେନ୍‌ସି ଅଧୀନରେ ଥିଲା। ସେତେବେଳେ ଓଡ଼ିଶା ଡିଭିଜନ୍‌ରେ ଯେପରି ବଙ୍ଗାଳୀମାନେ ଓଡ଼ିଆ ଭାଷା ପରିବର୍ତ୍ତେ ବଙ୍ଗଳା ଭାଷା ଚଳାଇବାକୁ ଉଦ୍ୟମ କରୁଥିଲେ, ସମ୍ବଲପୁର ଜିଲ୍ଲାରେ ସେହିପରି ହିନ୍ଦୁସ୍ଥାନୀ ଏବଂ ମରହଟ୍ଟାମାନେ ସ୍କୁଲ୍ ଏବଂ କଚେରିମାନଙ୍କରୁ ଓଡ଼ିଆ ଭାଷା ଉଠାଇଦେଇ ହିନ୍ଦୀ ଭାଷା ଚଳାଇବାକୁ ଉଦ୍ୟମ କରୁଥିଲେ। ଉପକୂଳବର୍ତ୍ତୀ ଓଡ଼ିଶା ଡିଭିଜନ୍‌ରେ ଭାଷା-ସମସ୍ୟାର ସମାଧାନ ୧୮୭୦ ମସିହା ସୁଦ୍ଧା ହୋଇଥିଲା; ମାତ୍ର ସମ୍ବଲପୁର ଜିଲ୍ଲାରେ ତାହା ହୋଇ ନଥିଲା। ୧୮୯୫ ମସିହାରେ ଯେତେବେଳେ ମଧ୍ୟପ୍ରଦେଶର ସରକାର ସମ୍ବଲପୁରର ଅଦାଲତମାନଙ୍କରୁ ଓଡ଼ିଆ ଭାଷା ଉଠାଇଦେଲେ, ସେତେବେଳକୁ ଗଙ୍ଗାଧରଙ୍କୁ ୩୩ ବର୍ଷ ହୋଇଥିଲା। ସେ ଅନ୍ୟ ଭାଷାପ୍ରେମୀ ସମ୍ବଲପୁର ବାସୀଙ୍କ ସହିତ ତାହା ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ। ଊନବିଂଶ ଶତାବ୍ଦୀ ଶେଷ ଓ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ବଙ୍ଗଳା, ମାନ୍ଦ୍ରାଜ ଏବଂ ମଧ୍ୟପ୍ରଦେଶ ପ୍ରଭୃତିରେ ଥିବା ଓଡ଼ିଆ ଅଞ୍ଚଳମାନଙ୍କୁ ଓଡ଼ିଶା ଡିଭିଜନ୍ ସହିତ ମିଶାଇଦେବାକୁ ଆନ୍ଦୋଳନ ଆରମ୍ଭ ହୋଇଥିଲା। ଉତ୍କଳର ସବୁ ଅଞ୍ଚଳର ରାଜା, ମହାରାଜା, ଜମିଦାର ଓ ବୁଦ୍ଧିଜୀବୀ ନେତା ସେଥିରେ ଯୋଗଦେଇଥିଲେ। ଗଙ୍ଗାଧର ୧୯୦୩ ମସିହାରେ ଉତ୍କଳ ସମ୍ମିଳନୀ ଆରମ୍ଭ ହେବାଠାରୁ ତାଙ୍କ ଶେଷ ଜୀବନ ପର୍ଯ୍ୟନ୍ତ ସେ ସମ୍ମିଳନୀର ଜଣେ ଅଗ୍ରଣୀ ନେତା ଥିଲେ ଏବଂ ପ୍ରତିବର୍ଷ ସମ୍ମିଳନୀର ବାର୍ଷିକ ଅଧିବେଶନମାନଙ୍କରେ ଯୋଗଦେଉଥିଲେ। ସେହି ଅବସରରେ ସେ ତାଙ୍କର ସମସାମୟିକ କବି, ଲେଖକ, ରାଜା, ମହାରାଜା ଏବଂ ସବୁ ଶ୍ରେଣୀର ଗଣ୍ୟମାନ୍ୟ ଲୋକଙ୍କ ସହିତ ମିଶିବାର ସୁଯୋଗ ପାଉଥିଲେ। ତାଙ୍କ ଜୀବନକାଳ ମଧ୍ୟରେ ୧୯୦୫ ମସିହାରେ ସମ୍ବଲପୁର ଜିଲ୍ଲା ଓଡ଼ିଶା ଡିଭିଜନ୍‌ରେ ମିଶିଯାଇଥିଲା; ମାତ୍ର ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହୋଇନଥିଲା।

ଗଙ୍ଗାଧରଙ୍କ ଜନ୍ମସ୍ଥାନ ବରପାଲି ଗ୍ରାମ ତାଙ୍କ ସମୟରେ ଗୋଟିଏ ଅନୁନ୍ନତ ଗ୍ରାମ ଥିଲା। ଅନ୍ୟ ଉନ୍ନତ ଗ୍ରାମମାନଙ୍କ ପରି ସେଠାରେ ସେ ସମୟରେ ଆଧୁନିକ ଶିକ୍ଷା ଓ ସ୍ୱାସ୍ଥ୍ୟ ସେବାର ସୁଯୋଗ ନଥିଲେ ସୁଦ୍ଧା ସେଠାରେ ଗୋଟିଏ ମଧ୍ୟ-ଓଡ଼ିଆ ସ୍କୁଲ, ପୁଲିସ୍‌ଥାନା, ପୋଷ୍ଟଅଫିସ୍ ଏବଂ ଛୋଟ ଧରଣର ହାଟ, ବଜାର ଓ ଦୋକାନ ଥିଲା। ଏହା ଗୋଟିଏ ବଡ଼ ଗ୍ରାମ ଥିଲା ଏବଂ

ଏଥିରେ ବ୍ରାହ୍ମଣ, କରଣ, ସୁନାରି, କଂସାରି, ଭୁଲିଆ, ଗୁଡ଼ିଆ, କୋଷ୍ଟା, କୁମ୍ଭାର, ତେଲୀ, ମାଳୀ, ଗଉଡ଼, କେଉଟ, ଧୋବା, ବାରିକ, ମୋଚି, ଗଣ୍ଡା, ଘାସି ପ୍ରଭୃତି ବହୁ ଜାତିର ଲୋକ ସେମାନଙ୍କର କୌଳିକ ବୃତ୍ତି ଅବଲମ୍ବନ କରି ଜୀବିକା ନିର୍ବାହ କରୁଥିଲେ। ସମ୍ବଲପୁରକୁ .ରେଳ ଲାଇନ୍ ଆସିବା ପୂର୍ବରୁ ବରପାଲି ସମ୍ବଲପୁର ଅଞ୍ଚଳର ଗୋଟିଏ ବାଣିଜ୍ୟ କେନ୍ଦ୍ର ଥିଲା। ସେଠାରୁ ବ୍ୟବସାୟୀମାନେ ସୋନପୁରର ବିନିକାବାଟେ ମହାନଦୀରେ କଟକ ଯାଇ ନୌକାରେ ବିଭିନ୍ନ ପ୍ରକାର ଜିନିଷ ଆଣି ବିକ୍ରୟ କରୁଥିଲେ ଏବଂ ସେ ଅଞ୍ଚଳରୁ ବିଭିନ୍ନ କୃଷିଜାତ ଦ୍ରବ୍ୟ ସେହି ବାଟରେ କଟକ ଅଞ୍ଚଳକୁ ପଠାଉଥିଲେ। ପଶ୍ଚିମାଞ୍ଚଳରୁ ପୁରୀକୁ ଯାଉଥିବା ତୀର୍ଥଯାତ୍ରୀମାନେ ବରପାଲିବାଟେ ଯାଉଥିଲେ। ସମ୍ବଲପୁର ଅଞ୍ଚଳର ପ୍ରସିଦ୍ଧ ସୂତା ଓ ମଠା ବସ୍ତ୍ର ଉତ୍ପାଦନ ପାଇଁ ବରପାଲି ଗୋଟିଏ ପ୍ରଧାନ କେନ୍ଦ୍ର ଥିଲା। ସେଠାରେ ବାସକରୁଥିବା କୋଷ୍ଟାମାନେ ମଠା ବସ୍ତ୍ର ବୟନରେ ଏବଂ ଭୁଲିଆମାନେ ସୂତାବସ୍ତ୍ର ବୟନରେ ପ୍ରସିଦ୍ଧି ଲାଭ କରିଥିଲେ। ବରପାଲି ଗ୍ରାମରେ ଗୋଟିଏ ଦୈନିକ ଛୋଟ ହଟୁଲି ଏବଂ ଗୋଟିଏ ସାପ୍ତାହିକ ହାଟ ବସୁଥିଲା। ଗଙ୍ଗାଧରଙ୍କ ପିଲାଦିନେ ସବୁପ୍ରକାର ଜିନିଷପତ୍ର ଅତି ଶସ୍ତା ଥିଲା। ଟଙ୍କାକୁ ୭୦-୮୦ ସେର ଚାଉଳ ମିଳୁଥିଲା। ସେହି ଅନୁପାତରେ ଅନ୍ୟସବୁ ଜିନିଷ ଶସ୍ତା ଥିଲା ଏବଂ ମୂଲିଆମାନଙ୍କ ମଜୁରି ଅତି ଅଳ୍ପ ଥିଲା।

ବରପାଲିରେ ପ୍ରାଚୀନ କାଳରୁ ଗୋଟିଏ ଜଗନ୍ନାଥ ମନ୍ଦିର ଏବଂ ସମଲାଇ ମନ୍ଦିର ଥିଲା। ପରେ କେତେକ ଶିବ ମନ୍ଦିର ଓ ଗୋପାଳଜୀ ମନ୍ଦିର ନିର୍ମିତ ହୋଇଥିଲା। ଲୋକମାନେ ପ୍ରତିବର୍ଷ ରଥଯାତ୍ରା ଓ ଶୀତଳ ଷଷ୍ଠୀ ଯାତ୍ରା ସମାରୋହରେ ପାଳନ କରୁଥିଲେ। ନବାନ୍ନ ଭକ୍ଷଣ ସେ ଅଞ୍ଚଳରେ ଗୋଟିଏ ପ୍ରଧାନ ବାର୍ଷିକ ପର୍ବ ଥିଲା। ଶିକ୍ଷାକ୍ଷେତ୍ରରେ ସେ ଅଞ୍ଚଳ ଅତ୍ୟନ୍ତ ଅନୁନ୍ନତ ଥିଲା। ୧୮୭୫ ମସିହାରେ ବରପାଲିରେ ଗୋଟିଏ ବ୍ରାଞ୍ଚ ସ୍କୁଲ ଥିଲା। ବରପାଲିରୁ ଏଗାର ମାଇଲ ଦୂର ବରଗଡ଼ଠାରେ ଗୋଟିଏ ଉଚ୍ଚପ୍ରାଥମିକ ବିଦ୍ୟାଳୟ ଏବଂ ୫୦ ମାଇଲ ଦୂର ସମ୍ବଲପୁରଠାରେ ଗୋଟିଏ ମଧ-ଇଂରାଜୀ ବିଦ୍ୟାଳୟ ଥିଲା।

ବାଲ୍ୟକାଳରୁ ଗଙ୍ଗାଧରଙ୍କର ଗୀତ ଓ ଭାଗବତ ଆଦି ଶୁଣିବାର ପ୍ରବୃତ୍ତି ଥିଲା ଏବଂ ସେ ଖେଳ-କୌତୁକରେ ବେଶି ଯୋଗ ଦେଉନଥିଲେ। ତାଙ୍କ ଘର ସମ୍ମୁଖରେ ଥିବା ଭାଗବତ ମନ୍ଦିର ଏବଂ ତାହାର ପାରିପାର୍ଶ୍ୱିକ ପ୍ରଭାବ ତାଙ୍କ ଚରିତ୍ରଗଠନରେ ବିଶେଷ ସାହାଯ୍ୟ କରିଥିଲା। ସେତେବେଳେ ବରପାଲି ଅଞ୍ଚଳରେ ଆଧୁନିକ ଧରଣର ପ୍ରାଥମିକ ବିଦ୍ୟାଳୟ ଆରମ୍ଭ ହୋଇନଥିଲା। ଗ୍ରାମମାନଙ୍କରେ ଘରୋଇ ଚାଟଶାଳୀମାନଙ୍କରେ ଅଳ୍ପସଂଖ୍ୟକ ପିଲା ପ୍ରାଥମିକ

ଶିକ୍ଷା ପାଉଥିଲେ । ଚାଟଶାଳୀ ଶିକ୍ଷା କଟକ ଅଞ୍ଚଳରୁ ଆସୁଥିବା ଅବଧାନମାନଙ୍କ ଦ୍ୱାରା ଦିଆଯାଉଥିଲା । ସେଥିରେ ପିଲାମାନେ ଗୋପୀଭାଷା, ଭାଗବତ ଓ ମଥୁରାମଙ୍ଗଳ ପ୍ରଭୃତି ପଢୁଥିଲେ ଏବଂ ୨୫ ଖନ୍ଦା ପଣିକିଆ ମୁଖସ୍ଥ କରି ହିସାବ-କିତାବ କରି ଶିଖୁଥିଲେ । ଗଙ୍ଗାଧର ସେହିପରି ଗୋଟିଏ ଚାଟଶାଳୀରେ ତାଙ୍କର ପ୍ରାଥମିକ ଶିକ୍ଷା ଆରମ୍ଭ କରିଥିଲେ । କିଛିଦିନ ପରେ ସେ ଚାଟଶାଳୀ ଭାଙ୍ଗିଯିବାରୁ ସେ ତାଙ୍କ ପିତାଙ୍କ ତତ୍ତ୍ୱାବଧାନରେ ଚାଟଶାଳୀ ପାଠ ପଢ଼ିଲେ । ପଢ଼ିବା ସମୟରେ ତାଙ୍କର ଆଉ କେତେକ ସହପାଠୀ ମଧ୍ୟ ସେଥିରେ ଯୋଗଦେବାରୁ ତାହା ମଧ୍ୟ ଗୋଟିଏ ଚାଟଶାଳୀରେ ପରିଣତ ହୋଇଥିଲା । ସେଠାରେ ସେ ଭାଗବତ ଓ ମଥୁରାମଙ୍ଗଳ ପ୍ରଭୃତି ପଢ଼ିଲେ ଏବଂ ୨୫ ଖନ୍ଦା ପଣିକିଆ ମୁଖସ୍ଥ କରିଥିଲେ ।

ଏହି ସମୟରେ ଦଶବର୍ଷ ବୟସରେ ତାଙ୍କର ବାଲ୍ୟ-ବିବାହ ହୋଇଥିଲା ଏବଂ ସେ କାର୍ଯ୍ୟରେ ତାଙ୍କ ପରିବାରର ଷାଠିଏ ଟଙ୍କା ପର୍ଯ୍ୟନ୍ତ ଋଣ ହୋଇଥିଲା । ତାଙ୍କର ପିତା ଚୈତନ୍ୟ ମେହେର ବସ୍ତ୍ରବୟନ କାର୍ଯ୍ୟରେ ଅମନୋଯୋଗୀ ହେବାରୁ ତାଙ୍କୁ ତାଙ୍କର ଭାଇ ଓ ପିତା ପୃଥକ କରିଦେଇଥିଲେ । ବହୁ ବାଦାନୁବାଦ ପରେ ସେ ପୈତୃକ ସମ୍ପତ୍ତି, ଗୋରୁଗାଈ, ତନ୍ତ ଓ ଲୁଗାବୁଣା ସରଞ୍ଜାମ, ଗଚ୍ଛିତଥିବା ଓ କରଜ ଦିଆଯାଇଥିବା ଅଳ୍ପକିଛି ଧାନର ଏକ-ତୃତୀୟାଂଶ ଭାଗପାଇଥିଲେ । ସେ ସମସ୍ତର ମୂଲ୍ୟ ଅଳ୍ପ ଥିଲା । ପୃଥକ୍ ହେବାପରେ ତାଙ୍କର ପିତାଙ୍କୁ ନିୟମିତ ଭାବରେ ଲୁଗା ବୁଣିବାକୁ ପଡ଼ିଲା ଏବଂ ସେ ଚାଟଶାଳୀରେ ଶିକ୍ଷା ଦେଇନପାରିବାରୁ ଚାଟଶାଳୀ ଭାଙ୍ଗିଗଲା । ଗଙ୍ଗାଧରଙ୍କର ଚାଟଶାଳୀ ପଢ଼ା ସେହିଠାରେ ରହିଗଲା । ସେତେବେଳେ ଲୁଗାପଟାର ଦାମ୍ ଅତି ଅଳ୍ପ ଥିଲା । ଚୈତନ୍ୟ ଲୁଗାବୁଣାରୁ ଅତି ଅଳ୍ପ ଆୟ ଦ୍ୱାରା କଷ୍ଟରେ କୁଟୁମ୍ବ ପୋଷୁଥିଲେ । ଗଙ୍ଗାଧରଙ୍କର ପାଠ ପଢ଼ିବାର ଇଚ୍ଛା ଅଦମ୍ୟ ଥିଲେ ମଧ୍ୟ ସେ ଅନ୍ୟ କୌଣସି ଚାଟଶାଳୀକୁ ପଢ଼ିବାକୁ ଯାଇନଥିଲେ । ଅନ୍ୟ ଚାଟଶାଳୀମାନଙ୍କରେ ଅବଧାନମାନେ କଠିନ ଶାରୀରିକ ଦଣ୍ଡ ଦେଉଥିବାରୁ ସେ ଭୟରେ ଅନ୍ୟ ଚାଟଶାଳୀରେ ପ୍ରବେଶ କରିନଥିଲେ ।

ସେହି ସମୟରେ ସରକାର ପ୍ରାଥମିକ ଶିକ୍ଷା ଦେବାକୁ ବରପାଲିରେ ପ୍ରଥମ ଶ୍ରେଣୀଠାରୁ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଥିବା ଗୋଟିଏ ସ୍କୁଲ ଆରମ୍ଭ କଲେ । ଏହି ଆଧୁନିକ ସ୍କୁଲମାନଙ୍କରେ ଲେଖାପଢ଼ା, ସାହିତ୍ୟ, ଗଣିତ, ଇତିହାସ, ଭୂଗୋଳ ପ୍ରଭୃତି ବିଭିନ୍ନ ବିଷୟ ଶିକ୍ଷା ଦିଆଯାଉଥିଲା । ପ୍ରଥମେ ବରପାଲିର ସମଲାଇ ମନ୍ଦିରରେ ପ୍ରଥମ ଶ୍ରେଣୀର ଶିକ୍ଷା ଦିଆଯାଉଥିଲା । ପରେ ଦ୍ୱିତୀୟ ଶ୍ରେଣୀଠାରୁ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷା ଦେବାପାଇଁ ବରପାଲି ବସ୍ତି ବାହାରେ

ଗୋଟିଏ ସ୍କୁଲ ଘର ତିଆରିହେଲା ଏବଂ ସେ ସ୍କୁଲର ନାମ ହେଲା ବରପାଲି ଭର୍ଣ୍ଣାକୁଲାର ମିଡିଲ୍ ସ୍କୁଲ। ସେତେବେଳେ ସେ ଅଞ୍ଚଳର ଗ୍ରାମବାସୀମାନେ ସେମାନଙ୍କ ପିଲାମାନଙ୍କୁ ସ୍କୁଲକୁ ପଠାଇବାକୁ ଅନିଚ୍ଛୁକ ଥିଲେ। ସେଥିଯୋଗୁଁ ମଧ୍ୟପ୍ରଦେଶ ସରକାର ପିଲାମାନଙ୍କୁ ପ୍ରାଥମିକ ସ୍କୁଲ ପଠାଇବା ବାଧ୍ୟତାମୂଳକ କରିଥିଲେ। ପ୍ରାୟ ୧୮୭୫ ମସିହା ସମୟରେ ବରଗଡ଼ ତହସିଲ୍‌ର ତହସିଲ୍‌ଦାର ବରପାଲି ଆସି ଗାଁର ଅଭିଭାବକମାନଙ୍କୁ ସେମାନଙ୍କର ପିଲାମାନଙ୍କ ନାମ ସ୍କୁଲରେ ଲେଖାଇବାକୁ ବାଧ୍ୟକରିଥିଲେ। ଚୈତନ୍ୟ ମେହେରଙ୍କର ଜଣେ ବିରୋଧୀ ବ୍ୟକ୍ତି ସେ ତାଙ୍କ ପୁଅକୁ ସ୍କୁଲକୁ ପଠାଇନଥିବାରୁ ତହସିଲଦାରଙ୍କ ପାଖରେ ଆପତ୍ତି କରିଥିଲେ। ତହସିଲ୍‌ଦାର ଚୈତନ୍ୟଙ୍କୁ ଡାକି ପଚାରିବାରୁ ସେ ସଙ୍ଗେ ସଙ୍ଗେ ପୁଅକୁ ପଠାଇବାକୁ ରାଜିହୋଇଗଲେ। ନିୟମ ଅନୁସାରେ ଗଙ୍ଗାଧରଙ୍କ ନାମ ପ୍ରଥମ ଶ୍ରେଣୀରେ ଲେଖାହେଲା ଏବଂ ସେ ଆନନ୍ଦରେ ସେଠାରେ ପଢ଼ିବା ଆରମ୍ଭ କଲେ।

ଗଙ୍ଗାଧର ଛ'ମାସ ପରେ ଦ୍ୱିତୀୟ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହୋଇ ବରପାଲି ଭର୍ଣ୍ଣାକୁଲାର୍ ସ୍କୁଲରେ ପଢ଼ିବାକୁ ଗଲେ। ଚୈତନ୍ୟ ନିଜର ଆର୍ଥିକ ଦୁରବସ୍ଥା ସ୍କୁଲ ଶିକ୍ଷକଙ୍କୁ ଜଣାଇ ତାଙ୍କ ଅନୁମତିରେ କେବଳ ଗୋଟିଏ ଓଳି ଗଙ୍ଗାଧରଙ୍କୁ ସ୍କୁଲକୁ ପଠାଇ ଅନ୍ୟ ଓଳିଟି ତାଙ୍କୁ ଲୁଗାବୁଣା କାମରେ ଲଗାଇଥିଲେ। କେବଳ ଗୋଟିଏ ଓଳି ସ୍କୁଲରେ ପଢ଼ି ମଧ୍ୟ ସେ ପ୍ରତି ଛ'ମାସରେ ଗୋଟିଏ ଲେଖାଏଁ ଶ୍ରେଣୀରୁ ଉତ୍ତୀର୍ଣ୍ଣ ହୋଇ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିଥିଲେ। ଉଚ୍ଚ ଶ୍ରେଣୀର ପାଠ ବୁଝିନପାରିଲେ ରାତିରେ ସ୍କୁଲର ପ୍ରଧାନ ଶିକ୍ଷକଙ୍କ ଘରକୁ ଯାଇ ପାଠ ବୁଝିଆସୁଥିଲେ। ସେତେବେଳେ କଟକ ଜିଲ୍ଲାର 'ମୂଳବସନ୍ତ' ଗ୍ରାମନିବାସୀ ଘନଶ୍ୟାମ ମିଶ୍ର ସେ ସ୍କୁଲର ପ୍ରଧାନଶିକ୍ଷକ ଥିଲେ। ସେ ଜଣେ ଦକ୍ଷ ଶିକ୍ଷକ ଥିଲେ ଏବଂ ପିଲାମାନଙ୍କୁ ଆଗ୍ରହରେ ପାଠ ପଢ଼ାଉଥିଲେ। ପଞ୍ଚମଶ୍ରେଣୀ ପରେ ପ୍ରଧାନଶିକ୍ଷକ ଗଙ୍ଗାଧରଙ୍କୁ ସମ୍ବଲପୁରରେ ନର୍ମାଲ୍ ସ୍କୁଲ ପରୀକ୍ଷା ଦେବାକୁ ମନୋନୀତ କରିଥିଲେ। ମାତ୍ର ବର୍ଷାକାଳରେ ବିପଜ୍ଜନକ ଜଳପୂର୍ଣ୍ଣ ମହାନଦୀ ଡଙ୍ଗାରେ ପାରିହେବାକୁ ପଡୁଥିବାରୁ ତାଙ୍କର ପିତା ତାଙ୍କୁ ସମ୍ବଲପୁର ପଠାଇବାକୁ ରାଜି ହୋଇନଥିଲେ। ପରୀକ୍ଷା ଦେଇପାରିନଥିବାରୁ ଗଙ୍ଗାଧର ବିଶେଷ ଦୁଃଖିତ ହୋଇଥିଲେ। ମାତ୍ର ପୁଣି ଗୋଟିଏ ଓଳି ସ୍କୁଲକୁ ଯାଇ ପଞ୍ଚମ ଶ୍ରେଣୀରେ ଆଉ ଛ'ମାସ ପଢ଼ିଥିଲେ। ସେତେବେଳେ ଘନଶ୍ୟାମ ମିଶ୍ର ସ୍ୱେଚ୍ଛାପ୍ରବୃତ୍ତ ହୋଇ ଗଙ୍ଗାଧରଙ୍କ ସହ ଆଉ କେତେଜଣ ପିଲାଙ୍କୁ ସୂତ୍ରସାର ନାମକ ସଂସ୍କୃତ ବ୍ୟାକରଣ ପଢ଼ାଇଥିଲେ ଏବଂ ଛାତ୍ରମାନଙ୍କ ଜ୍ଞାନ ବୃଦ୍ଧି ପାଇଁ ଷଷ୍ଠଶ୍ରେଣୀର ପାଠ ଆରମ୍ଭ କରିଦେଇଥିଲେ। ମାତ୍ର କିଛିଦିନ ପରେ ତାଙ୍କର ପାରିବାରିକ ଅସୁବିଧା ହେତୁ

ସେ ଛୁଟିନେଇ ନିଜ ଗ୍ରାମକୁ ଚାଲିଯାଇଥିଲେ। ପରେ ଇନିସ୍‌ପେକ୍ଟର ରାଧାନାଥ ରାୟଙ୍କ ଅନୁଗ୍ରହରେ ସେ ଇନ୍‌ସପେକ୍ଟିଂ ପଣ୍ଡିତରୂପେ ନିଯୁକ୍ତି ପାଇଥିଲେ।

ଘନଶ୍ୟାମ ମିଶ୍ର ଚାଲିଯିବାପରେ ବରପାଲି ସ୍କୁଲରେ ଆଉ ଷଷ୍ଠଶ୍ରେଣୀ ପାଠ ପଢ଼ା ହେଲା ନାହିଁ। ସେତେବେଳେ ସମ୍ବଲପୁର ଜିଲ୍ଲା ମଧ୍ୟପ୍ରଦେଶରେ ଥିବାରୁ ଓଡ଼ିଶା ଡିଭିଜନ୍‌ରେ ଯେଉଁ ଶିକ୍ଷାପ୍ରଣାଳୀ ଓ ପାଠ୍ୟପୁସ୍ତକମାନ ପ୍ରଚଳିତ ଥିଲା, ସମ୍ବଲପୁରରେ ତାହା ନଥିଲା। ସମ୍ବଲପୁର ଜିଲ୍ଲାରେ ଯେଉଁ ପାଠ୍ୟପୁସ୍ତକମାନ ଚଳୁଥିଲା ତାହା ବଙ୍ଗଳାଭାଷାରୁ ଓଡ଼ିଆରେ ଅନୁବାଦ କରାଯାଉଥିଲା। ଗଙ୍ଗାଧର ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି ଯେ, ତାଙ୍କ ଛାତ୍ର-ଜୀବନରେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସେ କେବଳ ଦୁଇଟଙ୍କାର ବହି କିଣିବାକୁ ସମର୍ଥ ହୋଇଥିଲେ, ଅବଶିଷ୍ଟ ଆବଶ୍ୟକ ବହି ଅନ୍ୟ ପିଲାମାନଙ୍କଠାରୁ ମାଗିଆଣି ପଢ଼ିବାପରେ ସେମାନଙ୍କୁ ଫେରାଇଦେଉଥିଲେ। ସ୍କୁଲରେ ପଢ଼ିଲାବେଳେ ତାଙ୍କର କାମିଜ ଖଣ୍ଡିଏ ସୁଦ୍ଧା ନଥିଲା। ସେ ଖଣ୍ଡିଏ ଶାନ୍ତିପୁରୀ ଚାଦର ଘୋଡ଼ିହୋଇ ସ୍କୁଲକୁ ଯାଉଥିଲେ। ତାଙ୍କର ଅକ୍ଷର ଅତି ସୁନ୍ଦର ଥିଲା। ସେଥିଯୋଗୁଁ ଅନେକ ମହାଜନ ତାଙ୍କଦ୍ୱାରା ତମସୁକ ଲେଖାଇବାକୁ ଆଗ୍ରହ ପ୍ରକାଶ କରୁଥିଲେ।

ପଞ୍ଚମ ଶ୍ରେଣୀପାଠ ପରେ ଗଙ୍ଗାଧରଙ୍କର ସ୍କୁଲଶିକ୍ଷା ଶେଷହୋଇଥିଲା। ତାହାପରେ ଦିନର ଦୁଇଓଳି ଲୁଗାବୁଣା କାର୍ଯ୍ୟରେ କଟାଇଥିଲେ। ତାଙ୍କ ହାତବୁଣା ଲୁଗା ଅତି ସୁନ୍ଦର ହେଉଥିବାରୁ ଲୋକମାନେ ସେହି ଲୁଗା ପ୍ରତି ଆକୃଷ୍ଟ ହେଉଥିଲେ। ୧୮୭୮ ମସିହାରେ ୧୬ ବର୍ଷ ବୟସରେ ତାଙ୍କର ଦୂର୍ବାକ୍ଷତ ହୋଇଥିଲା ଏବଂ ସେ ଘରସଂସାର ଆରମ୍ଭ କରିଥିଲେ। ତାହାପରେ ତାଙ୍କ ପିତା ଗୃହପରିଚାଳନାର ସମସ୍ତ ଭାର ତାଙ୍କ ଉପରେ ଛାଡ଼ିଦେଇ ନିଜେ କିଛି ସାହୁକାରୀ ଓ ବୈଦ୍ୟବୃତ୍ତି କରୁଥିଲେ। ୧୮୭୯ ମସିହାରେ ପଣ୍ଡିତ ଲକ୍ଷ୍ମଣ ମିଶ୍ର ବରପାଲି ସ୍କୁଲର ହେଡ୍‌ପଣ୍ଡିତ ହୋଇଥିଲେ। ସେ ଗଙ୍ଗାଧରଙ୍କୁ ଡକାଇ ପୁନର୍ବାର ପଞ୍ଚମ ଶ୍ରେଣୀର ଭିଲେଜ୍ ସ୍କୁଲ ପରୀକ୍ଷା ଦେବାପାଇଁ ପରାମର୍ଶ ଦେଇଥିଲେ। ସୁତରାଂ ସେ ଆଉ କିଛି ଦିନ ସ୍କୁଲରେ ପଢ଼ି ୧୮୮୨ ମସିହାରେ ସମ୍ବଲପୁର ଯାଇ ସେ ପରୀକ୍ଷା ଦେଇଥିଲେ। ସେତେବେଳକୁ ସମ୍ବଲପୁର ଜିଲ୍ଲାରେ ନର୍ମାଲ୍ ସ୍କୁଲ ପରୀକ୍ଷା ଉଠିଯାଇ ଟାଉନ୍ ସ୍କୁଲ ଓ ଭିଲେଜ୍ ସ୍କୁଲ ପରୀକ୍ଷା ପ୍ରବର୍ତ୍ତିତ ହୋଇଥିଲା। ଗଙ୍ଗାଧର ଭିଲେଜ୍ ସ୍କୁଲ ପରୀକ୍ଷାରେ ଗଣିତରେ ଉଚ୍ଚ ନମ୍ବର ରଖିନଥିବାରୁ ଭିଲେଜ୍ ସ୍କୁଲ ପାଶ୍ ସାର୍ଟିଫିକେଟ୍ ପାଇନପାରି କେବଳ ଦେଶୀୟ ପାଠଶାଳାର ସାର୍ଟିଫିକେଟ୍ ପାଇଥିଲେ। ସେତିକିରେ ତାଙ୍କ ସ୍କୁଲଶିକ୍ଷା ଶେଷହୋଇଥିଲା।

## ଚାକିରି-ଜୀବନ –

ଗଙ୍ଗାଧରଙ୍କର ସ୍କୁଲଶିକ୍ଷା ପଞ୍ଚମ ଶ୍ରେଣୀ ପରେ ଶେଷହୋଇଥିଲେ ସୁଦ୍ଧା ତାଙ୍କର ଜ୍ଞାନ-ପିପାସା ପ୍ରବଳ ଥିବାରୁ ଘରକାମରେ ସର୍ବଦା ବ୍ୟସ୍ତ ଥାଇ ମଧ ଉପେନ୍ଦ୍ରଭଞ୍ଜଙ୍କର ଲାବଣ୍ୟବତୀ, ରସିକହାରାବଳୀ, ବୈଦେହୀଶ ବିଳାସ ଏବଂ ଦୀନକୃଷ୍ଣ ଦାସଙ୍କର ରସକଲ୍ଲୋଳ ପ୍ରଭୃତି କାବ୍ୟ-କବିତା ପାଠକରୁଥିଲେ। ଏକାକୀ ଲୁଗାବୁଣା କାମ କରିବାକୁ ଅସୁବିଧାଜନକ ମନେକରୁଥିବାରୁ ମନେମନେ ଚାକିରି କରିବାକୁ ଇଚ୍ଛାକରୁଥିଲେ। ୧୮୮୫ ମସିହାରେ ବରପାଲିର ଜମିଦାର ନୃପରାଜ ସିଂହ ଜମିଦାରିରେ ଜମିମାପ କାର୍ଯ୍ୟ ଆରମ୍ଭ କରିଥିଲେ। ସେଥିରେ କେତେଜଣ ଅମିନ ଆବଶ୍ୟକ ହେଉଥିବାରୁ ଜମିଦାରଙ୍କ ମୁକ୍ତାର କମଳଚରଣ ପଟ୍ଟନାୟକ ଗଙ୍ଗାଧରଙ୍କୁ ଡାକି ସେହି କାର୍ଯ୍ୟରେ ନିଯୁକ୍ତ କରିଥିଲେ। ବନ୍ଦୋବସ୍ତ ଶେଷରେ ତାଙ୍କର ସାଧୁତା ଏବଂ କାର୍ଯ୍ୟଦକ୍ଷତାର ପରିଚୟ ପାଇ ଜମିଦାର ତାଙ୍କୁ ମାଲ-ମୋହରିର କାର୍ଯ୍ୟଭାର ଦେଇଥିଲେ। ସେତେବେଳେ ତାଙ୍କର ମାସିକ ଦରମା ମାତ୍ର ସାତଟଙ୍କା ଥିଲା। ଜମିଦାରି ପରି ଆବିଳ ସଂସ୍ଥାରେ କାମ କରି ମଧ ତାଙ୍କର ସରଳତା ଓ ସାଧୁତା ଉପରେ କୌଣସି କଳଙ୍କ ଲାଗିନଥିଲା।

ସେ ଜମିଦାରି ସଂସ୍ଥାରେ କାର୍ଯ୍ୟ କରୁଥିଲାବେଳେ ଜମିଦାର ନୃପରାଜ ସିଂହଙ୍କ ପୁତ୍ର ମହେନ୍ଦ୍ର ସିଂହଙ୍କୁ ଇଂରାଜୀ ଶିକ୍ଷା ଦେବାକୁ ଅକ୍ଷୟବାବୁ ନାମରେ ଜଣେ ଶିକ୍ଷକ ଥିଲେ। ସେ ଗଙ୍ଗାଧରଙ୍କୁ ଅତ୍ୟନ୍ତ ଭଲପାଉଥିଲେ। ଗଙ୍ଗାଧର ତାଙ୍କଠାରୁ କିଛିକାଳ ଇଂରାଜୀ ଶିକ୍ଷାକରିଥିଲେ। ମାତ୍ର ୧୮୯୪ ମସିହାରେ ଅକ୍ଷୟବାବୁ ବରପାଲିରୁ ବିଦାୟ ନେଇଥିଲେ। ତାଙ୍କ ସ୍ଥାନରେ ସୂର୍ଯ୍ୟକୁମାର ମିତ୍ର ନାମରେ ଜଣେ ସହୃଦୟ ବ୍ୟକ୍ତି ଯୁବରାଜଙ୍କର ଇଂରାଜୀ ଶିକ୍ଷକ ହୋଇଥିଲେ। ତାଙ୍କଠାରୁ ମଧ ଗଙ୍ଗାଧର କିଛି ଇଂରାଜୀ ଶିକ୍ଷାକରିଥିଲେ। ଏହି ସମୟରେ ଗଙ୍ଗାଧର 'ରସ-ରତ୍ନାକର' ନାମରେ ତାଙ୍କର ପ୍ରଥମ କାବ୍ୟ ରଚନା କରିଥିଲେ ଏବଂ ତାହାକୁ ସୂର୍ଯ୍ୟକୁମାର ମିତ୍ରଙ୍କୁ ଦେଖିବାକୁ ଦେଇଥିଲେ। ପ୍ରାଚୀନ ଶୈଳୀରେ ଲିଖିତ ଏହି କାବ୍ୟଟି ଦେଖି ସେ ଗଙ୍ଗାଧରଙ୍କୁ ଯୁଗୋପଯୋଗୀ ସାହିତ୍ୟ ରଚନାପାଇଁ ପରାମର୍ଶ ଦେଇଥିଲେ। ତାଙ୍କରି ପରାମର୍ଶରେ ଗଙ୍ଗାଧର 'ଉତ୍କଳଲକ୍ଷ୍ମୀ' କାବ୍ୟ ଲେଖିଥିଲେ ଏବଂ ସୂର୍ଯ୍ୟକୁମାର ମିତ୍ର ତାହାର ପ୍ରଥମ ସଂସ୍କରଣର ପ୍ରକାଶନଭାର ବହନ କରିଥିଲେ।

ବରପାଲି ଜମିଦାର ନୃପରାଜ ସିଂହ ସରକାରଙ୍କଠାରୁ ଜୁଡ଼ିସିଆଲ୍ ମାଜିଷ୍ଟ୍ରେଟ୍ କ୍ଷମତା ପାଇଥିଲେ ଏବଂ ସରକାରଙ୍କ ତରଫରୁ ତାଙ୍କ ଅଧୀନରେ ଜଣେ ଜୁଡ଼ିସିଆଲ୍ ମୋହରିର କାମ କରୁଥିଲେ। ୧୮୯୯ ମସିହାରେ ବରପାଲିରେ ଜୁଡ଼ିସିଆଲ୍ ମୋହରିର କାମ ଖାଲିପଡ଼ିଲା। ସେ ବର୍ଷ ସେଠାରେ ମହାମାରୀ

ବସନ୍ତ ରୋଗ ବ୍ୟାପିଥିଲା ଏବଂ ସେଥିରେ ଜମିଦାରଙ୍କର ଜୁଡ଼ିସିଆଲ୍ ମୋହରିର ମୃତ୍ୟୁ ବରଣ କରିଥିଲେ । ବରପାଲିରେ ବସନ୍ତ ରୋଗ ବ୍ୟାପିଥିବାରୁ ବାହାରୁ ଅନ୍ୟ କେହି ସେ କାମ କରିବାକୁ ଆସିଲେ ନାହିଁ । ଜମିଦାର ସେ ପଦପାଇଁ ଗଙ୍ଗାଧରଙ୍କ ନାମ ସୁପାରିସ୍ କରିଥିଲେ । ସରକାରଙ୍କ ଆଦେଶ ମିଳିବା ପରେ ୧୮୯୯ ମସିହାରୁ ସେ ଜମିଦାରଙ୍କର ମାଲ-ମୋହରିର ଓ ଜୁଡ଼ିସିଆଲ୍ ମୋହରିର ଉଭୟ କାମ ଚଳାଉଥିଲେ । ଜୁଡ଼ିସିଆଲ୍ ମୋହରିରଙ୍କ ମାସିକ ବେତନ ୧୫ଟଙ୍କା ସେ ନିୟମିତ ଭାବରେ ପାଉଥିଲେ; ମାତ୍ର ମାଲ-ମୋହରିର କାର୍ଯ୍ୟର ଦରମା ନିୟମିତ ଭାବରେ ତାଙ୍କୁ ମିଳୁନଥିଲା । ଏହି ଉଭୟ କାମ କରିବାପାଇଁ ତାଙ୍କୁ ଦିନରାତି କଠିନ ପରିଶ୍ରମ କରିବାକୁ ପଡୁଥିଲା ।

୧୮୯୩ ମସିହା ମାର୍ଚ୍ଚ ମାସରେ ବରପାଲି ଯୁବରାଜ ମହେନ୍ଦ୍ର ସିଂହଙ୍କର ମୟୂରଭଞ୍ଜ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ଦେବଙ୍କ ଭଗିନୀ ଲାବଣ୍ୟମଞ୍ଜରୀଙ୍କ ସହିତ ବିବାହ ହୋଇଥିଲା । ବରଯାତ୍ରୀ ଦଳରେ ଗଙ୍ଗାଧର ମୟୂରଭଞ୍ଜ ଯାଇଥିଲେ ଏବଂ ଅନ୍ୟ ବରଯାତ୍ରୀଙ୍କ ସହିତ ମଧୁବନ ଉଦ୍ୟାନରେ ରହିଥିଲେ । ସେହି ସମୟରେ ସେ ମହାରାଜାଙ୍କର ଉଦାରଭାବ ଏବଂ ନିରଭିମାନତା ଲକ୍ଷ୍ୟ କରିଥିଲେ । ପରେ ତାଙ୍କର 'ଇନ୍ଦୁମତୀ' କାବ୍ୟ ମହାରାଜାଙ୍କ ନାମରେ ଉତ୍ସର୍ଗ କରିଥିଲେ । ସେ ସମୟରେ ଓଡ଼ିଆ ସାହିତ୍ୟର ଉନ୍ନତି ପାଇଁ ବାରିପଦାରୁ 'ମନୋରମା' ନାମରେ ଗୋଟିଏ ସାପ୍ତାହିକ ପତ୍ରିକା ଏବଂ 'ଉତ୍କଳ ପ୍ରଭା' ନାମରେ ଗୋଟିଏ ମାସିକ ପତ୍ରିକା ପ୍ରକାଶିତ ହେଉଥିଲା । ଗଙ୍ଗାଧରଙ୍କ ଇନ୍ଦୁମତୀ କାବ୍ୟ ପ୍ରଥମେ 'ଉତ୍କଳ ପ୍ରଭା'ରେ ପ୍ରକାଶିତ ହୋଇଥିଲା । ସେଥିଯୋଗୁଁ ଉପକୂଳବର୍ତ୍ତୀ ଅଞ୍ଚଳରେ ଗଙ୍ଗାଧରଙ୍କର ପ୍ରତିଷ୍ଠା ବୃଦ୍ଧିପାଇଥିଲା । ଇନ୍ଦୁମତୀ କାବ୍ୟପାଇଁ 'ଉତ୍କଳପ୍ରଭା' ତାଙ୍କୁ ପଚିଶ ଟଙ୍କା ପୁରସ୍କାର ଦେଇଥିଲା । ସେ ସମୟରେ ବାମଣ୍ଡାରେ 'ସମ୍ବଲପୁର ହିତୈଷିଣୀ' ନାମରେ ଗୋଟିଏ ସାପ୍ତାହିକ ପତ୍ରିକା ପ୍ରକାଶିତ ହେଉଥିଲା । ଏହା ବାମଣ୍ଡା ରାଜା ବାସୁଦେବ ସୁଢ଼ଳ ଦେବଙ୍କ ପୃଷ୍ଠପୋଷକତାରେ ଏବଂ ବାଙ୍କୀ ବୈଦେଶ୍ୱରନିବାସୀ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦନାରେ ପ୍ରକାଶିତ ହେଉଥିଲା । ବିଦ୍ୟାରତ୍ନଙ୍କ ଅନୁରୋଧରେ ଗଙ୍ଗାଧର ନିଜ ରଚିତ ପଦ୍ୟାବଳୀ ସେଥିରେ ପ୍ରକାଶ କରିବାକୁ ପଠାଉଥିଲେ । ଗଙ୍ଗାଧରଙ୍କ ଜୀବନୀ ସେ ପତ୍ରିକାରେ ପ୍ରକାଶ ପାଇଥିଲା । ୧୮୯୩ ମସିହାରେ ରାଧାନାଥ ରାୟଙ୍କ ବାମଣ୍ଡା ପରିଦର୍ଶନ ସମୟରେ ନୀଳମଣି ବିଦ୍ୟାରତ୍ନ ତାଙ୍କ ସହିତ ଗଙ୍ଗାଧରଙ୍କ ସାକ୍ଷାତର ବ୍ୟବସ୍ଥା କରିଥିଲେ । ଗଙ୍ଗାଧରଙ୍କର 'କୀଚକବଧ' କାବ୍ୟ ପ୍ରଣୟନବେଳକୁ ବିଦ୍ୟାରତ୍ନ ରମ୍ଭାରେ 'ପ୍ରଜାବନ୍ଧୁ' ନାମକ ସାପ୍ତାହିକ ପତ୍ରିକାର ସମ୍ପାଦକ ଥିଲେ । ସେଥିରେ 'କୀଚକବଧ' ପ୍ରକାଶ କରିବାକୁ ସେ ବିଶେଷ ଆଗ୍ରହୀ ଥିଲେ । ବିଦ୍ୟାରତ୍ନଙ୍କର

ବହୁଦିନ ପର୍ଯ୍ୟନ୍ତ ଗଙ୍ଗାଧରଙ୍କ ସହିତ ସୁସମ୍ପର୍କ ଥିଲା । ୧୮୯୫ ମସିହାରେ ବରପାଲି ଯୁବରାଜ ମହେନ୍ଦ୍ର ସିଂହ ବାରିପଦା, କଲିକତା ଓ ବର୍ଦ୍ଧମାନ ପ୍ରଭୃତି ସ୍ଥାନ ପରିଦର୍ଶନରେ ଯାଇଥିଲେ । ତାଙ୍କ ସହିତ ସୂର୍ଯ୍ୟକୁମାର ମିତ୍ର ଏବଂ ଗଙ୍ଗାଧର ମଧ୍ୟ ଯାଇଥିଲେ । ସୂର୍ଯ୍ୟକୁମାରବାବୁ ଦୁଇ-ତିନି ବର୍ଷ ପରେ ବରପାଲିରୁ ଚାଲିଯିବା ପରେ ଗଙ୍ଗାଧର ମହେନ୍ଦ୍ର ସିଂହଙ୍କ ଓଡ଼ିଆ ଭାଷା ଶିକ୍ଷକରୂପେ କାର୍ଯ୍ୟ କରିଥିଲେ ।

୧୮୯୩ ମସିହାରେ ରାଧାନାଥ ରାୟ ବାମଣ୍ଡା ଆସି ସେଠାରୁ ସମ୍ବଲପୁର ଓ ବିନିକା ଦେଇ କଟକ ଫେରିଯାଇଥିଲେ । ସମ୍ବଲପୁରଠାରେ ଗଙ୍ଗାଧରଙ୍କର ତାଙ୍କ ସହିତ ସାକ୍ଷାତ ହୋଇଥିଲା । ତାହାପୂର୍ବରୁ ରାଧାନାଥ ଗଙ୍ଗାଧରଙ୍କର 'ଅହଲ୍ୟାସ୍ତବ' ଓ 'ଇନ୍ଦୁମତୀ' କାବ୍ୟ ଦୁଇଟିର ପାଣ୍ଡୁଲିପି ପଢ଼ି ତାଙ୍କପ୍ରତି ବିଶେଷ ଆକୃଷ୍ଟ ହୋଇଥିଲେ । ୧୮୯୩ରେ ଗଙ୍ଗାଧର ରାଧାନାଥଙ୍କୁ ଭେଟିବାପାଇଁ ସମ୍ବଲପୁର ଆସିଥିଲେ । ବିଦ୍ୟାରତ୍ନ ସେତେବେଳେ ରାଧାନାଥଙ୍କ ସଙ୍ଗରେ ଥିଲେ । ରାଧାନାଥ ଗଙ୍ଗାଧରଙ୍କୁ ଦେଖି ସସ୍ନେହରେ ଆଲିଙ୍ଗନ କରିଥିଲେ । ପରଦିନ ଗଙ୍ଗାଧର ରାଧାନାଥଙ୍କ ସହିତ ସମ୍ବଲପୁରଠାରୁ ମହାନଦୀରେ ବିନିକା ପର୍ଯ୍ୟନ୍ତ ଯାଇଥିଲେ । ଉଭୟେ ନଦୀ ପାର୍ଶ୍ୱବର୍ତ୍ତୀ ଦୃଶ୍ୟରାଜି ଦେଖି ମୁଗ୍ଧ ହୋଇଥିଲେ । ବାଟରେ ଗୋଟିଏ ରାତ୍ରି ସମସ୍ତ ନୌକାଯାତ୍ରୀ ଗୋଟିଏ ବାଲିସ୍ତୂପ ପାଖରେ ରହିଥିଲେ । ବିନିକାଠାରେ ଗଙ୍ଗାଧର ରାଧାନାଥଙ୍କଠାରୁ ବିଦାୟ ନେଇ ବରପାଲି ଫେରିଯାଇଥିଲେ । ଏହାପରେ ସେମାନଙ୍କର ସମ୍ପର୍କ ଘନିଷ୍ଠତର ହୋଇଥିଲା ଓ ରାଧାନାଥଙ୍କ ଦେହାନ୍ତ ପର୍ଯ୍ୟନ୍ତ ସେ ସମ୍ପର୍କ ନିରବଚ୍ଛିନ୍ନ ରହିଥିଲା । ରାଧାନାଥ ଗଙ୍ଗାଧରଙ୍କ ନିକଟକୁ ବିଭିନ୍ନ ସମୟରେ ୫୦ଖଣ୍ଡ ଯାଏଁ ଚିଠି ଲେଖିଥିଲେ । ସେ ପତ୍ରାବଳୀ ରାଧାନାଥଙ୍କର ଗଦ୍ୟ-ସାହିତ୍ୟର ଅନ୍ତର୍ଭୁକ୍ତ । ୧୮୯୫ ମସିହାରେ ଗଙ୍ଗାଧରଙ୍କର 'ଉତ୍କଳ ସାହିତ୍ୟ'ର ସମ୍ପାଦକ ବିଶ୍ୱନାଥ କରଙ୍କ ସହିତ ପରିଚୟ ଏବଂ ସୌହାର୍ଦ୍ଦ୍ୟ ପ୍ରତିଷ୍ଠିତ ହୋଇଥିଲା । ୧୮୯୭ ମସିହାରେ ମାସିକ ପତ୍ରିକା 'ଉତ୍କଳ ସାହିତ୍ୟ'ର ପ୍ରକାଶନ ଆରମ୍ଭ ହୋଇଥିଲା । ସଂପାଦକ ବିଶ୍ୱନାଥ କର ଗଙ୍ଗାଧରଙ୍କୁ ଗୋଟିଏ ବୃହତ୍ କାବ୍ୟ ଲେଖି ପ୍ରକାଶନ ନିମନ୍ତେ 'ଉତ୍କଳ ସାହିତ୍ୟ'କୁ ପଠାଇବାକୁ ଅନୁରୋଧ କରିଥିଲେ ।

୧୮୯୭ ମସିହାରେ ଗଙ୍ଗାଧରଙ୍କର ପତ୍ନୀ-ବିୟୋଗ ହୋଇଥିଲା । ସେ ବର୍ଷ ଗ୍ରୀଷ୍ମଋତୁରେ ବରପାଲିରେ ଭୟଙ୍କର ବିସୂଚିକା ରୋଗ ଆରମ୍ଭ ହୋଇଥିଲା । ଗଙ୍ଗାଧର ତାଙ୍କର ତିନିଗୋଟି ଶିଶୁ ସନ୍ତାନ, ଦୁଇଟି ପୁଅ, ଗୋଟିଏ ଝିଅ ଓ ପତ୍ନୀଙ୍କ ସହିତ ଗାଁ ଛାଡ଼ି ପ୍ରଥମେ ତିନି ମାଇଲ ଦୂରବର୍ତ୍ତୀ ଗୋଟିଏ ଗାଁ ନିକଟସ୍ଥ ଗୋଟିଏ ଆମ୍ବତୋଟାରେ ଏକ ସପ୍ତାହ ରହିଥିଲେ । ସପ୍ତାହକ

ପରେ ନିକଟବର୍ତ୍ତୀ ଗ୍ରାମର ଜଣେ ବ୍ୟକ୍ତିଙ୍କ ଗୃହାଳଘରେ ଆଶ୍ରୟ ନେଇଥିଲେ। ସେଠାରେ କିଛିଦିନ ରହିବା ପରେ ତାଙ୍କ ପତ୍ନୀଙ୍କ ଦେହ ଖରାପ ହେଲା। କବିରାଜୀ ଚିକିତ୍ସାରେ ରୋଗ ଭଲହେଲାନାହିଁ। ଶେଷରେ ସେହି ରୋଗରେ ତାଙ୍କର ମୃତ୍ୟୁ ହେଲା। କିଛିଦିନ ପରେ ବରପାଲିରେ ହଇଜା କମିଯିବାରୁ ଗଙ୍ଗାଧର ପିଲାମାନଙ୍କୁ ନେଇ ବରପାଲି ଫେରିଆସିଥିଲେ।

ପତ୍ନୀଙ୍କର ମୃତ୍ୟୁପରେ ସେ ଅତ୍ୟନ୍ତ ମର୍ମାହତ ହୋଇଥିଲେ। ଏ ଦୁର୍ଦ୍ଦିନରେ ତାଙ୍କର ବହୁ ସାହିତ୍ୟିକ ବନ୍ଧୁ ତାଙ୍କ ପାଖକୁ ସାନ୍ତ୍ୱନା-ପତ୍ର ଲେଖିଥିଲେ। ତାଙ୍କର ସ୍ୱର୍ଗୀତା ସ୍ତ୍ରୀଙ୍କ ନାମ 'ଶାନ୍ତା' ଥିଲା ଏବଂ ସେ ଅତ୍ୟନ୍ତ ଶାନ୍ତ ଓ ସରଳ ଥିଲେ। ପରିବାରର ଅସୁବିଧା ହେତୁ ଗଙ୍ଗାଧର ଦ୍ୱିତୀୟବାର ପତ୍ନୀ ଗ୍ରହଣ କରିଥିଲେ। ଦ୍ୱିତୀୟା ସ୍ତ୍ରୀଙ୍କ ନାମ ଥିଲା 'ଚମ୍ପା'। ସେ ଆଗରୁ ବିଧବା ଥିଲେ ଏବଂ ତାଙ୍କର କୌଣସି ସନ୍ତାନ ନଥିଲା। ଏହାପରେ ଗଙ୍ଗାଧର ବରପାଲି ଜମିଦାରଙ୍କୁ କିଛି ଅର୍ଥ ଦେଇ ଖଣ୍ଡିଏ ରୟତି ଜମି କିଣିଥିଲେ। ସେ ଜମିର ଉତ୍ପନ୍ନି ତାଙ୍କର ଶେଷ ଜୀବନପର୍ଯ୍ୟନ୍ତ ଘରଖର୍ଚ୍ଚରେ ସାହାଯ୍ୟ କରୁଥିଲା।

୧୮୯୯ ମସିହାର ଗ୍ରୀଷ୍ମଋତୁରେ ବରପାଲିରେ ଗୋଟିଏ ବିରାଟ ହରିଯଜ୍ଞ ଅନୁଷ୍ଠିତ ହୋଇଥିଲା। ତାହା ପରେ ଛତିଶଗଡ଼, ବରପାଲି, ବଲାଙ୍ଗୀର, ସୋନପୁର ସମେତ ବିରାଟ ଅଞ୍ଚଳରେ ଘୋର ମରୁଡ଼ି ହୋଇ ଓଡ଼ିଶାର ନ'ଅଙ୍କ ଦୁର୍ଭିକ୍ଷ ପରି ଭୀଷଣ ଦୁର୍ଭିକ୍ଷ ପଡ଼ିଥିଲା। ଦୁର୍ଭିକ୍ଷରେ ସେ ଅଞ୍ଚଳରେ ବହୁଲୋକ ମରିଥିଲେ। ଦୁର୍ଭିକ୍ଷ ପରେ ହଇଜା ବ୍ୟାପିଥିଲା। ବରପାଲିରେ ବହୁ ଲୋକ ମରିଥିଲେ। ସେତେବେଳେ ଗଙ୍ଗାଧର ତାଙ୍କ ପରିବାର ଓ ଅନ୍ୟ ଦୁଇଟି ଅସହାୟ ପରିବାର ସହିତ ନିକଟସ୍ଥ ଗୋଟିଏ ଖମାର ଘରେ ଆଶ୍ରୟ ନେଇଥିଲେ। ସେ ବର୍ଷ ଦୁର୍ଭିକ୍ଷ ଏବଂ ହଇଜାରେ ବରପାଲିରେ ପ୍ରାୟ ପାଞ୍ଚ-ଛଅ ଶହ ଲୋକ ମରିଥିଲେ। ସୌଭାଗ୍ୟବଶତଃ ଗଙ୍ଗାଧରଙ୍କ ସହିତ ଥିବା ପରିବାରମାନଙ୍କରୁ କେହି ମରିନଥିଲେ।

୧୮୯୯ ମସିହାଠାରୁ ସେ ବରପାଲି ଜମିଦାରଙ୍କର ମାଲ-ମୋହରିର ଏବଂ ଜୁଡ଼ିସିଆଲ୍ ମୋହରିର ହୋଇଥିଲେ। ୧୯୦୧ ମସିହାରେ ବରପାଲି ଜମିଦାରଙ୍କ ବିରୁଦ୍ଧରେ ମକଦ୍ଦମା ହେତୁ ସରକାର କିଛି କାଳପାଇଁ ତାଙ୍କଠାରୁ ଜୁଡ଼ିସିଆଲ୍ ମାଜିଷ୍ଟ୍ରେଟ୍ କ୍ଷମତା କାଢ଼ିନେଇଥିଲେ। ୪।୧୦।୧୯୦୧ ତାରିଖରେ ବରପାଲିର ଅନରାରୀ ମାଜିଷ୍ଟ୍ରେଟ୍‌ଙ୍କ କାର୍ଯ୍ୟାଳୟର ସମସ୍ତ କାଗଜପତ୍ର ସହିତ ସମ୍ବଲପୁର ଯିବାକୁ ଗଙ୍ଗାଧରଙ୍କୁ ସରକାର ଆଦେଶ ଦେଇଥିଲେ। ସେତେବେଳେ ସେ କିଛିକାଳ ସମ୍ବଲପୁରର ଦାନୀମଠରେ ରହିଥିଲେ। କିଛିଦିନ ପରେ ମାରବାଡ଼ିପଡ଼ାରେ ଗୋଟିଏ ଛୋଟ ଘର ଭଡ଼ା ନେଇ ସପରିବାର ରହିଲେ। ସମ୍ବଲପୁରଠାରେ ପ୍ରାୟ ଛ'ମାସ ରହିବାପରେ ତାଙ୍କର ବିଜେପୁରକୁ

ବଦଳିହୋଇଥିଲା । ବିଜେପୁରର ଜମିଦାର ସଂକର୍ଷଣ ଗଡ଼ତିଆ ନୂଆକରି ଅନରାରୀ ମାଜିଷ୍ଟ୍ରେଟ୍ କ୍ଷମତା ପାଇଥିଲେ । ଗଙ୍ଗାଧର ବିଜେପୁରଠାରେ ପ୍ରାୟ ଦୁଇବର୍ଷ ରହିଥିଲେ ଏବଂ ସେଠାରେ ଭୁଲିଆପଡ଼ାରେ ଭାଗୀରଥି ମେହେରଙ୍କ ଘରକୁ ଲାଗି ଗୋଟିଏ କ୍ଷୁଦ୍ର ଘରେ ସପରିବାର ବାସକରୁଥିଲେ । ସେହିଠାରେ ସେ ୧୯୦୨-୧୯୦୩ରେ 'କୀଚକବଧ' କାବ୍ୟ ରଚନା କରିଥିଲେ ।

ସେହି ସମୟରେ ତାଙ୍କର ପିତା ଚୈତନ୍ୟ ମେହେରଙ୍କର ପରଲୋକ ହୋଇଗଲା । ତାର ଛ'ମାସ ମଧ୍ୟରେ ତାଙ୍କର ବଡ଼ପୁଅ ଅର୍ଜୁନଙ୍କର ମଧ ମୃତ୍ୟୁ ଘଟିଥିଲା । ଏହି ଦୁଃସମୟରେ, ଯେତେବେଳେ ତାଙ୍କର ମନର ଅବସ୍ଥା ଅତି ଦୁଃଖମୟ ହୋଇଥିଲା, ସେ 'କୀଚକବଧ' କାବ୍ୟ ଲେଖିଥିଲେ ।

ବିଜେପୁରଠାରେ ପ୍ରାୟ ଦୁଇବର୍ଷ ରହିବାପରେ ତାଙ୍କର ସମ୍ବଲପୁରକୁ ବଦଳି ହୋଇଥିଲା ଏବଂ ସେ ମାରବାଡ଼ିପଡ଼ାରେ ପୂର୍ବୋକ୍ତ ଘରେ ସପରିବାର ରହିଥିଲେ । ସେଠାରେ ରହୁଥିବା ସମୟରେ ନୀଳମଣି ବିଦ୍ୟାରତ୍ନଙ୍କ ଅନୁରୋଧରେ ବରପାଲିର ଜମିଦାର ନୃପରାଜ ସିଂହଙ୍କ ଜୀବନୀ ଗଦ୍ୟରେ ଲେଖିଥିଲେ । ତାହା ୧୯୦୫ ମସିହାରେ ପ୍ରକାଶିତ ହୋଇଥିଲା । ସେ ଜୀବନୀ ପ୍ରକାଶିତ ହେବା ପରେ ନୃପରାଜ ସିଂହ ତାଙ୍କୁ ଖଣ୍ଡିଏ ପ୍ରଶସ୍ତ ଜମି ପ୍ରଦାନ କରିବାକୁ ପ୍ରତିଶ୍ରୁତି ଦେଇଥିଲେ ଏବଂ ମାସିକ ୩୦ ଟଙ୍କା ଦରମାରେ ମାଲ-ମୋହରିର କାର୍ଯ୍ୟ କରିବାକୁ ଡାକିଥିଲେ । ତେଣୁ ସେ ଦୁଇବର୍ଷ ଛୁଟି ନେଇ ବରପାଲିରେ ସେ ପଦରେ ଯୋଗଦେଇଥିଲେ ।

ଏଥର ସମ୍ବଲପୁରରେ ଅବସ୍ଥାନ କାଳରେ ସେ ଜିଲ୍ଲା ସ୍କୁଲର ହେଡ୍‌ମାଷ୍ଟର ଦାଶରଥି ପାଣିଗ୍ରାହୀ, ସମ୍ବଲପୁରର ଓକିଲ ନୀଳକଣ୍ଠ ପୂଜାରୀ ପ୍ରଭୃତିଙ୍କ ସମ୍ପର୍କରେ ଆସିଥିଲେ । ଦାଶରଥି ପାଣିଗ୍ରାହୀଙ୍କ ଅନୁରୋଧରେ ସେ ହିନ୍ଦୀ ପାଠ୍ୟପୁସ୍ତକରୁ 'ମାରୀଚବଧ', 'ଶ୍ରୀରାମଚନ୍ଦ୍ରଙ୍କ ବନ ପ୍ରସ୍ଥାନ' ପ୍ରଭୃତି ବହିର ଓଡ଼ିଆ ଅନୁବାଦ କରିଥିଲେ । ସେଗୁଡ଼ିକ ପାଠ୍ୟପୁସ୍ତକ ଅନ୍ତର୍ଭୁକ୍ତ ହୋଇଥିଲା । ନୀଳକଣ୍ଠ ପୂଜାରୀଙ୍କ ଘରେ ବିଶ୍ୱାମିତ୍ର ଓ ସଦ୍ୟପ୍ରସୂତା ଶକୁନ୍ତଳାଙ୍କର ଗୋଟିଏ ଛବି ଦେଖି ସେ ସେଥିପ୍ରତି ଆକୃଷ୍ଟ ହୋଇଥିଲେ । ସେଥିରୁ ପ୍ରେରଣା ପାଇ କାଳିଦାସଙ୍କର 'ଅଭିଜ୍ଞାନ ଶାକୁନ୍ତଳ' ପାଠକରି ତାହାର ପ୍ରଥମ ଅଙ୍କ ଅବଲମ୍ବନରେ ପଦ୍ୟାକାରରେ 'ପ୍ରଣୟାଙ୍କୁର' ରଚନା କରିଥିଲେ । ୧୯୦୪ ମସିହାରେ 'କୀଚକବଧ' ପ୍ରକାଶିତ ହୋଇଥିଲା । ତାହା ଦେଖି ନୀଳକଣ୍ଠବାବୁ ମୁଗ୍ଧ ହୋଇଥିଲେ ଏବଂ ଗଙ୍ଗାଧରଙ୍କ ପାଖରେ କୌଣସି ଅଭିଧାନ ବହି ନଥିବା ଜାଣି ତାଙ୍କୁ ଗୋଟିଏ ବଙ୍ଗଳା ପ୍ରକୃତିବାଦ ଅଭିଧାନ ଉପହାର ଦେଇଥିଲେ । ତାହାକୁ ଗଙ୍ଗାଧର ବହୁକାଳ ବ୍ୟବହାର କରୁଥିଲେ ।

୧୯୦୩ ମସିହା ଡିସେମ୍ବର ୩୦ ତାରିଖରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ କଟକ ଇଦ୍‌ଗା ପଡ଼ିଆରେ ଅନୁଷ୍ଠିତ ହୋଇଥିଲା । ନିମନ୍ତ୍ରଣ ପାଇ ଗଙ୍ଗାଧର ସେଥିରେ ଯୋଗଦେଇଥିଲେ ଏବଂ ରାଧାନାଥ ରାୟଙ୍କ ଅନୁରୋଧରେ ତାଙ୍କ ଘରେ ଅତିଥି ହୋଇ ରହିଥିଲେ । ରାଧାନାଥ ତାଙ୍କୁ ସେଠାରେ ବୈକୁଣ୍ଠନାଥ ଦେ, ଧରାକୋଟ ରାଜା ମଦନମୋହନ ସିଂହ ପ୍ରଭୃତିଙ୍କ ସହ ପରିଚୟ କରାଇଦେଇଥିଲେ ।

୧୯୦୫ ମସିହାରେ ବରପାଲି ଜମିଦାରଙ୍କ କାର୍ଯ୍ୟରେ ଯୋଗଦେଇ ତାଙ୍କୁ ଜମିଦାରୀ କାର୍ଯ୍ୟ ସହ ଜମିଦାରଙ୍କ ଅନେକ ଘରୋଇ କାର୍ଯ୍ୟ ମଧ୍ୟ କରିବାକୁ ପଡୁଥିଲା । ସେଥିପାଇଁ ସେ ବହୁ ପରିଶ୍ରମ କରୁଥିଲେ । ୧୯୦୫ ମସିହାରେ ବାମଣ୍ଡା ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କ ଜ୍ୟେଷ୍ଠପୁତ୍ର ଦିବ୍ୟଶଙ୍କର ଦେବଙ୍କ ବ୍ରତୋପନୟନ ଉପଲକ୍ଷେ ବରପାଲି ଜମିଦାରଙ୍କ ସହିତ ସେ ଦେବଗଡ଼ ଯାଇଥିଲେ । ସେ ସମୟରେ ସେ ବାମଣ୍ଡାର ବନ, ପ୍ରଧାନପାଟ ଜଳପ୍ରପାତ, ବିଜ୍ଞାନାଗାର ପ୍ରଭୃତି ଦେଖିଥିଲେ । ବାମଣ୍ଡାର ରାଜା ତାଙ୍କୁ ବିଶେଷ ସମ୍ମାନ ଦେଇଥିଲେ ।

ବରପାଲିରେ ସେ ନିୟମିତଭାବରେ ଦରମା ପାଇପାରୁନଥିଲେ । ବାକି ଥିବା ବେତନ ସବୁ ତିନିବର୍ଷ ପରେ ପାଇଥିଲେ । ଜମିଦାର ଯେଉଁ ଜମି ଦେବାକୁ କହିଥିଲେ, ତାହା ସେ ଭୁଲିଗଲେ । କାର୍ଯ୍ୟଭାର ଦିନକୁ ଦିନ ଅଧିକ ହେଉଥିଲା । ତେଣୁ ଗଙ୍ଗାଧରଙ୍କ ମନରେ ନୈରାଶ୍ୟଭାବ ଜାଗ୍ରତ ହେଉଥିଲା । ଦୁଇବର୍ଷ ଛୁଟି ପରେ ୧୯୦୭ ମସିହା ମାର୍ଚ୍ଚ ମାସରେ ଗଙ୍ଗାଧର ସମ୍ବଲପୁରଠାରେ ତାଙ୍କ ସରକାରୀ କାର୍ଯ୍ୟରେ ଯୋଗଦେଇଥିଲେ । ବରପାଲିଠାରେ ତାଙ୍କ ବାକୀ ଦରମା ରହିଯାଇଥିଲା ।

ସମ୍ବଲପୁରଠାରେ ତାଙ୍କର ମାସିକ ବେତନ ମାତ୍ର ୧୫ ଟଙ୍କା ଥିଲା । ବରପାଲି ଚାଷଜମିରୁ କିଛିଦ୍ ଉପୃନି ମିଳୁଥିଲା । ସାଧାରଣ ଭାବରେ ସେ ସମୟରେ ସେ ଆର୍ଥିକ ଦୁଃସ୍ଥିତି ମଧ୍ୟରେ ଚଳୁଥିଲେ । ସେତେବେଳେ ସମ୍ବଲପୁର ବ୍ରାଞ୍ଚ ମାଜିଷ୍ଟ୍ରେଟ୍ ଅଫିସ୍ ସହରର ଟାଉନ୍‌ହଲ୍‌ର ମଧ୍ୟଭାଗରେ ହେଉଥିଲା । ସେହି ହଲ୍‌ର ପୂର୍ବଭାଗରେ ମ୍ୟୁନିସିପାଲିଟି ଅଫିସ୍ ଏବଂ ପଶ୍ଚିମ ପାଖରେ ଡିଷ୍ଟ୍ରିକ୍ଟ କାଉନ୍‌ସିଲ୍ ଅଫିସ୍ କାର୍ଯ୍ୟ କରୁଥିଲେ । ଟାଉନ୍‌ହଲ୍ ଚାରିପାଖରେ ସୁନ୍ଦର ଉଦ୍ୟାନ ଥିଲା । ଗଙ୍ଗାଧର ମାରବାଡ଼ିପଡ଼ାରେ ବଡ଼ ସଡ଼କ ସଂଲଗ୍ନ ଗୋଟିଏ ଭଡ଼ାଘରେ ରହୁଥିଲେ । ସେତେବେଳକୁ ନୀଳକଣ୍ଠ ପୂଜାରୀଙ୍କର ମୃତ୍ୟୁ ହୋଇଯାଇଥିଲା ଏବଂ ଦାଶରଥି ପାଣିଗ୍ରାହୀ କଟକ ବଦଳି ହୋଇ ଚାଲିଯାଇଥିଲେ । ସମ୍ବଲପୁରବାସୀ ମଧ୍ୟ ତାଙ୍କ ଗୁଣ ଗ୍ରହଣ କରିପାରିନଥିଲେ । ସେ ସମୟରେ ଗୋଟିଏ ଶିକ୍ଷକ-ସମ୍ମିଳନୀରେ 'କୀଚକବଧ' ବହି ମାତ୍ର ଦଶପଇସା ଦାମ୍‌ରେ

ସାମାନ୍ୟ କେତେ ଖଣ୍ଡ ବିକ୍ରି ହୋଇଥିଲା। ସବୁଦିଗରୁ ଗଙ୍ଗାଧର ନୈରାଶ୍ୟମଗ୍ନ ହୋଇ ରହିଥିଲେ। ୧୯୦୮ ମସିହା ଚୈତ୍ର-ପୂର୍ଣ୍ଣିମାରେ କବିବର ରାଧାନାଥଙ୍କ ତିରୋଧାନ ତାଙ୍କୁ ଅତ୍ୟନ୍ତ ଦୁଃଖ ଦେଇଥିଲା। ରାଧାନାଥଙ୍କର ୧୯୦୯ ମସିହାରେ ପ୍ରଥମ ଶ୍ରାଦ୍ଧ-ଦିବସରେ ସତୀଚଉରାଠାରେ ଲରମ୍ଭାର କଲେଜ-ଛାତ୍ର ବ୍ରଜମୋହନ ପଣ୍ଡା ଉପସ୍ଥିତ ଥିଲେ। ସେଠାରେ ସେ ମଧୁସୂଦନ ଦାସ, ମଧୁସୂଦନ ରାଓ, ନନ୍ଦକିଶୋର ବଳଙ୍କଠାରୁ ଗଙ୍ଗାଧରଙ୍କର ଉଚ୍ଚ ପ୍ରଶଂସା ଶୁଣିଥିଲେ। ସେ ଗଙ୍ଗାଧରଙ୍କ ପାଖକୁ ଖଣ୍ଡେ ଚିଠି ଲେଖିଥିଲେ। ସେଥିରେ ସେ ଗଙ୍ଗାଧରଙ୍କର ଅପ୍ରକାଶିତ ବହିସବୁ ପ୍ରକାଶ କରିବାକୁ ପ୍ରତିଶ୍ରୁତି ଦେଇ ନୂତନ ବହି ଲେଖିବାକୁ ତାଙ୍କୁ ଉତ୍ସାହ ଦେଇଥିଲେ। ସେହି ଦିନଠାରୁ ବ୍ରଜମୋହନ ପଣ୍ଡାଙ୍କ ସହିତ ତାଙ୍କର ସଦ୍‌ଭାବ ହୋଇଥିଲା। ତାଙ୍କଠାରୁ ଉତ୍ସାହ ପାଇ ଗଙ୍ଗାଧର 'ଚନ୍ଦ୍ରରଜନୀ', 'ବସନ୍ତବାସର' ଏବଂ 'ସୋମନାଥ ବିଜୟ' ପ୍ରଭୃତି କବିତା ଲେଖିଥିଲେ।

୧୯୧୦ ମସିହାରେ ତାଙ୍କର ଦ୍ୱିତୀୟ ପୁତ୍ର ବିଶେଷ ଅସୁସ୍ଥ ଥିବାରୁ ସେ ଅତି ଉଦ୍‌ବିଗ୍ନ ଥିଲେ। ବହୁ ଯତ୍ନ ଏବଂ ଚିକିତ୍ସା ପରେ ୧୯୧୧ ମସିହାରେ ସେ ଆରୋଗ୍ୟ ହୋଇଥିଲେ। ସେହି ବର୍ଷ ତାଙ୍କର ଦରମା ମାସିକ ୩୦ଟଙ୍କାକୁ ବଢ଼ିଥିଲା ଏବଂ ବରପାଲିରେ ବାକି ଥିବା ତାଙ୍କ ଦରମା ପ୍ରାୟ ୫୦୦ ଟଙ୍କା ସେ ପାଇଥିଲେ। ସେଥିରେ ସେ ସମ୍ବଲପୁର ସହରର ସାନ ସଡ଼କରେ ଗୋଟିଏ ଛୋଟ ପୁରୁଣା ଘର କିଣିଥିଲେ। ସେହି ଘରେ ସେ ଅଳ୍ପ ସମୟ ରହିଥିଲେ; ମାତ୍ର ଘର ପଡ଼ୋଶୀ ତାଙ୍କୁ ଅସୁବିଧାରେ ପକାଇବାରୁ ସେହି ଘରକୁ ସେ ବିକ୍ରିକରିଦେଇଥିଲେ। ଏଥର ସେ ସମ୍ବଲପୁରଠାରେ ପାଞ୍ଚବର୍ଷ ରହିଥିଲେ। ସେ ସମୟରେ ପଲ୍ଲୀକବି ନନ୍ଦକିଶୋର ବଳ ସମ୍ବଲପୁର ଜିଲ୍ଲାସ୍କୁଲକୁ ହେଡ୍‌ମାଷ୍ଟରରୂପେ ବଦଳିହୋଇ ଆସିଥିଲେ। ତାଙ୍କର ସଙ୍ଗସୁଖ ଲାଭକରି ଗଙ୍ଗାଧର ଆନନ୍ଦିତ ହୋଇଥିଲେ। ଏହି ପାଞ୍ଚବର୍ଷ ମଧ୍ୟରେ ସେ 'ବସନ୍ତବାସରେ', 'ସୋମନାଥ ବିଜୟ', 'ବେଦବ୍ୟାସ', 'ପ୍ରଧାନପାଟ' ପ୍ରଭୃତି କବିତା ଏବଂ 'ଅଯୋଧ୍ୟାଦୃଶ୍ୟ', 'ତପସ୍ୱିନୀ' ଏବଂ 'ପଦ୍ମିନୀ' କାବ୍ୟର କିୟଦଂଶ ଲେଖିଥିଲେ। ସେହି ସମୟରେ ସେ ବ୍ରଜମୋହନ ପଣ୍ଡାଙ୍କ ସହ ବେଦବ୍ୟାସ ଦର୍ଶନ କରିବାକୁ ଯାଇଥିଲେ। ତାହାପରେ ସେ 'ବେଦବ୍ୟାସ' କବିତା ଲେଖିଥିଲେ। ୧୯୦୯ ମସିହାଠାରୁ ୧୯୧୯ ମସିହା ପର୍ଯ୍ୟନ୍ତ ବ୍ରଜମୋହନ ପଣ୍ଡାଙ୍କ ସହିତ ତାଙ୍କର ସମ୍ପର୍କ ଘନିଷ୍ଠ ଥିଲା। ସେ ସମୟରେ ମଧୁସୂଦନ ରାଓଙ୍କ ଜାମାତା ବିଜୟଚନ୍ଦ୍ର ମଜୁମ୍‌ଦାର୍ ସମ୍ବଲପୁରଠାରେ ଓକିଲ ଥିଲେ। ସେ ମଧ୍ୟ ଜଣେ କବି ଥିଲେ। ତାଙ୍କ ସହିତ ଗଙ୍ଗାଧରଙ୍କର ଆଳାପ ହୋଇଥିଲା। ଅନ୍ୟମାନଙ୍କ ମଧ୍ୟରେ ହିନ୍ଦୀ କବି ଲୋଚନ ପାଣ୍ଡେ, କଲେଜ-ଛାତ୍ର ଦୟାନିଧି ମିଶ୍ରଙ୍କ ସହିତ ମଧ୍ୟ ତାଙ୍କର

ଆଳାପ ହୋଇଥିଲା । ଦୟାନିଧିବାବୁ କିଛିଦିନ 'ମୁକୁର' ପତ୍ରିକାରେ ସହସଂପାଦକ ଥିଲେ । ସେ ଗଙ୍ଗାଧରଙ୍କୁ କବିତା ଲେଖିବାକୁ ସର୍ବଦା ପ୍ରେରଣା ଦେଉଥିଲେ ।

୧୯୧୩ ମସିହା ମାର୍ଚ୍ଚ ମାସରେ ତାଙ୍କର ବିଜେପୁରକୁ ପୁଣି ବଦଳି ହୋଇଥିଲା । ବିଜେପୁରର ଜମିଦାର ସଂକର୍ଷଣ ଗଡ଼ତିଆ ତାଙ୍କର ବିଜେପୁର ପ୍ରତ୍ୟାବର୍ତ୍ତନରେ ଖୁସିହୋଇଥିଲେ । ସେ ଜଣେ ସଦ୍‌ଗୁଣସମ୍ପନ୍ନ ଓ ଲୋକପ୍ରିୟ ବ୍ୟକ୍ତି ଥିଲେ । ୧୯୧୩ ମସିହାରେ ଭାରତର ବଡ଼ଲାଟ୍ ଲର୍ଡ଼ ହାର୍ଡିଞ୍ଜ କଟକ ଆସିଥିଲେ । ବିଜେପୁରର ଜମିଦାର କଟକରେ ବଡ଼ଲାଟ୍‌ଙ୍କ ଦରବାରରେ ଯୋଗଦେବାକୁ ଯାଇଥିଲେ । ତାଙ୍କ ସହିତ ଗଙ୍ଗାଧର କଟକ ଯାଇଥିଲେ । ବାଟରେ ଟ୍ରେନ୍‌ରେ ବାମଣ୍ଡା ରାଜାଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିଲା । କଟକରେ ମଧ୍ୟ ସେ ନୀଳମଣି ବିଦ୍ୟାରତ୍ନଙ୍କୁ ଭେଟିଥିଲେ । ୧୯୧୩ ମସିହାରେ ତାଙ୍କର ଦରମା ମାସକୁ ୩୦ ଟଙ୍କାରୁ ୩୫ ଟଙ୍କାକୁ ବୃଦ୍ଧିପାଇଥିଲା । ବିଜେପୁରଠାରେ ସେଥର ସେ ଦେଢ଼ବର୍ଷ ରହିଥିଲେ । ସେ ରହଣି ଶାନ୍ତିପ୍ରଦ ଓ ସୁଖକର ଥିଲା । ସେଠାରେ ସେ 'ତପସ୍ୱିନୀ' ଓ 'ଉତ୍କଳଲକ୍ଷ୍ମୀ' କାବ୍ୟ ଶେଷକରିଥିଲେ । ୧୯୧୪ ମସିହା ସେପ୍ଟେମ୍ବର ମାସରେ ତାଙ୍କର ପଦ୍ମପୁରକୁ ବଦଳିହେଲା । ବିଜେପୁର ଜମିଦାର ସେ ବଦଳି ବନ୍ଦକରିବାକୁ ଚେଷ୍ଟାକରିଥିଲେ; ମାତ୍ର ସେଥିରେ ସଫଳ ହୋଇନଥିଲେ ।

ଚାକିରି-ଜୀବନର ଶେଷ ତିନିବର୍ଷ ଗଙ୍ଗାଧର ପଦ୍ମପୁରଠାରେ କଟାଇଥିଲେ । ପଦ୍ମପୁର ବୋଡ଼ାସମ୍ବର ଜମିଦାରିର ରାଜଧାନୀ ଥିଲା ଏବଂ ପଦ୍ମପୁର ରାଜାଙ୍କ ବିଭବ ଓଡ଼ିଶାର ଅନ୍ୟ ଗଡ଼ଜାତ ରାଜାମାନଙ୍କ ବିଭବରୁ ନ୍ୟୂନ ନଥିଲା । ହାତୀ, ଘୋଡ଼ା, ମଟର ପ୍ରଭୃତି ଯାନବାହନ, ଦାସଦାସୀ, କର୍ମଚାରୀ ପରିଜନ କୌଣସି ବିଷୟରେ ତାଙ୍କର ଅଭାବ ନଥିଲା । ପଦ୍ମପୁର ଗଡ଼ ଚାରିପାଖରେ ବନ, ପାହାଡ଼, ପର୍ବତ ପ୍ରଭୃତିର ପ୍ରାକୃତିକ ଦୃଶ୍ୟ ଅତ୍ୟନ୍ତ ରମଣୀୟ ଥିଲା । ସେତେବେଳେ ସେଠାରେ ସବୁପ୍ରକାର ପଦାର୍ଥର ମୂଲ୍ୟ ଖୁବ୍ ଶସ୍ତା ଥିଲା । ଟଙ୍କାରେ ସତର ସେର ଚାଉଳ ମିଳୁଥିଲା । ଧାନ, ଚାଉଳ, ମୁଗ, କପା, ରାଶି ପ୍ରଭୃତି ବିଭିନ୍ନ କୃଷିଜାତ ପଦାର୍ଥରେ ବୋଡ଼ାସମ୍ବର ସମୃଦ୍ଧିଶାଳୀ ଅଞ୍ଚଳ ଥିଲା । ଦୁଧ, ଦହି, ଘିଅ ପ୍ରଭୃତି ମଧ୍ୟ ପର୍ଯ୍ୟାପ୍ତ ପରିମାଣରେ ମିଳୁଥିଲା । ମାସିକ ପାଞ୍ଚ-ଛଅ ଟଙ୍କା ବେତନରେ ଚାକିରି କରୁଥିବା ବ୍ୟକ୍ତିମାନେ ମଧ୍ୟ ସ୍ୱଚ୍ଛଳରେ ଚଳିପାରୁଥିଲେ । ସେଠାରେ ସେ 'ପ୍ରଣୟ-ବଲ୍ଲରୀ' କାବ୍ୟ ସମ୍ପୂର୍ଣ୍ଣ କରିଥିଲେ ଏବଂ 'ପଦ୍ମିନୀ' କାବ୍ୟ ରଚନା ଆରମ୍ଭ କରିଥିଲେ । ପଦ୍ମପୁରର ସେ ସମୟର ରାଜା ରାୟବାହାଦୁର ଲାଲ ରାଜେନ୍ଦ୍ର ସିଂହ ବରିହା ଜଣେ ଉଦାରଭାବାପନ୍ନ ବ୍ୟକ୍ତି ଥିଲେ । ସେ ଗଙ୍ଗାଧରଙ୍କର ସାଧୁତା ଓ ସରଳତାର ପରିଚୟ ପାଇ ତାଙ୍କ ପ୍ରତି ବିଶେଷ ସହୃଦୟତା ପ୍ରକାଶ କରୁଥିଲେ । ରାଜାଙ୍କ

ଦେବାନ୍ ରାୟସାହେବ ଭୁବନେଶ୍ୱର ବହିଦାର ମଧ୍ୟ ଜଣେ ବିଚକ୍ଷଣ ବ୍ୟକ୍ତି ଥିଲେ। ସେ ଗଙ୍ଗାଧରଙ୍କୁ ବିଶେଷ ଆଦର କରୁଥିଲେ। 'ପ୍ରଣୟ-ବଲ୍ଲରୀ' ପ୍ରଥମେ ବହିଦାରଙ୍କ 'ହିତୈଷିଣୀ'ରେ ପ୍ରକାଶିତ ହୋଇଥିଲା। ରାଘବ ମିଶ୍ର ପ୍ରଭୃତି ସ୍ଥାନୀୟ କର୍ମଚାରୀମାନେ ତାଙ୍କ ସହିତ ସାହିତ୍ୟ ଆଲୋଚନା କରୁଥିଲେ। ରାଘବ ମିଶ୍ର ପରେ ବରପାଲି ମାଇନର୍ ସ୍କୁଲର ହେଡ୍‌ପଣ୍ଡିତ ହୋଇଥିଲେ ଏବଂ ଗଙ୍ଗାଧର ସେ ସ୍କୁଲର ସେକ୍ରେଟାରୀ ହୋଇଥିଲେ। ରାଘବ ମିଶ୍ର ଗଙ୍ଗାଧରଙ୍କର ଜଣେ ଗୁଣମୁଗ୍ଧ ବ୍ୟକ୍ତି ଥିଲେ। ସେ ପ୍ରଥମେ ଗଙ୍ଗାଧରଙ୍କ ଜୀବନୀ 'ମେହେର କବି' ନାମରେ ରଚନା କରି ଗଙ୍ଗାଧରଙ୍କ ମୃତ୍ୟୁପରେ ୧୯୨୫ ମସିହାରେ ପ୍ରକାଶ କରିଥିଲେ।

ଗଙ୍ଗାଧର ପଦ୍ମପୁରରେ ଥିବା ସମୟରେ ପ୍ରଚାରକ ଅନନ୍ତ ମିଶ୍ର ଦେଶମିଶ୍ରଣ କାର୍ଯ୍ୟରେ ସେଠାକୁ ଯାଇଥିଲେ ଏବଂ ଗଙ୍ଗାଧରଙ୍କ ସହିତ ଆଳାପ କରିଥିଲେ। ସେ ଗଙ୍ଗାଧରଙ୍କୁ ନିମ୍ନସ୍ତରର ଏକ ଚାକିରି କରୁଥିବା ଦେଖି ତାଙ୍କୁ ପୂର୍ଣ୍ଣମାତ୍ରାରେ ସାହିତ୍ୟସେବା କରିବାର ସୁଯୋଗ ଯୋଗାଇଦେବା ପାଇଁ ଉତ୍କଳର ରାଜା ମହାରାଜାମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ। ଫଳରେ ବାମଣ୍ଡାର ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ତାଙ୍କୁ ବାମଣ୍ଡାରେ ରଖିବାକୁ ଆଗ୍ରହ ପ୍ରକାଶ କରିଥିଲେ। ଗଙ୍ଗାଧର ବୋଡ଼ାସମ୍ବର ରାଜାଙ୍କ ସହିତ ଭ୍ରମଣ କରି ରାଜ୍ୟର ରମଣୀୟ ସ୍ଥାନମାନ ଦେଖିଥିଲେ। ୧୯୧୫ ମସିହାରେ ସେ ନୃସିଂହନାଥ ମନ୍ଦିର ଏବଂ ସେଠାରେ ଥିବା ଝରଣା ଓ ଗୟଳ ପ୍ରଭୃତି ଦେଖିଥିଲେ। ତାହାପରେ ସେ 'ମୃଗୟାଦର୍ଶନ' ବୋଲି ଗୋଟିଏ କବିତା ଲେଖିଥିଲେ।

୧୯୧୫ ମସିହା ଡିସେମ୍ବର ମାସରେ ସମ୍ବଲପୁରଠାରେ ଉତ୍କଳ ସମ୍ମିଳନୀର ବାର୍ଷିକ ଅଧିବେଶନ ହୋଇଥିଲା। ସେ ସମ୍ମିଳନୀରେ ଫକିରମୋହନ, ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ ମିଶ୍ର, ବ୍ରଜସୁନ୍ଦର ଦାସ, ଶଶିଭୂଷଣ ରଥ ପ୍ରଭୃତି ନେତାମାନେ ଯୋଗଦେଇଥିଲେ। ଗଙ୍ଗାଧର ସମ୍ମିଳନୀରେ ଯୋଗଦେବା ସମୟରେ ରାମନାରାୟଣ ମିଶ୍ରଙ୍କ ଘରେ ରହିଥିଲେ। ସେଠାରେ ଫକୀରମୋହନଙ୍କ ସହିତ ତାଙ୍କର ମିଳନ ହୋଇଥିଲା। ବୁଢ଼ାରଜାଠାରେ ସମ୍ମିଳନୀ ମଣ୍ଡପ ନିର୍ମିତ ହୋଇଥିଲା। ସେହି ସମୟରେ ଗଙ୍ଗାଧରଙ୍କର 'ପ୍ରଣୟବଲ୍ଲରୀ' ଓ 'ତପସ୍ୱିନୀ' କାବ୍ୟ ଦୁଇଟି ମୁଦ୍ରିତ ହୋଇ ଆସିଥିଲା। ଗଙ୍ଗାଧର ତାହା ସାହିତ୍ୟିକ ଓ ସମ୍ମିଳନୀର ନେତାମାନଙ୍କ ମଧ୍ୟରେ ବଣ୍ଟନ କରିଥିଲେ। ତାହାପରେ ବାମଣ୍ଡାର ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ତାଙ୍କ କନ୍ୟାଙ୍କ ବିବାହ ଉତ୍ସବରେ ଯୋଗଦେବାକୁ ଗଙ୍ଗାଧରଙ୍କୁ ନିମନ୍ତ୍ରଣ କରିଥିଲେ ଏବଂ ବାମଣ୍ଡାରେ ରହିବାକୁ ଅନୁରୋଧ କରିଥିଲେ। ମାତ୍ର ସେ ସେଠାକୁ ଯାଇପାରିନଥିଲେ। ତାହାର ଅଳ୍ପକାଳ ପରେ ଆକସ୍ମିକଭାବରେ ରାଜାଙ୍କର

ଦେହାନ୍ତ ହୋଇଥିଲା ।

୧୯୧୬ ମସିହାରେ ପାଟଣା ଓ ବୋଡ଼ାସମ୍ବର ଦୁଇରାଜ୍ୟ ମଧ୍ୟରେ ଗୋଟିଏ ସୀମା ବିବାଦ ଘଟିଥିଲା । ସମ୍ବଲପୁର ଓ ବରଗଡ଼ର ଉଚ୍ଚପଦସ୍ଥ ଅଫିସର, ପଦ୍ମପୁରର ଜମିଦାର ଓ ଦେବାନ୍ ପ୍ରଭୃତି ବିବାଦୀୟ ସ୍ଥାନରେ ସମବେତ ହୋଇଥିଲେ । ଗଙ୍ଗାଧର ସେ ଆଲୋଚନା ସ୍ଥଳରେ ଉପସ୍ଥିତ ଥିଲେ । ସେ ସ୍ଥାନର ନାମ ବଡ଼ିପଥର ଓ ଅମରାଖୋଳ । ପ୍ରବଳ ଶୀତଦିନେ ସେ ପାହାଡ଼ ଓ ଜଙ୍ଗଲପୂର୍ଣ୍ଣ ସ୍ଥାନରେ ସେମାନେ ପ୍ରାୟ ଏକ ସପ୍ତାହ ରହିଥିଲେ । ପାଟଣା ରାଜ୍ୟରୁ ମଧ୍ୟ ଉଚ୍ଚପଦସ୍ଥ ଅଫିସରମାନେ ସେଠାକୁ ଆସିଥିଲେ । ଆଲୋଚନାରେ ସ୍ଥିର ହେଲା ଯେ ଗିରିଚୂଡ଼ାରୁ ବର୍ଷାପାଣି ଯେଉଁ ସୀମା ଆଡ଼େ ପଡ଼ିବ, ତାହା ସେହି ରାଜ୍ୟର ଶେଷ ସୀମା ହେବ । ସେଠାର ଦୂଷିତ ପାଣି ବ୍ୟବହାର କରି ସେଠାରେ ସମବେତ ହୋଇଥିବା ଲୋକମାନଙ୍କ ମଧ୍ୟରୁ ବହୁଲୋକ ଜ୍ୱରରେ ପଡ଼ିଲେ । କିଛିଦିନ ପରେ ବରଗଡ଼ର ଏସ୍.ଡି.ଓ ସେ ରୋଗରେ ମରିଗଲେ । ଗଙ୍ଗାଧରଙ୍କ ସମେତ ଅନ୍ୟ ଲୋକମାନେ ଆରୋଗ୍ୟ ଲାଭ କଲେ, ମାତ୍ର ସେ ଜ୍ୱର ଗଙ୍ଗାଧରଙ୍କୁ ମଝିରେ ମଝିରେ ଧରୁଥିଲା ।

୧୯୧୬ ମସିହାର ଶେଷ ସପ୍ତାହରେ ଉତ୍କଳ ସମ୍ମିଳନୀ ବାଲେଶ୍ୱରରେ ହୋଇଥିଲା । ଗଙ୍ଗାଧର ସେଥିରେ ଯୋଗଦେବାକୁ ଯାଇ ଫକୀରମୋହନଙ୍କ ଅତିଥି ହୋଇଥିଲେ । ଘରକୁ ଫେରିବା ପରେ ସେ ସ୍ୱର୍ଗୀୟା କୃଷ୍ଣକୁମାରୀଙ୍କ ଉପରେ ଗୋଟିଏ କବିତା ଲେଖିଥିଲେ । ଶାନ୍ତି-କାନନ ତାଙ୍କୁ ଗୋଟିଏ ଆଶ୍ରମ ପରି ମନେହୋଇଥିଲା । ସମ୍ମିଳନୀରେ ଗଙ୍ଗାଧର ଅନ୍ୟ ବହୁ ସାହିତ୍ୟିକଙ୍କୁ ଭେଟିଥିଲେ । ୧୯୧୮ ମସିହା ଡିସେମ୍ବର ମାସରେ ଉତ୍କଳ ସମ୍ମିଳନୀ କଟକରେ ହୋଇଥିଲା । ଗଙ୍ଗାଧର ସେତେବେଳେ ଚାକିରିରୁ ଅବସର ଗ୍ରହଣ କରି କିଛିଦିନ ପାଇଁ ବରପାଲି ଆସିଥିଲେ ଓ ସେଠାରୁ ଯାଇ ସମ୍ମିଳନୀରେ ଯୋଗଦେଇଥିଲେ । ସେଥର ସେ ଉତ୍କଳସାହିତ୍ୟ ପ୍ରେସ୍‌ରେ ରହିଥିଲେ । ତାଙ୍କର ସମ୍ବର୍ଦ୍ଧନା ପାଇଁ ରେଭେନ୍‌ସା କଲେଜର ଛାତ୍ରମାନେ ଗୋଟିଏ ସଭାର ଆୟୋଜନ କରିଥିଲେ । ମଧୁସୂଦନ ଦାସ ସେ ସଭାରେ ସଭାପତି ହୋଇଥିଲେ । ତାହା ପୂର୍ବରୁ ମଧୁସୂଦନ ଗଙ୍ଗାଧରଙ୍କ ପ୍ରତିଭାର ପରିଚୟ ପାଇଥିଲେ ଏବଂ ତାଙ୍କ ରଚିତ କୀଚକବଧର ପ୍ରକାଶନ ଭାର ଗ୍ରହଣ କରିଥିଲେ । ସଭା ରିପୋର୍ଟରୁ ଜଣାଯାଏ ଯେ, ସେ ସଭାରେ ଗଙ୍ଗାଧର ତାଙ୍କୁ ଦିଆଯାଇଥିବା ଫୁଲମାଳକୁ ଧରି କହିଥିଲେ, "ଏହା ମୋର ଅନ୍ତିମଜୀବନର ସହଯାତ୍ରୀ ହୋଇ ରହିଲା ।"

## ସରକାରୀ ଚାକିରିରୁ ଅବସରଗ୍ରହଣ ଓ ଅନ୍ତିମ ଜୀବନ–

୧୯୧୭ ମସିହାରେ ଗଙ୍ଗାଧର ସରକାରୀ ଚାକିରିରୁ ଅବସର ଗ୍ରହଣ କରିଥିଲେ। ତାଙ୍କ ପେନ୍‌ସନ୍ ପରିମାଣ ମାତ୍ର ନଅଟଙ୍କା ପାଞ୍ଚ ଅଣାରେ ସ୍ଥିର ହୋଇଥିଲା; ପରେ ତାହା ବୃଦ୍ଧିପାଇ ଏଗାରଟଙ୍କା ପାଞ୍ଚଅଣା ହୋଇଥିଲା। ସେ ପ୍ରଥମେ ବରପାଲିରେ ମାସିକ ମାତ୍ର ସାତଟଙ୍କା ଦରମାରେ ଚାକିରି ଆରମ୍ଭ କରିଥିଲେ; ତାହା କ୍ରମେ ବଢ଼ି ୮-୧୦-୧୫ ଟଙ୍କା ହୋଇଥିଲା। ଜୁଡ଼ିସିଆଲ୍ ମୋହରିର କାର୍ଯ୍ୟରେ ତାଙ୍କର ପ୍ରଥମ ଦରମା ମାସକୁ ୧୫ଟଙ୍କା ଥିଲା; ତାହା କ୍ରମେ ବଢ଼ି ଶେଷରେ ୩୫ ଟଙ୍କା ହୋଇଥିଲା। ଅବସର ଗ୍ରହଣ କଲାବେଳେ ତାଙ୍କର ମାସିକ ଦରମା ୩୫ ଟଙ୍କା ଥିଲା।

ତାଙ୍କର ଅବସର ଗ୍ରହଣ ସମୟରେ ପଦ୍ମପୁରର ଜମିଦାର ରାଜେନ୍ଦ୍ର ସିଂହ ବରିହା ତାଙ୍କ ନାମରେ ନୂଆକରି 'କବିବରପୁର' ନାମରେ ଏକ ଗ୍ରାମ ସ୍ଥାପନ କରିଥିଲେ ଏବଂ ଗଙ୍ଗାଧରଙ୍କୁ 'ତେଣ୍ଡାପଦର' ନାମରେ ଗୋଟିଏ ଗ୍ରାମ ପୁରସ୍କାର ସ୍ୱରୂପ ଦେଇଥିଲେ। ଏହା ବ୍ୟତୀତ ମାସିକ ୨୦ ଟଙ୍କା ଦରମାରେ ଅଡ଼ିଟର୍ ଚାକିରିଟିଏ ଦେଇଥିଲେ। ଗଙ୍ଗାଧର ୧୮୮୫ ମସିହାରୁ ୧୯୧୭ ମସିହା ପର୍ଯ୍ୟନ୍ତ ପ୍ରାୟ ୩୨ ବର୍ଷ ସମୟ ମଧ୍ୟରେ ଚାରିଗୋଟି ସ୍ଥାନରେ କାମ କରିଥିଲେ। ବରପାଲି ତାଙ୍କର ଜନ୍ମସ୍ଥାନ ଏବଂ ସେଠାରେ ତାଙ୍କର ପୈତୃକ ଗୃହ ଥିଲା। ସେଠାରେ ସେ ପ୍ରାୟ ଅଠର ବର୍ଷକାଳ ଚାକିରି କରିଥିଲେ। ପ୍ରଥମେ ଅମିନ ହୋଇ ଚାକିରି ଆରମ୍ଭ କରିଥିଲେ, ପରେ ମାଲ-ମୋହରିର ଓ ଜୁଡ଼ିସିଆଲ୍ ମୋହରିର ହୋଇଥିଲେ। ସମ୍ବଲପୁରଠାରେ ତିନିଥରରେ ସେ ପ୍ରାୟ ଆଠବର୍ଷ କାଳ ଜୁଡ଼ିସିଆଲ୍ ମୋହରିର ଭାବରେ କାମ କରିଥିଲେ। ବିଜେପୁରଠାରେ ଦୁଇଥରରେ ପ୍ରାୟ ସାଢ଼େ ତିନିବର୍ଷ କାର୍ଯ୍ୟ କରିଥିଲେ। ସେଠାରେ ତାଙ୍କର କୌଣସି ସମ୍ପତ୍ତି ନଥିଲା। ଶେଷରେ ପଦ୍ମପୁରଠାରେ ପ୍ରାୟ ତିନିବର୍ଷ ଜୁଡ଼ିସିଆଲ୍ ମୋହରିର ରୂପେ କାର୍ଯ୍ୟ କରିଥିଲେ। ସବୁଦିଗରୁ ଦେଖିଲେ, ଶେଷଜୀବନ କଟାଇବାକୁ ବରପାଲି ଫେରିଆସିବାର ତାଙ୍କର ଉଚିତ ଥିଲା; ମାତ୍ର ପଦ୍ମପୁର ଜମିଦାର ଉପରୋକ୍ତ ସୁବିଧାମାନ ଦେବାରୁ ଅବସର ଗ୍ରହଣ କରିବା ପରେ ସେ ପଦ୍ମପୁରଠାରେ ରହିବାକୁ ସ୍ଥିରକରିଥିଲେ। ଜମିଦାର ଦେଇଥିବା ତେଣ୍ଡାପଦର ଗ୍ରାମରେ ଚାଷବାସ ଆରମ୍ଭ କଲେ। ବହୁଖର୍ଚ୍ଚ କରି ପଡ଼ିଆ ଜମିକୁ ଉଠିଆ କରିବାକୁ ଚେଷ୍ଟା କଲେ। ସେ କାମରେ ତାଙ୍କୁ ତାଙ୍କର ବଡ଼ଭାଇଁ ସାହାଯ୍ୟ କରୁଥିଲେ। ମାତ୍ର ୧୯୧୮ରୁ ୧୯୨୦ ମସିହା ପର୍ଯ୍ୟନ୍ତ ଦୁଇବର୍ଷ କ୍ରମାଗତ ମରୁଡ଼ି ହେବାରୁ ଫସଲ ନଷ୍ଟ ହୋଇଗଲା ଏବଂ ତାଙ୍କର

ବହୁ କ୍ଷତି ହେଲା । ତାହା ବ୍ୟତୀତ ଅଧିକତର ଦରମାରେ ପରିବାର ଚଳାଇବାର ଅସୁବିଧା ହେତୁ ଏବଂ ସେଠାରେ ତାଙ୍କର ବାସୋପଯୋଗୀ ଘର ନଥିବାରୁ ସେ ବରପାଲି ଫେରିଆସିବାକୁ ଇଚ୍ଛା କରିଥିଲେ । ଏହି ସମୟରେ ବରପାଲିର ଜମିଦାର ନୃପରାଜ ସିଂହଙ୍କ ଦେହାନ୍ତ ହେଲା । ତାଙ୍କର ପୁତ୍ର ମହେନ୍ଦ୍ର ସିଂହଙ୍କର ଆଗରୁ ମୃତ୍ୟୁ ହୋଇଥିଲା । ତାଙ୍କର ନାତି ସୂର୍ଯ୍ୟୋଦୟ ସିଂହ ଗଙ୍ଗାଧରଙ୍କୁ ବରପାଲି ଫେରି ତାଙ୍କର ହିତାକାଂକ୍ଷୀ ଅଭିଭାବକରୂପେ କାର୍ଯ୍ୟ କରିବାକୁ ଅନୁରୋଧ କଲେ । ତେଣୁ ଗଙ୍ଗାଧର ୧୯୨୦ ମସିହା ମାଘ ପୂର୍ଣ୍ଣିମା ଦିନ ବରପାଲି ଫେରିଆସିଲେ ଏବଂ ଜମିଦାରିର ମାଲ-ମୋହରିରରୂପେ କାର୍ଯ୍ୟ କଲେ । ତାଙ୍କର ଆଶା ଥିଲା ଶେଷ ଜୀବନରେ ତାଙ୍କର ଜନ୍ମସ୍ଥାନ ବରପାଲିରେ ଶାନ୍ତିରେ ରହିବେ ଏବଂ ସାହିତ୍ୟସେବାରେ ସମୟ କଟାଇବେ । ମାତ୍ର ସେ ଆଶା ତାଙ୍କର ବ୍ୟର୍ଥ ହୋଇଥିଲା ।

ବରପାଲିରେ ସେ ଜଣେ ବୟସ୍କ ଓ ସମ୍ମାନନୀୟ ବ୍ୟକ୍ତି ହୋଇଥିବାରୁ ଗ୍ରାମର ଲୋକମାନେ ବହୁ ସାଧାରଣ କାର୍ଯ୍ୟରେ ତାଙ୍କର ସାହାଯ୍ୟ ଓ ପରାମର୍ଶ ନେବାକୁ ଆସୁଥିଲେ । ଗ୍ରାମରେ ମାଇନର୍ ସ୍କୁଲ, ବାଳିକା ସ୍କୁଲ ସାନିଟେସନ୍ ପ୍ରଭୃତି ତାଙ୍କୁ ପରିଚାଳନା କରିବାକୁ ପଡ଼ିଲା । ଗ୍ରାମରେ ବିଭିନ୍ନ ଜାତିଆଣ କାମରେ ଲୋକମାନେ ତାଙ୍କର ସାହାଯ୍ୟ ନେବାକୁ ଆସିଲେ । ଏଣେ ବରପାଲିର ନୂତନ ଯୁବକ ଜମିଦାର ପାର୍ଶ୍ୱଚରଙ୍କଦ୍ୱାରା ପରିଚାଳିତ ହୋଇ ବିପଥଗାମୀ ହେଲେ । ଜମିଦାରଙ୍କ ଭଉଣୀଙ୍କ ବିବାହ ଉପଲକ୍ଷେ ଗଙ୍ଗାଧର ବାରାଣସୀ ଯାଇଥିଲେ । ସେ ସମୟରେ ସେ ବାରାଣସୀ ଓ ଆଲ୍ଲାହାବାଦ ସହର ବୁଲି ଦେଖିଥିଲେ । ତାହାପରେ ଜମିଦାରଙ୍କ ପରିବାରରେ ବିଭିନ୍ନ ବିବାଦ ଉପୁଜିଲା । ଜମିଦାରଙ୍କ ସ୍ୱେଚ୍ଛାଚାରରେ ଅତିଷ୍ଠ ହୋଇ ତାଙ୍କର ପିତାମହୀ ଓ ପିଉସୀ ଘର ଛାଡ଼ି ଅନ୍ୟତ୍ର ଚାଲିଗଲେ । ଜମିଦାରଙ୍କର ପାର୍ଶ୍ୱଚରମାନେ ନିଜ ସ୍ୱାର୍ଥରେ ଗାଁଲୋକଙ୍କ ଉପରେ ନାନା ଅତ୍ୟାଚାର କଲେ । ଗାଁଲୋକମାନଙ୍କ ମଧ୍ୟରେ ଦଳାଦଳି ହେଲା । ଦଳେ ଗାଁଲୋକ ଗଙ୍ଗାଧରଙ୍କ ସାହାଯ୍ୟ ଲୋଡ଼ିଲେ; ଅନ୍ୟ ଦଳ ତାଙ୍କୁ ବିରୋଧ କଲେ । ଗଙ୍ଗାଧର ଏଥିରେ ବ୍ୟଥିତ ହୋଇ ଗାଁଲୋକଙ୍କ ମଧ୍ୟରେ ବିବାଦର ସମାଧାନ ପାଇଁ ଏବଂ ଦଳାଦଳି ଭାଙ୍ଗିବାପାଇଁ ଗୋଟିଏ ସାଧୁ ସମିତି ଗଢ଼ିଲେ । ପାର୍ଶ୍ୱଚରଙ୍କ ପରାମର୍ଶରେ ଜମିଦାର ତାର ବିରୋଧ କଲେ ଏବଂ ସାଧୁ ସମିତି ଭାଙ୍ଗିଗଲା । ଗଙ୍ଗାଧର ଏସବୁ ଅଶାନ୍ତିକର ପରିସ୍ଥିତି, ଜମିଦାରଙ୍କ ଅତ୍ୟାଚାର, ଗାଁଲୋକମାନଙ୍କ କଳହ ମଧ୍ୟରେ ଜଡ଼ିତ ହୋଇ ଅତ୍ୟନ୍ତ ବ୍ୟଥିତ ହେଲେ ଏବଂ ୧୯୨୩ ମସିହା ଅଗଷ୍ଟ ୨୫ ତାରିଖରେ ନିଜ ଚାକିରିରୁ ଇସ୍ତଫା ଦେଇ ଜମିଦାରଙ୍କ ସହିତ ସମ୍ପର୍କ ତ୍ୟାଗକଲେ ।

ଜମିଦାର ଏଥିରେ ରାଗି ତାଙ୍କୁ ନାନାଭାବରେ ଅପମାନିତ କଲେ।

ଭୁଲିଆ ଜାତିର ଲୋକମାନଙ୍କ ମଧ୍ୟରେ କଳହ ଭାଙ୍ଗି ମିଳାମିଶା କରିବା ପାଇଁ ୧୯୨୪ ମସିହା ମାର୍ଚ୍ଚ ମାସରେ ଗୋଟିଏ ମେହେର ମହାସଭା ଡକାଗଲା। ସେଥିରେ ପାଟଣା, କଳାହାଣ୍ଡି, ଖଡ଼ିଆଳ, ବୌଦ, ସୋନପୁର, ସମ୍ବଲପୁର, ଫୁଲଝର, ପଦ୍ମପୁର, ସାରଙ୍ଗଗଡ଼ ପ୍ରଭୃତି ଅଞ୍ଚଳରୁ ନେତୃସ୍ଥାନୀୟ ମେହେରମାନେ ଆସି ଯୋଗଦେଇଥିଲେ। ଜମିଦାରଙ୍କ ବିରୋଧ ସତ୍ତ୍ୱେ ସେ ସଭା ୨୯।୩।୨୪ ତାରିଖ ପର୍ଯ୍ୟନ୍ତ ଚାଲିଥିଲା। ସେ ସଭା ବାଦ-ବିବାଦ ସବୁ ସମାଧାନ କରି ସ୍ୱଜାତିର ଉନ୍ନତି ପାଇଁ କେତେକ ନିୟମ ପ୍ରଣୟନ କରିଥିଲେ।

ମାତ୍ର ସେ ସଭା ହେଉଥିବା ସମୟରେ ଗଙ୍ଗାଧର ବିଶେଷ ଅସୁସ୍ଥ ହୋଇପଡ଼ିଥିଲେ। ସେ ବର୍ଷ ଫାଲ୍‌ଗୁନ ପୂର୍ଣ୍ଣମୀର ପାଞ୍ଚ-ଛଅ ଦିନ ପୂର୍ବରୁ ସେ ଅସୁସ୍ଥ ହେଲେ। ସେତେବେଳେ ବରପାଲିରେ ଗୋଟିଏ ଡାକ୍ତରଖାନା କାର୍ଯ୍ୟ କରୁଥିଲା। ସ୍ଥାନୀୟ ଡାକ୍ତର ଓ କବିରାଜଙ୍କ ଚିକିତ୍ସାରେ ତାଙ୍କ ରୋଗ ଭଲହୋଇନଥିଲା। ତାଙ୍କୁ ବରଗଡ଼ କିମ୍ବା ସମ୍ବଲପୁରକୁ ନେଇ ଚିକିତ୍ସା କିରିହେଲାନାହିଁ। ଏହିପରି ଗୁରୁତର ଅସୁସ୍ଥ ଅବସ୍ଥାରେ କିଛିଦିନ ରହିଲାପରେ ୪।୪।୨୪ ତାରିଖ ଚୈତ୍ର ଅମାବାସ୍ୟା ଦିନ ତାଙ୍କର ଅବସ୍ଥା ଅତି ଖରାପ ହେଲା ଏବଂ ସେହି ଦିନ ମଧ୍ୟରାତ୍ରିରେ ସେ ଶେଷ ନିଶ୍ୱାସ ତ୍ୟାଗକଲେ। ତାଙ୍କର ମୃତ୍ୟୁ ଖବର ପରଦିନ ଖବରକାଗଜମାନଙ୍କଦ୍ୱାରା ଓଡ଼ିଶାର ସବୁଆଡ଼େ ପ୍ରଚାରିତ ହେଲା ଏବଂ ସମଗ୍ର ଉତ୍କଳବାସୀ ଶୋକରେ ଅଭିଭୂତ ହେଲେ।

ଗଙ୍ଗାଧରଙ୍କର ଚାରିଗୋଟି ସନ୍ତାନ— ଦୁଇ ପୁଅ ଓ ଦୁଇ ଝିଅ ଥିଲେ। ବଡ଼ପୁଅର ତାଙ୍କ ଜୀବଦ୍ଦଶା ମଧ୍ୟରେ ମୃତ୍ୟୁ ହୋଇଥିଲା। ତାଙ୍କ ଜୀବନର ସମସ୍ତ ସମୟ ସମ୍ବଲପୁର ଜିଲ୍ଲାରେ କଟିଥିଲା ଏବଂ ସେ ବନ୍ଧୁ ପରିଜନମାନଙ୍କ ସହିତ ସର୍ବଦା ସମ୍ପର୍କ ରଖିଥିଲେ। ନିଜ ଜାତିର ଓ ସର୍ବସାଧାରଣଙ୍କର ସର୍ବଦା ସେ ଶ୍ରଦ୍ଧାଭାଜନ ଥିଲେ। ସେ ସ୍ୱଳ୍ପଭାଷୀ ଥିଲେ ଏବଂ ଅତି ସରଳ ଜୀବନ-ଯାପନ କରୁଥିଲେ। ସର୍ବଦା ମଧ୍ୟମ ଧରଣର ଖଣ୍ଡେ ଧୋତି, ଖଣ୍ଡେ କାମିଜ ଏବଂ ହଳେ ଜୋତା ବ୍ୟବହାର କରୁଥିଲେ ଏବଂ ଭୂମି ଉପରେ ମଶିଣାରେ ବସି ଲେଖାଲେଖି କରୁଥିଲେ। ତାଙ୍କର କିଛି ବିଳାସ-ବ୍ୟସନ ନଥିଲା। ସେ ସର୍ବଦା ନମ୍ର, ବିନୟୀ ଓ ସଂଯତ ଥିଲେ। ତାଙ୍କର ଶାନ୍ତ ନିରାଡ଼ମ୍ବର ଓ ସଂଯତ ପ୍ରକୃତି ହେତୁ ସବୁ ଶ୍ରେଣୀର ଲୋକ ତାଙ୍କ ପ୍ରତି ଆକୃଷ୍ଟ ହେଉଥିଲେ। ସେ କ୍ରୋଧରେ କେବେ ଉତ୍‌କ୍ଷିପ୍ତ ହେଉନଥିଲେ କିମ୍ବା ଉଚ୍ଚସ୍ୱରରେ କଥାବାର୍ତ୍ତା କରୁନଥିଲେ। କଟୁବାକ୍ୟ ପ୍ରୟୋଗ କରି କାହାରି ମନରେ କଷ୍ଟ ଦେବାକୁ ସେ ଚାହୁଁନଥିଲେ। ତାଙ୍କର ସଂଯତ ଓ ବିନମ୍ର ବ୍ୟବହାରଯୋଗୁଁ ସମସ୍ତେ ତାଙ୍କୁ

ଭଲପାଉଥିଲେ। ଅନ୍ୟ ବିଶିଷ୍ଟ ସାହିତ୍ୟିକମାନଙ୍କ ତୁଳନାରେ ନିଜକୁ ସେ ଦରିଦ୍ର ମନେକରୁଥିଲେ। ମାତ୍ର ନିଜପାଇଁ କିମ୍ୱା ପରିବାରପୋଷଣ ନିମିତ୍ତ କାହାରି ଦ୍ୱାରସ୍ଥ ହେବାକୁ ଇଚ୍ଛା କରୁନଥିଲେ; ବରଂ ନିଜର ପଡ଼ୋଶୀମାନଙ୍କ ପ୍ରତି ସର୍ବଦା ସହାନୁଭୂତିଶୀଳ ଥିଲେ ଏବଂ ବିପଦବେଳେ ଅନ୍ୟମାନଙ୍କୁ ସାହାଯ୍ୟ କରୁଥିଲେ। ସେ ଉଚ୍ଚମନା ଥିଲେ; ଧନ ଅପେକ୍ଷା ସୌଜନ୍ୟ ଏବଂ ସାଧୁତାକୁ ଉଚ୍ଚ ଦୃଷ୍ଟିରେ ଦେଖୁଥିଲେ। ରାଜାମାନଙ୍କ ଦ୍ୱାରସ୍ଥ ହେବାକୁ ମଧ ସେ ଚାହୁଁନଥିଲେ। ଅଯଥା କାହାରି ପ୍ରଶସ୍ତି ଗାନକରି ନିଜର ସ୍ୱାର୍ଥ ସାଧନ କରିବା ତାଙ୍କର ପ୍ରକୃତିବିରୁଦ୍ଧ ଥିଲା। ଅଯଥା ବାଦାନୁବାଦ କରିବାକୁ ମଧ ସେ ଇଚ୍ଛା କରୁନଥିଲେ। ବିପଦ ସମୟରେ ଉଦ୍‌ବିଗ୍ନ ହେଉ ନଥିଲେ। ଅନୀତି, ଅନ୍ୟାୟ ଓ ଅତ୍ୟାଚାରର ସେ ସର୍ବଦା ବିରୋଧ କରୁଥିଲେ। ସମାଜରେ କୁ-ସଂସ୍କାରର ମଧ ସେ ବିରୋଧୀ ଥିଲେ। ତାଙ୍କର ଜ୍ଞାନପିପାସା ପ୍ରବଳ ଥିଲା ଏବଂ ଆର୍ଥିକ ଅଭାବ ସତ୍ତ୍ୱେ ଅନେକ ପୁସ୍ତକ ଓ ପତ୍ରପତ୍ରିକା କିଣୁଥିଲେ। ସେ ଧାର୍ମିକ ସ୍ୱଭାବର ଲୋକ ଥିଲେ ଏବଂ ପ୍ରତ୍ୟହ ଗୀତା ପାଠ କରୁଥିଲେ; ମାତ୍ର କୌଣସି ଦେବଦେବୀ ସାଧନା କରୁନଥିଲେ।

ଗଙ୍ଗାଧର ଜୀବନଯାକ ଦରିଦ୍ର ଭାବରେ ଜୀବନ ଯାପନ କରିଥିଲେ। ବରପାଲି ଜମିଦାରଙ୍କ ନିକଟରେ ବହୁବର୍ଷ କାର୍ଯ୍ୟ କରିଥିଲେ ସୁଦ୍ଧା ତାଙ୍କଠାରୁ ଦାନ ଆକାରରେ ଜମିବାଡ଼ି କରାଇନେବାକୁ ଚାହିଁନଥିଲେ। ଶେଷଜୀବନରେ ଯୁବକ ଜମିଦାରଙ୍କର ଅନ୍ୟାୟ କାର୍ଯ୍ୟ ଦେଖି ସେ ତାଙ୍କ ସମ୍ପର୍କ ତ୍ୟାଗ କରିଥିଲେ। ସେ ସ୍କୁଲରେ କେବଳ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିଥିଲେ, ସରକାରଙ୍କ ଅଧୀନରେ ନିମ୍ନ ସ୍ତରର ଏକ ଚାକିରି କରିଥିଲେ, ସାଧାରଣ ଜୀବନରେ ସାଧାରଣ ଗ୍ରାମବାସୀଙ୍କ ପରି ଜୀବନ ଯାପନ କରୁଥିଲେ। ମାତ୍ର ତାଙ୍କର ସ୍ୱଭାବସିଦ୍ଧ କବିପ୍ରତିଭା, ଜ୍ଞାନପିପାସା ଓ ସାହିତ୍ୟ-କୃତି ହେତୁ ସେ ଉତ୍କଳରେ ସର୍ବଜନ-ବନ୍ଦ୍ୟ ହୋଇଥିଲେ ଏବଂ ରାଜା, ମହାରାଜା, ସାହିତ୍ୟିକ, କବି ଓ ଜନନାୟକମାନେ ସମସ୍ତେ ତାଙ୍କୁ ଶ୍ରଦ୍ଧା ଓ ଭକ୍ତି କରୁଥିଲେ ଏବଂ ସମ୍ମାନ ଦେଉଥିଲେ। କବି ଭାବରେ ଓଡ଼ିଆ ସାହିତ୍ୟରେ ଚିରକାଳ ତାଙ୍କର ସ୍ଥାନ ଅତି ଉଚ୍ଚରେ ରହିବ।

**ସାହିତ୍ୟ-କୃତି –**

ଆଲୋଚକମାନେ ଗଙ୍ଗାଧର ମେହେରଙ୍କ ସାହିତ୍ୟକୁ ପ୍ରଧାନତଃ ତିନି ଭାଗରେ ବିଭକ୍ତ କରିଛନ୍ତି। ସେ ତିନିଗୋଟି ବିଭାଗ ହେଲା– ତାଙ୍କ ଲିଖିତ କାବ୍ୟ ଓ ଖଣ୍ଡକାବ୍ୟ, ବିଭିନ୍ନ ଭାବନାରେ ଓ ବିଷୟରେ ଲିଖିତ ବହୁ କବିତା

ଏବଂ ତାଙ୍କର ଗଦ୍ୟ-ସାହିତ୍ୟ। ତାଙ୍କ ଲିଖିତ ଗଦ୍ୟ-ସାହିତ୍ୟ ଅତି ଅଳ୍ପ ଏବଂ ବିଶେଷ ଖ୍ୟାତିସମ୍ପନ୍ନ ନୁହେଁ। କିନ୍ତୁ ତାଙ୍କ ଲିଖିତ ବହୁ ଉଚ୍ଚକୋଟୀର କାବ୍ୟ ଓ କବିତା ଖ୍ୟାତିସମ୍ପନ୍ନ ଏବଂ ସେଗୁଡ଼ିକ ଯୋଗୁଁ ସେ ଉତ୍କଳର ବିଭିନ୍ନ ଯୁଗର କବି ଓ ସାହିତ୍ୟିକମାନଙ୍କ ମଧ୍ୟରେ ପ୍ରସିଦ୍ଧି ଲାଭ କରିଛନ୍ତି ଏବଂ ଉତ୍କଳ ସାହିତ୍ୟରେ ଅତି ଉଚ୍ଚସ୍ଥାନ ଅଧିକାର କରିଛନ୍ତି।

ଗଙ୍ଗାଧର ଆନୁଷ୍ଠାନିକ ଭାବେ ସ୍କୁଲରେ କେବଳ ପଞ୍ଚମ ଶ୍ରେଣୀ ଶେଷ ପର୍ଯ୍ୟନ୍ତ ପଢ଼ିଥିଲେ। ମାତ୍ର ସ୍କୁଲ ଛାଡ଼ିବାପରେ ନିଜ ଉଦ୍ୟମରେ ସଂସ୍କୃତ ଭାଷା ଶିକ୍ଷାକରି କାଳିଦାସ, ଭବଭୂତି ଏବଂ ବେଦବ୍ୟାସଙ୍କ ରଚିତ ସଂସ୍କୃତ କାବ୍ୟମାନ ପଢ଼ିଥିଲେ। ଓଡ଼ିଆର ପୁରାତନ କବି ଉପେନ୍ଦ୍ରଭଞ୍ଜଙ୍କ ଲାବଣ୍ୟବତୀ, ବୈଦେହୀଶବିଳାସ, ରସିକ ହାରାବଳୀ ଏବଂ ଦୀନକୃଷ୍ଣ ଦାସଙ୍କ ରସକଲ୍ଲୋଳ, ସାରଳାଦାସଙ୍କ ମହାଭାରତ, ବଳରାମ ଦାସଙ୍କ ରାମାୟଣ ଓ ଜଗନ୍ନାଥ ଦାସଙ୍କ ଭାଗବତ ପ୍ରଭୃତି ପଢ଼ିଥିଲେ। ଏସବୁ ବ୍ୟତୀତ ତାଙ୍କର ସମସାମୟିକ କବି ରାଧାନାଥ ରାୟ, ମଧୁସୂଦନ ରାଓ, ନନ୍ଦକିଶୋର ବଳ ପ୍ରଭୃତିଙ୍କ ସମସ୍ତ କାବ୍ୟ କବିତା ପଢ଼ିଥିଲେ। ଦାରିଦ୍ର ସତ୍ତ୍ୱେ ସେ ସମୟରେ ପ୍ରକାଶିତ ହେଉଥିବା ସମ୍ବଲପୁର ହିତୈଷିଣୀ, ସମ୍ବାଦବାହିକା, ଉତ୍କଳ ଦୀପିକା, ପ୍ରଜାବନ୍ଧୁ, ଉତ୍କଳ-ସାହିତ୍ୟ, ଉତ୍କଳ ମଧୁପ, ମୁକୁର, ସତ୍ୟବାଦୀ, ବଙ୍ଗଳାରେ ପ୍ରକାଶିତ ପ୍ରବାସୀ ପ୍ରଭୃତି ପତ୍ରପତ୍ରିକାର ନିୟମିତ ଗ୍ରାହକ ଥିଲେ ଏବଂ ଉତ୍କଳର ପୁରାତନ ଓ ଆଧୁନିକ ସାହିତ୍ୟ ବିଷୟକ ବହୁ ପୁସ୍ତକ ଓ ପତ୍ରିକା ପଢ଼ି ସେ ସବୁ ବିଷୟରେ ଜ୍ଞାନ ଅର୍ଜନ କରିଥିଲେ।

ଉତ୍କଳର ପୁରାତନ ରୀତିକାବ୍ୟମାନଙ୍କ ପ୍ରେରଣାରେ ସେ ପ୍ରଥମେ ୧୮୯୩ ମସିହାରେ ପ୍ରାଚୀନ ଶୈଳୀରେ 'ରସରତ୍ନାକର' କାବ୍ୟ ଲେଖିଥିଲେ ଏବଂ ବରପାଲି ଯୁବରାଜଙ୍କ ଗୃହଶିକ୍ଷକ ସୂର୍ଯ୍ୟକୁମାର ମିତ୍ରଙ୍କୁ ତାହାକୁ ଦେଖିବାକୁ ଦେଇଥିଲେ। ସେ କାବ୍ୟର ବିଷୟବସ୍ତୁ ମହାଭାରତ ଓ ଭାଗବତ ପ୍ରଭୃତିରେ ବର୍ଣ୍ଣିତ ବାଣାସୁରର କନ୍ୟା ଉଷା ଏବଂ ଶ୍ରୀକୃଷ୍ଣଙ୍କ ନାତି ଅନିରୁଦ୍ଧଙ୍କ ପ୍ରଣୟ କାହାଣୀ ଥିଲା। ରୀତିକାବ୍ୟଶୈଳୀରେ ଆଦ୍ୟ ଓ ପ୍ରାନ୍ତରେ 'ର' ଅକ୍ଷର ରଖି 'ରସ-ରତ୍ନାକର' ଲେଖାହୋଇଥିଲା। ସୂର୍ଯ୍ୟକୁମାର ମିତ୍ର ତାହା ପଢ଼ି ଯୁଗୋପଯୋଗୀ ଆଧୁନିକ ଧରଣର କାବ୍ୟ-କବିତା ଲେଖିବାକୁ ଗଙ୍ଗାଧରଙ୍କୁ ପରାମର୍ଶ ଦେଇଥିଲେ। ତାହାପରେ ଗଙ୍ଗାଧର ରାଧାନାଥ ରାୟଙ୍କ କାବ୍ୟମାନ ପଢ଼ିଥିଲେ। ୧୮୯୨ ମସିହାରେ ରାଧାନାଥ ତାଙ୍କ ରଚିତ ନନ୍ଦିକେଶ୍ୱରୀ, ଉଷା, ଚନ୍ଦ୍ରଭାଗା ଓ କେଦାରଗୌରୀ ପ୍ରଭୃତି କାବ୍ୟ ଗଙ୍ଗାଧରଙ୍କ ପାଖକୁ ପଠାଇଥିଲେ। ତାହା ବ୍ୟତୀତ ରାଧାନାଥଙ୍କ ରଚନା ଉପରେ ଆଲୋଚନା

'ସମ୍ବଲପୁର ହିତୈଷିଣୀ'ରେ ସର୍ବଦା କରାଯାଉଥିଲା। ଗଙ୍ଗାଧର ସେ ସବୁ ପଢ଼ି ତାଙ୍କର ପରବର୍ତ୍ତୀ ଦୁଇଗୋଟି କାବ୍ୟ 'ଇନ୍ଦୁମତୀ' ଓ 'ଉତ୍କଳଲକ୍ଷ୍ମୀ' ଲେଖିଲେ। ଇନ୍ଦୁମତୀ ୧୮୯୩ ଏବଂ ଉତ୍କଳଲକ୍ଷ୍ମୀ ୧୮୯୪ ମସିହାରେ ଲେଖାହୋଇଥିଲା। ଇନ୍ଦୁମତୀରେ ରଘୁବଂଶର ରଘୁଙ୍କ ସୁତ ଅଜଙ୍କର ସ୍ୱୟଂବରରେ ବିଦର୍ଭ ରାଜକନ୍ୟା ଇନ୍ଦୁମତୀଙ୍କୁ ଲାଭ, ଅଜ ଓ ଇନ୍ଦୁମତୀଙ୍କ ପ୍ରଣୟ ଓ ବିବାହୋତ୍ସବ, ଇନ୍ଦୁମତୀଙ୍କ ଅକାଳବିୟୋଗ ଏବଂ ସେଥିରେ ଅଜଙ୍କର ମର୍ମଦାହୀ ଶୋକଯନ୍ତ୍ରଣା ବର୍ଣ୍ଣନା କରାଯାଇଛି। ସମଗ୍ର କଥାବସ୍ତୁ କାଳିଦାସଙ୍କର କୁମାରସମ୍ଭବ କାବ୍ୟରୁ ସଂଗୃହୀତ ଏବଂ କବିବର ରାଧାନାଥ ରାୟଙ୍କ ଶୈଳୀରେ ଲିଖିତ ହୋଇଛି। ରାଧାନାଥ ରାୟ ଓ ନନ୍ଦକିଶୋର ବଳ ପ୍ରଭୃତି ଏହି କାବ୍ୟ ପଢ଼ି ଗଙ୍ଗାଧରଙ୍କ କବି-ପ୍ରତିଭାର ଉଚ୍ଚ ପ୍ରଶଂସା କରିଥିଲେ।

'ଉତ୍କଳଲକ୍ଷ୍ମୀ'ରେ ଜନ୍ମଭୂମି ଉତ୍କଳର ବିଭିନ୍ନ ପ୍ରାକୃତିକ ଦୃଶ୍ୟ, ଉତ୍କଳର ଐତିହ୍ୟ, ସାଂସ୍କୃତିକ ପରମ୍ପରା, ପୂର୍ବଜ ବୀରପୁରୁଷମାନଙ୍କର ଗୌରବ, ଉତ୍କଳର ସଂସ୍କୃତିନିର୍ମାତା ସାରଳା ଦାସ, ବଳରାମ ଦାସ, ଜଗନ୍ନାଥ ଦାସ ଓ ରାଧାନାଥ ରାୟଙ୍କ ପ୍ରତି ଭକ୍ତି ଏବଂ ହରିଶଙ୍କର, ନୃସିଂହନାଥ, ପାଟଣେଶ୍ୱରୀ, ରାମଚଣ୍ଡୀ, ଶିଶୁପାଳ, ବୁଢ଼ାରାଜା, ମୋତିଝରଣ ପ୍ରଭୃତି ସ୍ଥାନର ଦୃଶ୍ୟ ବର୍ଣ୍ଣନା କରାଯାଇଛି। ସମସ୍ତ କାବ୍ୟଟି ରାଧାନାଥଙ୍କ ଶୈଳୀରେ ଲେଖାଯାଇଛି। ଏହା ୧୮୯୪ ମସିହାରେ ପ୍ରକାଶିତ ହୋଇଥିଲା। 'ସମ୍ବଲପୁର ହିତୈଷିଣୀ' ଏହାକୁ ରାଧାନାଥ ରାୟଙ୍କର ଅବିଚାରିତ ଅନୁସରଣ ବୋଲି ସମାଲୋଚନା କରିଥିଲେ। ମାତ୍ର ବହୁ କବି ଓ ସାହିତ୍ୟିକ ତାହାର ଉଚ୍ଚ ପ୍ରଶଂସା କରିଥିଲେ।

ତାଙ୍କର ଚତୁର୍ଥ କାବ୍ୟ 'କୀଚକବଧ' ୧୯୦୨-୩ରେ ସେ ବିଜେପୁରଠାରେ ଥିବାବେଳେ ଲିଖିତ ହୋଇଥିଲା। ଏହା ମହାଭାରତର ବିରାଟ-ପର୍ବରେ ବର୍ଣ୍ଣିତ ଘଟଣା। ଗଙ୍ଗାଧର ଏଥିରେ ନଗର, ଉପବନ, ଉଷା, ପ୍ରଦୋଷ, ରଜନୀ ଓ ବିଭିନ୍ନ ଋତୁମାନଙ୍କର ବର୍ଣ୍ଣନା ସହ ଧର୍ମ ଓ ଅଧର୍ମ ମଧ୍ୟରେ ଦ୍ୱନ୍ଦ୍ୱ ଏବଂ ଶେଷରେ ଧର୍ମର ଜୟ ପ୍ରତିପାଦିତ କରିଛନ୍ତି। ଏ କାବ୍ୟ ଉପରେ ମନ୍ତବ୍ୟ ଦେଇ ରାଧାନାଥ ରାୟ ଲେଖିଥିଲେ ଯେ, ପୁରାତନରେ ନୂତନତା ଏବଂ ଆହୃତରେ ମୌଳିକତା ପ୍ରତିଫଳିତ କରିବା ପ୍ରତିଭାର ବିଧି। କୀଚକବଧ ଲେଖିବା ସମୟରେ ଗଙ୍ଗାଧରଙ୍କର ବଡ଼ପୁଅର ଦେହାନ୍ତ ହୋଇଥିବାରୁ ତାଙ୍କ ମନ ଦୁଃଖରେ ଭାରାକ୍ରାନ୍ତ ହୋଇଥିଲା। ଇନ୍ଦୁମତୀ, ଉତ୍କଳଲକ୍ଷ୍ମୀ ଓ କୀଚକବଧ ପଢ଼ି ରାଧାନାଥ ରାୟ ମୁଗ୍ଧ ହୋଇ ଗଙ୍ଗାଧରଙ୍କର ଉଚ୍ଚ ପ୍ରଶଂସା କରିଥିଲେ। କୀଚକବଧ ପ୍ରକାଶନର ସମସ୍ତ ବ୍ୟୟ ମଧୁସୂଦନ ଦାସ ବହନ କରିଥିଲେ ଏବଂ ଉତ୍କଳଲକ୍ଷ୍ମୀର ପୂର୍ଣ୍ଣାଙ୍ଗ କାବ୍ୟର ପ୍ରକାଶନ ବ୍ୟୟ ବ୍ରଜମୋହନ ପଣ୍ଡା ଦେଇଥିଲେ।

ତାଙ୍କର 'ଅଯୋଧ୍ୟା ଦୃଶ୍ୟ' କାବ୍ୟରେ ରାମଙ୍କ ଅଭିଷେକ ପାଇଁ ପ୍ରସ୍ତୁତି ସମୟରେ ଆନନ୍ଦ, ରାମବନବାସ ଏବଂ ଦଶରଥ-ବିୟୋଗରେ ଅଯୋଧ୍ୟାବାସୀଙ୍କ ଶୋକ ଏବଂ ରାମଙ୍କର ଲଙ୍କାରୁ ପ୍ରତ୍ୟାବର୍ତ୍ତନ ପରେ ଅଯୋଧ୍ୟାରେ ଅଭିଷେକ ସମୟରେ ଆନନ୍ଦ ଉଲ୍ଲାସ ବର୍ଣ୍ଣନା କରାଯାଇଛି ।

ଗଙ୍ଗାଧରଙ୍କର ଷଷ୍ଠ ଓ ସପ୍ତମ କାବ୍ୟ 'ପ୍ରଣୟବଲ୍ଲରୀ' ଓ 'ତପସ୍ୱିନୀ' ସବୁଠାରୁ ଅଧିକ ଜନପ୍ରିୟ । କାଳିଦାସଙ୍କର 'ଅଭିଜ୍ଞାନ ଶକୁନ୍ତଳମ୍' ନାଟକରେ ବର୍ଣ୍ଣିତ ଦୁଷ୍ମନ୍ତ ଓ ଶକୁନ୍ତଳାଙ୍କ ପ୍ରଣୟ, ଦୁର୍ବାସାଙ୍କ ଅଭିଶାପରେ ଦୁଷ୍ମନ୍ତଙ୍କର ପ୍ରଣୟ-ବିସ୍ମୃତି, ଧୀବରର ମୁଦ୍ରିକାଉଦ୍ଧାର ଏବଂ ଦୁଷ୍ମନ୍ତଙ୍କର ସ୍ମୃତିର ପୁନଃ ଜାଗରଣ, ଭରତଙ୍କର ଜନ୍ମ ଏବଂ ଦୁଷ୍ମନ୍ତଙ୍କର ପ୍ରଣୟିନୀ ନିକଟରେ କ୍ଷମାଭିକ୍ଷା ପ୍ରଭୃତି ବିଷୟ ବର୍ଣ୍ଣନା କରାଯାଇଛି । ରାଧାନାଥଙ୍କ କାବ୍ୟ-ଶୈଳୀରେ କାଳିଦାସଙ୍କର ପ୍ରକୃତିଚିତ୍ରଣ ଓ ଭବଭୂତିଙ୍କ ପ୍ରଣୟ ଚରିତ୍ରଚିତ୍ରଣ ଅନୁସରଣ କରାଯାଇଛି । ସାହିତ୍ୟିକମାନେ ଆଲୋଚନା କରିଛନ୍ତି ଯେ ଗଙ୍ଗାଧରଙ୍କର ଏ କାବ୍ୟରେ ବୀର, କରୁଣ, ଶୃଙ୍ଗାର, ହାସ୍ୟ, ବାତ୍ସଲ୍ୟ ପ୍ରଭୃତି ସମସ୍ତ ରସର ସମାବେଶ ହୋଇଛି । ମହାକବି କାଳିଦାସଙ୍କର ବିଶ୍ୱବିଖ୍ୟାତ ଶକୁନ୍ତଳା ନାଟକକୁ ଅନୁସରଣ କରି ଏହି କାବ୍ୟ ରଚିତ ହୋଇଛି । ଚରିତଟି ପ୍ରଣୟପ୍ରଧାନ ଥିବାରୁ କାବ୍ୟଟିର ନାମ 'ପ୍ରଣୟବଲ୍ଲରୀ' ରଖାଯାଇଛି । ଭାଷାବିନ୍ୟାସ, ପ୍ରକୃତିଚିତ୍ରଣ, ମନସ୍ତାତ୍ତ୍ୱିକ ବିଶ୍ଳେଷଣ, ସଂଯତ ପ୍ରଣୟ ପ୍ରଭୃତି ବର୍ଣ୍ଣନା ଗଙ୍ଗାଧରଙ୍କର ଅସାମାନ୍ୟ କବିପ୍ରତିଭାର ନିଦର୍ଶନ ଦେଉଛି । 'ପ୍ରଣୟବଲ୍ଲରୀ' ଏବଂ 'ତପସ୍ୱିନୀ' ଦୁଇଟି ଗଙ୍ଗାଧରଙ୍କର ଶ୍ରେଷ୍ଠ କାବ୍ୟ ବୋଲି ସାହିତ୍ୟିକମାନେ ମତ ପ୍ରକାଶ କରନ୍ତି । ପ୍ରଣୟବଲ୍ଲରୀ ଗଙ୍ଗାଧର ପଦ୍ମପୁରଠାରେ ଅବସ୍ଥାନ କରୁଥିବା ସମୟରେ ୧୯୧୫ ମସିହାରେ ପ୍ରକାଶିତ ହୋଇଥିଲା । ବୋଡ଼ାସମ୍ବର ଜମିଦାର ରାୟ ଲାଲ୍ ରାଜେନ୍ଦ୍ର ସିଂହ ବରିହା ବାହାଦୁର ଏହାର ପ୍ରକାଶନ ଭାର ବହନ କରିଥିଲେ ଏବଂ ତାଙ୍କ ନାମରେ ଏ କାବ୍ୟ ଉତ୍ସର୍ଗ ହୋଇଛି ।

ଗଙ୍ଗାଧରଙ୍କର ଶେଷ କାବ୍ୟ 'ତପସ୍ୱିନୀ' ମଧ୍ୟ 'ପ୍ରଣୟବଲ୍ଲରୀ' ପରି ଅତ୍ୟନ୍ତ ଲୋକପ୍ରିୟ ହୋଇଛି । ଏହାର କଥାବସ୍ତୁ ଭବଭୂତିଙ୍କର 'ଉତ୍ତରରାମଚରିତ' ନାଟକରୁ ଆହୃତ ହୋଇଛି । ଭବଭୂତି ପ୍ରଜାରଞ୍ଜନ ପାଇଁ ରାମଙ୍କର ପ୍ରିୟତମା ପତ୍ନୀ ସୀତାଙ୍କୁ ନିର୍ବାସନ, ନିର୍ବାସିତ ଜୀବନରେ ସୀତାଙ୍କର ତପସ୍ୱିନୀ ବ୍ରତ ଅବଲମ୍ବନ, ରାମଙ୍କର କର୍ତ୍ତବ୍ୟବୋଧ ଏବଂ ସୀତା-ବିରହ-ବେଦନା ଉତ୍ତରରାମଚରିତ ନାଟକରେ ବର୍ଣ୍ଣନା କରିଛନ୍ତି । ଗଙ୍ଗାଧର ତାଙ୍କର ଅନ୍ତିମ କାବ୍ୟପାଇଁ ଏହି କରୁଣ କାହାଣୀ ନିର୍ବାଚନ କରିଥିଲେ । ଏ କାବ୍ୟରେ ରାମଚନ୍ଦ୍ରଙ୍କ କର୍ତ୍ତବ୍ୟବୋଧ ଅପେକ୍ଷା ସୀତାଙ୍କର ତପସ୍ୟାସାଧନକୁ ଅଧିକ ଗୁରୁତ୍ୱ ଦିଆଯାଇଛି । ଭବଭୂତି

ରାମଚନ୍ଦ୍ରଙ୍କ ସୀତା-ପ୍ରୀତି ଦେଖାଇବା ପାଇଁ ସମବେଦନଶୀଳ ପ୍ରାକୃତିକ ପରିବେଶ ବର୍ଣ୍ଣନା କରିଛନ୍ତି। ଗଙ୍ଗାଧର ସେହିପରି ସୀତାଙ୍କ ହୃଦୟର ରାମପ୍ରୀତି ବର୍ଣ୍ଣନା କରିବାପାଇଁ ସମବେଦନଶୀଳ ପ୍ରାକୃତିକ ପରିବେଶର ବର୍ଣ୍ଣନା କରିଛନ୍ତି। ତପସ୍ୱିନୀ କାବ୍ୟରେ ଗଙ୍ଗାଧରଙ୍କର ମହାନଦୀ, ଗୋଦାବରୀ, ଦଣ୍ଡକାରଣ୍ୟ, ଅଯୋଧ୍ୟା, ବାଲ୍ମୀକି ଆଶ୍ରମର ପରିବେଶ ବୃକ୍ଷ, ଲତା, ପକ୍ଷୀ, ତପସ୍ୱିନୀ ରୂପେ ସୀତାଙ୍କର ଆଶ୍ରମ ଜୀବନ ଯାପନ ପ୍ରଭୃତି ବର୍ଣ୍ଣନା ଅତି ମନୋମୁଗ୍ଧକର। ଏ କାବ୍ୟର ଆଳଙ୍କାରିକ ଶୈଳୀ, ସଙ୍ଗୀତମାଧୁର୍ଯ୍ୟ ଓ ପ୍ରାଞ୍ଜଳ ଭାଷା ସର୍ବଜନ ପ୍ରଶଂସିତ ହୋଇଛି। ତପସ୍ୱିନୀ କାବ୍ୟ ଗଙ୍ଗାଧରଙ୍କର ଓଡ଼ିଆ ସାହିତ୍ୟକୁ ଏକ ଅନବଦ୍ୟ ଅବଦାନ। ଏହି କାବ୍ୟ ଗଙ୍ଗାଧର ୧୯୧୨ ମସିହାରେ ସମ୍ବଲପୁରଠାରେ ଥିବାବେଳେ ଆରମ୍ଭ କରିଥିଲେ ଏବଂ ୧୯୧୩ ମସିହାରେ ବିଜେପୁରରେ ଥିବାବେଳେ ଶେଷକରିଥିଲେ। ରାମନାରାୟଣ ମିଶ୍ରଙ୍କ ଆର୍ଥିକ ସାହାଯ୍ୟରେ ୧୯୧୫ ମସିହାରେ ଏ କାବ୍ୟ ପ୍ରକାଶିତ ହୋଇଥିଲା।

'ପଦ୍ମିନୀ' ଗଙ୍ଗାଧରଙ୍କର ଗୋଟିଏ ଅସଂପୂର୍ଣ୍ଣ କାବ୍ୟ। ୧୯୧୦ ମସିହାରେ ସମ୍ବଲପୁରଠାରେ ଥିଲାବେଳେ ଏ କାବ୍ୟ ସେ ଆରମ୍ଭ କରିଥିଲେ। ମାତ୍ର ପାଞ୍ଚଗୋଟି ସର୍ଗ ପରେ ଏହା ଅସଂପୂର୍ଣ୍ଣ ରହିଗଲା। ତାହାପରେ ସେ 'ପ୍ରଣୟବଲ୍ଲରୀ' ଏବଂ 'ତପସ୍ୱିନୀ' କାବ୍ୟ ଲେଖିଥିଲେ; ମାତ୍ର 'ପଦ୍ମିନୀ' କାବ୍ୟ ସଂପୂର୍ଣ୍ଣ କରିନଥିଲେ। ଗଙ୍ଗାଧର ଏଥିରେ ଦିଲ୍ଲୀ ଦରବାରର ବିଳାସପୂର୍ଣ୍ଣ ଜୀବନ, ଆଲ୍ଲାଉଦ୍ଦିନ୍‌ଙ୍କ ଚରିତ୍ରହୀନତା ଓ ବିଶ୍ୱାସଘାତକତା, ଚିତୋରର ବିଭବ ଏବଂ ରାଜପୁତ୍‌ମାନଙ୍କର ବୀରତ୍ୱ, ପଦ୍ମିନୀଙ୍କର ରୂପଶ୍ରୀ ଏବଂ ସତୀତ୍ୱରକ୍ଷା ପ୍ରଭୃତି ବର୍ଣ୍ଣନା କରିଛନ୍ତି। ଏହା ଏକ ଜାତୀୟତାଭାବବ୍ୟଞ୍ଜକ ଐତିହାସିକ କାବ୍ୟ। ସାହିତ୍ୟିକମାନେ କହନ୍ତି ଯେ, ଐତିହାସିକ ସତ୍ୟ ଏବଂ କବିଙ୍କର ଆଦର୍ଶବୋଧ ହେତୁ ଏ କାବ୍ୟ ଆଉ ପ୍ରଗତି ନକରି ଅସଂପୂର୍ଣ୍ଣ ରହିଗଲା। ପଦ୍ମିନୀ ଆଖ୍ୟାୟିକାର ଶେଷରେ ସତ୍ୟ ଓ ନ୍ୟାୟର ଜୟ ହୋଇନାହିଁ।

ଉପରୋକ୍ତ କାବ୍ୟମାନଙ୍କ ବ୍ୟତୀତ ଗଙ୍ଗାଧରଙ୍କର ବିଭିନ୍ନ ପ୍ରକାର ଭବୋଦ୍ରେକକାରୀ କାଳଜୟୀ ବହୁ କବିତା ପ୍ରସିଦ୍ଧି ଲାଭ କରିଛି। ଏହି କବିତାସବୁ ଗଙ୍ଗାଧରଙ୍କର କାବ୍ୟମାନଙ୍କ ସହିତ ସମପରିମାଣରେ ଓଡ଼ିଆସାହିତ୍ୟକୁ ଅନବଦ୍ୟ ଅବଦାନ। ସାହିତ୍ୟିକମାନେ ତାଙ୍କର ବିଭିନ୍ନ ସମୟରେ ବିଭିନ୍ନ ପରିବେଶରେ ଏବଂ ବିଭିନ୍ନ ଭାବୋଚ୍ଛ୍ୱାସରେ ଲିଖିତ କବିତାମାନଙ୍କୁ ବିଭିନ୍ନ ବିଭାଗରେ ବିଭକ୍ତ କରିଛନ୍ତି : (କ) ଅହଲ୍ୟାସ୍ତବ, ମହିମା, ଭାରତୀଭାବନା, ପ୍ରଭୃତି ତାଙ୍କର କବିତା ଗୀତିକାବ୍ୟ ରୂପେ ବର୍ଣ୍ଣିତ (ଖ) ମଧୁମୟ, ଅମୃତମୟ ଓ ଅହଲ୍ୟାସ୍ତବ ପ୍ରଭୃତି ଭକ୍ତିମୂଳକ କବିତା; (ଗ) ଭାରତୀରୋଦନ, ଉତ୍କଳଭାରତୀଙ୍କ ଉକ୍ତି, ଉଦ୍‌ବୋଧନ,

ମଳୟ ଆଗମନ ପ୍ରଭୃତି କବିତା ସ୍ୱଦେଶ-ପ୍ରୀତିମୂଳକ କବିତାରୂପେ ପରିଗଣିତ, (ଘ) ତାରା ଓ ସୂର୍ଯ୍ୟ, ଗଣେଶଙ୍କର ଆତ୍ମକଥା, ବାକ୍ୟବୀର ଓ କର୍ମବୀର, ଖଦ୍ୟୋତର ଖେଦ, ତାକୁ ମଧ୍ୟ ବୋଲିଥାନ୍ତି ଧର୍ମ ଅବତାର, ସଙ୍ଗଫଳ ପ୍ରଭୃତି କବିତା ସଂସ୍କାରଧର୍ମୀ କବିତା, (ଙ) ମହାଜନ, ଗୁରୁଶିଷ୍ୟ, ମନପ୍ରତି, ଧର୍ମପ୍ରତି, ଅମୂଲ୍ୟ ଓ ମୂଲ୍ୟବାନ୍ ପ୍ରଭୃତି ନୀତିମୂଳକ କବିତା, (ଚ) କୃଷକର ଆତ୍ମକଥା, ଅନ୍ନର ମହିମା, ବିଭିନ୍ନ ପ୍ରକାର ମାଟିର ବର୍ଣ୍ଣନା ଏବଂ ପନିପରିବା ପ୍ରଭୃତିର ଗୁଣ ବର୍ଣ୍ଣନା କରିଥିବା କବିତା ସବୁ କୃଷି-କବିତା, (ଛ) ରାଧାନାଥ, କବି ମଧୁସୂଦନ, ଫକୀରମୋହନ, କୃଷ୍ଣକୁମାରୀ ପ୍ରଭୃତିଙ୍କ ମୃତ୍ୟୁ ଉପଲକ୍ଷେ ଲିଖିତ କବିତା ସବୁ ଶୋକ-କବିତା, (ଜ) ଚନ୍ଦ୍ରରଜନୀ, ବସନ୍ତବାସର, ବର୍ଷାଚିତ୍ର ପ୍ରଭୃତି ପ୍ରକୃତିଚିତ୍ରଣ କବିତା।

ସ୍ଥୂଳତଃ ଗଙ୍ଗାଧର ବିଭିନ୍ନ ବିଷୟରେ ବହୁ କବିତା ଲେଖିଛନ୍ତି ଏବଂ ସେସବୁ କବିତା ପାଠକମାନଙ୍କଦ୍ୱାରା ସର୍ବଦା ପ୍ରଶଂସିତ ଓ ଆଦୃତ ହୋଇଛି। ବିଭିନ୍ନ କବିତା ସବୁ ସେ ସମୟର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହେଉଥିଲା ଏବଂ ତାଙ୍କର ଗୁଣମୁଗ୍ଧ ପାଠକମାନେ ତାହା ଆଲୋଚନା କରୁଥିଲେ। ପରେ କବିତା ସଂକଳନ ସବୁ ବିଭିନ୍ନ ନାମରେ ପ୍ରକାଶିତ ହୋଇଛି। (୧) ବେଦବ୍ୟାସ, ଚନ୍ଦ୍ରରଜନୀ, ବସନ୍ତବାସର, ସୋମନାଥ ବିଜୟ ପ୍ରଭୃତି କବିତା ସହିତ 'କବିତା-କଲ୍ଲୋଳ' ୧୯୧୨ ମସିହାରେ ପ୍ରକାଶିତ ହୋଇଥିଲା। ଏହା କବିବର ରାଧାନାଥଙ୍କ ମୃତ୍ୟୁପରେ ତାଙ୍କ ନାମରେ ଉତ୍ସର୍ଗ ହୋଇଥିଲା। ଦ୍ୱିତୀୟ ସଂକଳନ 'ଅର୍ଘ୍ୟଥାଳି' ୧୯୧୮ ମସିହାରେ ପ୍ରକାଶିତ ହୋଇଥିଲା। ଏଥିରେ ଚାଳିଶରୁ ଅଧିକ କବିତା ସ୍ଥାନ ପାଇଥିଲା ଏବଂ ଏହା ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କୁ ଅର୍ପିତ ହୋଇଥିଲା। (୩) ତୃତୀୟ ସଂକଳନ 'କବିତାମାଳା'ରେ ତିରିଶରୁ ଅଧିକ କବିତା ସ୍ଥାନ ପାଇଥିଲା। (୪) ଚତୁର୍ଥ ସଂକଳନ 'କୃଷକ ସଙ୍ଗୀତ'ରେ ପ୍ରାୟ ଚାଳିଶଟି କୃଷିବିଷୟକ କବିତା ସ୍ଥାନ ପାଇଥିଲା ଏବଂ ଏହା ବୋଡ଼ାସମ୍ବର ଜମିଦାର ରାଜେନ୍ଦ୍ର ସିଂହଙ୍କ ନାମରେ ଉତ୍ସର୍ଗ ହୋଇଥିଲା। ଏହି ସଂକଳନମାନଙ୍କ ବ୍ୟତୀତ କେତେକ କବିତା ମଧ୍ୟ ପୃଥକ୍ ଭାବରେ ପ୍ରକାଶିତ ହୋଇଥିଲା। ବସ୍ତୁତଃ ଗଙ୍ଗାଧରଙ୍କ ଶତାଧିକ ଉଚ୍ଚକୋଟୀର କବିତା ତାଙ୍କର କାବ୍ୟମାନଙ୍କ ପରି ଓଡ଼ିଆ ସାହିତ୍ୟକୁ ଅମୂଲ୍ୟ ଅବଦାନ। ସାହିତ୍ୟିକମାନେ ତାଙ୍କ କାବ୍ୟ-କବିତାମାନଙ୍କର ମୂଲ୍ୟାୟନ କରି ମତ ପ୍ରକାଶ କରିଛନ୍ତି ଯେ, ରାଧାନାଥ ଓଡ଼ିଶାରେ ପୁନଃ ଜାଗରଣର ଆଲୋକ ସୃଷ୍ଟିକରିଥିଲେ; ଗଙ୍ଗାଧର ସେହି ଆଲୋକରେ ସ୍ନାତହୋଇଥିଲେ।

ଗଙ୍ଗାଧରଙ୍କର ଗଦ୍ୟରଚନା ଅଳ୍ପ। ୧୯୦୫ ମସିହାରେ ସେ ସମ୍ବଲପୁରରେ

ଥିବାବେଳେ ବରପାଲି ଜମିଦାର ନୃପରାଜ ସିଂହଙ୍କ ଜୀବନୀ ଲେଖିଥିଲେ। ତାହାଦ୍ୱାରା ଜମିଦାରଙ୍କର ପ୍ରୀତିଭାଜନ ହୋଇ ସରକାରୀ ଚାକିରିରୁ ଛୁଟି ନେଇ ବରପାଲିରେ ଦୁଇବର୍ଷ ଚାକିରି କରିବାକୁ ଆସିଥିଲେ। ନିଜର ଆତ୍ମଜୀବନୀ ମଧ ସେ ଅତି ସଂକ୍ଷିପ୍ତ ଭାବରେ ଲେଖିଛନ୍ତି। ତାହା ତାଙ୍କର ଗ୍ରନ୍ଥାବଳୀମାନଙ୍କରେ ପ୍ରକାଶିତ ହୋଇଛି। ଏହା ବ୍ୟତୀତ ସ୍ୱର୍ଗୀୟ କାଶୀନାଥ ପଣ୍ଡାଙ୍କ ପରିଚୟ ଓ ପ୍ରଶଂସା, ଫକୀରମୋହନଙ୍କ ମୃତ୍ୟୁରେ ଲିଖିତ ଆଶା ନୈରାଶ୍ୟର କଥୋପକଥନ, ଏହି କି ପୃଥିବୀର ଶବ୍ଦ ?, ଶିକ୍ଷିତ, ଅଶିକ୍ଷିତ ଓ ଶିକ୍ଷାଭିମାନୀ ପ୍ରଭୃତି କେତେକ କ୍ଷୁଦ୍ର ପ୍ରବନ୍ଧ ସେ ଗଦ୍ୟରେ ଲେଖିଥିଲେ। ତାଙ୍କର ସମସାମୟିକ କବି ଓ ସାହିତ୍ୟିକମାନଙ୍କ ପାଖକୁ ବିଭିନ୍ନ ସମୟରେ ଲେଖିଥିବା ପତ୍ରଗୁଡ଼ିକ ମଧ ତାଙ୍କ ଗଦ୍ୟ-ସାହିତ୍ୟର ଅନ୍ତର୍ଭୁକ୍ତ। ତାଙ୍କର ସାହିତ୍ୟିକ ଜୀବନରେ ସେ ରାଧାନାଥ, ଫକୀରମୋହନ, ନୀଳମଣି ବିଦ୍ୟାରତ୍ନ, ବିଶ୍ୱନାଥ କର, ନନ୍ଦକିଶୋର ବଳ, ମଧୁସୂଦନ ରାଓ, ଚିନ୍ତାମଣି ମହାନ୍ତି, ରାମଶଙ୍କର ରାୟ, ଶଶିଭୂଷଣ ରାୟ ପ୍ରଭୃତି ଊନବିଂଶ ଶତାବ୍ଦୀ ଓ ବିଂଶ ଶତାବ୍ଦୀର ପ୍ରଥମ ଦୁଇ ଦଶନ୍ଧିରେ ଉତ୍କଳର ସବୁ ବଡ଼ ବଡ଼ କବି ଓ ଲେଖକମାନଙ୍କ ସହିତ ପତ୍ର ଆଦାନ ପ୍ରଦାନ କରୁଥିଲେ।

ସଂକ୍ଷେପରେ ଏହାହିଁ ହେଉଛି ସ୍ୱଭାବକବି ଗଙ୍ଗାଧର ମେହେରଙ୍କର ଜୀବନ-କାହାଣୀ। ପଞ୍ଚମ ଶ୍ରେଣୀରେ ପଢ଼ିବା ପରେ ସ୍କୁଲଶିକ୍ଷା ଛାଡ଼ି ପରିବାର-ପୋଷଣ ନିମିତ୍ତ ବସ୍ତ୍ର ବୟନ କାର୍ଯ୍ୟରେ କର୍ମଜୀବନ ଆରମ୍ଭକରିଥିଲେ। ମାତ୍ର ସ୍ୱୟଂପ୍ରକଟିତ କବିପ୍ରତିଭା ଏବଂ ନିଜର ସାଧନା ବଳରେ ସେ ଉତ୍କଳର ଶ୍ରେଷ୍ଠ କବିମାନଙ୍କର ସମକକ୍ଷ ହୋଇପାରିଥିଲେ ଉତ୍କଳର ଶ୍ରେଷ୍ଠ କବିମାନଙ୍କ ମଧରେ ଉଚ୍ଚସ୍ଥାନରେ ରହି ସେ ଯୁଗେ ଯୁଗେ ପୂଜାପାଉଥିବେ ଏବଂ ଉତ୍କଳବାସୀ ତାଙ୍କର କାବ୍ୟ-କବିତା ପଢ଼ି ଚିରକାଳ ମୁଗ୍ଧ ହେଉଥିବେ।

□□□

**ସହାୟକ ଗ୍ରନ୍ଥ :**

୧। ଗଙ୍ଗାଧର ଗ୍ରନ୍ଥାବଳୀ।

୨। ପିତୃ-ପ୍ରସଙ୍ଗ – ଭଗବାନ୍ ମେହେର।

୩। ଗଙ୍ଗାଧର : କବିତା ଓ କବି-ଆତ୍ମା – ଦେବେନ୍ଦ୍ର କୁମାର ଦାଶ, ୧୯୯୫ ପ୍ରଗତି ଉତ୍କଳ ସଂଘ – ରାଉରକେଲା।